# ଭାଗବତ କଥା

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ



# ଭାଗବତ କଥା

## ପଞ୍ଚବିଂଶ ଖଣ୍ଡ

ଲେଖକ :
ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ



ସମ୍ପାଦନା :
ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର

ଅନୁବାଦକ :
ପଣ୍ଡିତ ଶ୍ରୀ ଉପେନ୍ଦ୍ର ନାଥ ହୋତା

ପ୍ରକାଶକ :



ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର

# ଭାଗବତ କଥା

## ପଞ୍ଚବିଂଶ ଖଣ୍ଡ

ପ୍ରକାଶିକା :
**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୭୫୩୦୦୨

ପ୍ରଥମ ସଂସ୍କରଣ-୧୯୮୬

ପ୍ରଚ୍ଛଦ :
**ଶ୍ରୀ ଅମିତ୍ ମୁଖାର୍ଜୀ**

ମୁଦ୍ରଣ :
**ବନଦୁର୍ଗା ପ୍ରିଣ୍ଟର୍ସ**
ଅଲିଶା ବଜାର, କଟକ-୭୫୩୦୦୨

ମୂଲ୍ୟ ସାଧା- ୧୫ ଟଙ୍କା
ବନ୍ଧାଇ—୧୮ ଟଙ୍କା

# BHAGABAT KATHA

( Twentyfifth Part )
**Sri Prabhudatta Brahmachari**

Publisher
**Srimati Annapurna Mishra**

Cuttack Student's Store
Cuttack—753002

First Edition—1986

Price
Popular Rs. 15.00
Deluxe Rs.18.00

## ବିଷୟ ସୂଚୀ

ଶ୍ରୀହରିଃ

# ଭାଗବତ ପ୍ରେସ୍ ଉଦ୍‌ଘାଟନ

**କୃଷ୍ଣାୟ ବାସୁଦେବାୟ ହରୟେ ପରମାତ୍ମନେ ।**
**ପ୍ରଣତ କ୍ଳେଶନାଶାୟ ଗୋବିନ୍ଦାୟ ନମୋନମଃ ॥**

**ହେ ମହାନୁଭବ !**

ଆପଣମାନେ ସଂକୀର୍ତ୍ତନ ଭବନ ଉତ୍ସବରେ ଯୋଗ ଦେବା ପାଇଁ ସର୍ବଦା ଆସନ୍ତି, କିନ୍ତୁ ଆଜି ଏକ ବିଶେଷ କାର୍ଯ୍ୟ ପାଇଁ ଆପଣମାନେ ଏଠାରେ ପଦାର୍ପଣ କରିଛନ୍ତି । ତାହା ହେଉଛି "ଭଗବତ ପ୍ରେସ୍"ର ସ୍ଥାପନା ।

**ଭଗବତ ପ୍ରେସ୍‌ର ଆବଶ୍ୟକତା**—ଆପଣମାନେ କହି ପାରନ୍ତି, ଏହି ପ୍ରଶାନ୍ତ ବାତାବରଣରେ ପ୍ରେସ୍ ଆଦିର ଆବଶ୍ୟକତା ରହିଛି ବୋଲି କ'ଣ ଅନୁଭବ ହେଉଛି ? ଆମର ପ୍ରାଚୀନ ମୁନି-ଋଷିଗଣ ତ ଏହି କୋଳାହଳପୂର୍ଣ୍ଣ କାର୍ଯ୍ୟଠାରୁ ପୃଥକ୍ ରହି ଭଜନ ପୂଜନ ଆଦି କରୁଥିଲେ । ଏହା ତ ବାସ୍ତବ କଥା, କିନ୍ତୁ ଆମେ ଯେତେ ପ୍ରାଚୀନତାକୁ ଇଚ୍ଛା କରୁନା କାହିଁକି, ଯୁଗଧର୍ମ ଅନୁସାରେ ଆଧୁନିକତା ଆମକୁ ନିଜ ଆଡ଼କୁ ଆକର୍ଷଣ କରି ନିଏ । ନିଜର ଭାବ ଗୁଡ଼ିକୁ ଜନତା ସମକ୍ଷରେ ଉପସ୍ଥାପିତ କରିବା ପାଇଁ ଏ ଯୁଗରେ ଦୁଇଟି ସାଧନ ପନ୍ଥା ରହିଛି, ତାହା ହେଉଛି ପ୍ରେସ୍ ଓ ପ୍ରବଚନ ମଞ୍ଚ । ପ୍ରବଚନ ମଞ୍ଚରେ ଯାହା କିଛି ପ୍ରଚାର ହୁଏ, ତାହା ମଧ୍ୟ ପ୍ରେସ୍‌ରେ ଛପା ହେବା ପାଇଁ ପ୍ରେସ୍‌ର ଆଶ୍ରୟ ନେବାକୁ ପଡ଼ିଥାଏ । ଏଣୁ ଏ ଯୁଗରେ ଭାବର ପ୍ରଚାର ଓ ପ୍ରସାରର ପ୍ରଧାନ ସାଧନ ହେଉଛି ପ୍ରେସ୍ । ରାଜନୀତି କ୍ଷେତ୍ରରେ ମଧ୍ୟ ଏହି କଥା, ଯାହାର ପ୍ରେସ୍ ବଳ ଯେତେ ଅଧିକ, ତାହାର ପ୍ରଭାବ ମଧ୍ୟ ସେତେ ଅଧିକ ଓ ରାଜନୈତିକସତ୍ତା ମଧ୍ୟ ତା ଅଧିକାରରେ ରହେ । ପ୍ରାଚୀନକାଳରେ ଆତ୍ମ-ବଳରେ ହିଁ ସବୁକିଛି ସମ୍ଭବ ହୋଇ ପାରୁଥିଲା । ଆତ୍ମବଳ କମ୍ ହୋଇ ଯାଇଥିବାରୁ ଆମକୁ ଆଜି ଏହି କୃତ୍ରିମ ଉପାୟ ଅବଲମ୍ବନ କରିବାକୁ ପଡ଼ୁଛି ।

**ଧର୍ମ ପ୍ରଚାରର ଅଭାବ**—ଆଜିକାଲି ରାଜନୀତି ଯେପରି କଳୁଷିତ ହୋଇ ଯାଇଛି, ପ୍ରାଚୀନ ଯୁଗରେ ସେପରି କେବେହେଲେ ହୋଇ ନ ଥିଲା । ଏ ଯୁଗ କ୍ଷୁଦ୍ର କ୍ଷୁଦ୍ର ରାଜନୀତିରେ ଭାଗ ନେବାକୁ ଚାହୁଁଛି । ଏବେ କେବଳ ଭୌତିକବାଦ କୁ

ସବୁକିଛି ବୋଲି ମନେକରିଯାଉଛି । ଲୋକମାନେ ରାଜନୈତିକ ସଫଳତାକୁ ସାଂସାରିକ ଜୀବନର ଚରମ ଲକ୍ଷ୍ୟ ବୋଲି ମାନି ନେଇଛନ୍ତି । ଆଜିର ଶିକ୍ଷିତ ସମାଜ ଏହାହିଁ ଚାହୁଁଛନ୍ତି ଛଳେ, ବଳେ, କୌଶଳେ ଯେ କୌଣସି ପ୍ରକାରରେ ହେଉ ମୁଁ ରାଜନୈତିକ ପଦ ମର୍ଯ୍ୟାଦା ଯେପରି ଲାଭ କରି ପାରେଁ । ପୂର୍ବେ ଏପରି କଥା ନଥିଲା । ପ୍ରଥମେ ସମସ୍ତଙ୍କର ଲକ୍ଷ୍ୟ ଥିଲା ଭଗବତ୍ ପ୍ରାପ୍ତି ଭଗବାନଙ୍କୁ ପ୍ରାପ୍ତ ହେବା ପାଇଁ ବଡ଼ ବଡ଼ ଚକ୍ରବର୍ତ୍ତୀ ରାଜ୍ୟ ଓ ସିଂହାସନ ଆଦିକୁ ତୃଣ ଭଳି ତ୍ୟାଗକରି ନିଃସ୍ୱ ହୋଇ ବନକୁ ଚାଲି ଯାଉଥିଲେ । ଯଦି ରାଜନୈତିକ ସତ୍ତାରେ ସବୁ କିଛି ଲାଭ ହୋଇ ପାରୁ ଥାଆନ୍ତା, ତେବେ ସେମାନେ ସର୍ବସ୍ୱ ତ୍ୟାଗକରି ଅକିଞ୍ଚନ ହୋଇ କାହିଁକି ଜୀବନ ଯାପନ କରୁ ଥାଆନ୍ତେ ? ରାଜନୀତି ଅତ୍ୟନ୍ତ ନୀରସ ବିଷୟ ଅଟେ, କିନ୍ତୁ ଧର୍ମ ସହିତ ମିଳିତ ହୋଇ ତାହା ଅତ୍ୟନ୍ତ ସରସ ହୋଇଯାଏ, ଯେପରି ସୁନାରେ ସୁଗନ୍ଧ । କିନ୍ତୁ ଆଜିର ରାଜନୀତି ଧର୍ମଠାରୁ ପୃଥକ୍ ହୋଇ ରହିବାକୁ ଚାହେଁ, ଧର୍ମ ଓ ନୈତିକତାକୁ ମୂଳୋତ୍ପାଟନ କରିବାକୁ ଆଜି ତାହା କଟିବଦ୍ଧ । ଯେତେବେଳେ ଆମର ଉପାଧିଧାରୀ ରାଜନୈତିକ ନେତା ମାନଙ୍କର ଏ ପ୍ରକାର ଧାରଣା, ସେତେବେଳେ ସେମାନଙ୍କଠାରୁ ଧର୍ମର ପ୍ରଚାର ଓ ପ୍ରସାର ଆଶା କରିବା ବ୍ୟର୍ଥ !

**ହିନ୍ଦୁ ଧର୍ମର ମହାନ୍ ଗ୍ରନ୍ଥ**— ହିନ୍ଦୁଧର୍ମର ପ୍ରଧାନ ଗ୍ରନ୍ଥ ହେଉଛି ବେଦ । ବେଦ ଏତେ ବିସ୍ତୃତ ଏବଂ ଗହନ ଯେ, ତାହା ସର୍ବସାଧାରଣଙ୍କ ପକ୍ଷେ ପାଠ କରିବା ଓ ଶ୍ରବଣ କରିବା କେବଳ ଯେ କଷ୍ଟ ତାହା ନୁହେଁ ବରଂ ଏହା ଅସମ୍ଭବ ମଧ୍ୟ ହୋଇ ପଡ଼ିଛି । ସର୍ବଜ୍ଞ ଭଗବାନ ବେଦବ୍ୟାସ କଳିଯୁଗର ମନୁଷ୍ୟଙ୍କ ପାଇଁ କୃପାକରି ଅନନ୍ତ ବେଦରାଶି ମଧ୍ୟରୁ ବାଛି ବାଛି ଚାରି ସଂହିତା ପ୍ରଣୟନ କରି ଅଛନ୍ତି । ପୁନଶ୍ଚ ତାହାର ଭାଷ୍ୟ ରୂପେ ମହାଭାରତ ଓ ଅଷ୍ଟାଦଶ ପୁରାଣ ରଚନା କରିଛନ୍ତି । ଯେଉଁ ବିଷୟ ବେଦ ମଧ୍ୟରେ ବୀଜ ସ୍ୱରୂପ ରହିଛି, ତାହାକୁ ସେ ପୁରାଣରେ ବିସ୍ତାରିତ ଭାବରେ ବର୍ଣ୍ଣନା କରି ଅଛନ୍ତି । ପୁରାଣ ଅଷ୍ଟାଦଶ ଓ ଉପ ପୁରାଣ ଅଷ୍ଟାଦଶ । ଏହା ବ୍ୟତୀତ ଅଂଶ ପୁରାଣ ମଧ୍ୟ ରହିଛି । ଏହି ପ୍ରକାର ପୁରାଣ ସଂଖ୍ୟା ଅନେକ । ଏବେ ୫୫ ପୁରାଣ ଦେଖିବାକୁ ମିଳୁଛି । ଏହି ପ୍ରକାର ପୁରାଣ ମଧ୍ୟ ଅଂଶ ରୂପୀ । ଏତେ ଗୁଡ଼ାଏ ବେଦ ପୁରାଣାଦି ରଚନା କରି ସାରି ଭଗବାନ ବେଦବ୍ୟାସ ମନରେ ସନ୍ତୋଷ ଲାଭ ନ କରିବାରୁ ଶେଷରେ ସେ ଶ୍ରୀମଦ୍ ଭାଗବତ ରଚନା କରିଥିଲେ ।

**ଶ୍ରୀମଦ୍ ଭାଗବତ କଣ ?**— ଶ୍ରୀମଦ୍ ଭାଗବତରେ ସମସ୍ତ ବେଦ ପୁରାଣର ସାରକଥା ଲେଖାଯାଇଅଛି । ଏହି କଥା ଭାଗବତକାର ଭାଗବତ ଆରମ୍ଭରେ ହିଁ କହିଛନ୍ତି ଯେ ଭାଗବତ କ'ଣ ? ଯଥା—

"ଇଦଂ ଭାଗବତଂ ନାମ ପୁରାଣଂ ବ୍ରହ୍ମ ସମ୍ମିତମ୍ ।
ଉତ୍ତମ ଶ୍ଳୋକଚରିତଂ ଚକାର ଭଗବାନୃଷିଃ ।।
ସର୍ବବେଦେତିହାସାନାଂ ସାରଂ ସାରଂ ସମୁଦ୍ଧୃତମ୍ ।
ସ ତୁ ସଂଶ୍ରାବୟାମାସ ମହାରାଜଂ ପରୀକ୍ଷିତମ୍ ।।

(ଶ୍ରୀ: ଭା: ୧ ସ୍କ: ୩ ଅ: ୪୦-୪୨ ଶ୍ଳୋକ)

ଅର୍ଥାତ୍ ଏହି ଶ୍ରୀମଦ୍‌ଭାଗବତ ପୁରାଣ ବେଦ ସମ୍ମତ । ଏଥିରେ ଭଗବାନଙ୍କ ଚରିତ ବର୍ଣ୍ଣିତ ହୋଇଛି । ଋଷିବର ଭଗବାନ ବେଦବ୍ୟାସ ଏହା ରଚନା କରିଅଛନ୍ତି । ସମ୍ପୂର୍ଣ୍ଣ ବେଦ ଓ ଇତିହାସର ସାର ଏଥିରେ ସନ୍ନିବେଶିତ ହୋଇଅଛି । ଏହା ଶ୍ରୀ ଶୁକଦେବ ମହାରାଜା ପରୀକ୍ଷିତଙ୍କୁ ଶୁଣାଇ ଅଛନ୍ତି । ଏହା ହିଁ ଶ୍ରୀମଦ୍‌ଭାଗବତର ପରିଚୟ । ଏଥିରେ ଅସତ୍ୟ ନାହିଁ ଅତ୍ୟୁକ୍ତି ନାହିଁ, ଏହା ଅତିରଞ୍ଜିତ ହୋଇନାହିଁ, ଏହା ଅକ୍ଷରେ ଅକ୍ଷରେ ସତ୍ୟ ଓ ଧ୍ରୁବ ସତ୍ୟ ଅଟେ । ଏଥିପାଇଁ ଭାଗବତର ନାମ 'ପୁରାଣ ତିଳକ' । ଏହା ସମସ୍ତ ପୁରାଣ ମଧ୍ୟରେ ଶ୍ରେଷ୍ଠ । ଆପଣମାନେ ଯେତେକ ମହାନୁଭାବ ଏଠାରେ ବିରାଜମାନ କରିଅଛନ୍ତି, ଆପଣମାନଙ୍କ ମଧ୍ୟରୁ ଊଣା ଅଧିକେ ଅଷ୍ଟାଦଶ ପୁରାଣର ନାମ ଜାଣିଥିବେ । କିନ୍ତୁ ଆପଣମାନଙ୍କ ମଧ୍ୟରେ କେହି ଏପରି ବ୍ୟକ୍ତି ନାହାନ୍ତି, ଯେଉଁମାନେ କି ଶ୍ରୀମଦଭାଗବତର ନାମ ନ ଶୁଣିଛନ୍ତି । ପୁରୁଷ ପୁରୁଷ ଧରି ଏହି ଭାଗବତ ସପ୍ତାହ ଆମ ଦେଶରେ ପାଳିତ ହୋଇଆସୁଛି । ଶ୍ରୀମଦ୍‌ଭାଗବତ ସାଧାରଣ ପୁସ୍ତକ ନୁହେଁ, ଏହା ସାକ୍ଷାତ୍ ଭଗବାନଙ୍କର ବାଙ୍ମୟ ରୂପ । 'ଭାଗବତୀ କଥା' ଏହି ପରମପାବନ ଗ୍ରନ୍ଥର ଆଧାର ଉପରେ ରଚିତ ହୋଇଅଛି ।

**ଭାଗବତୀ କଥାରେ କଣ ଅଛି ?**—ଆପଣମାନେ କହିପାରନ୍ତି- "ଶ୍ରୀମଦ୍ ଭାଗବତ ତ ଏକ କ୍ଷୁଦ୍ର ଗ୍ରନ୍ଥ । ସମ୍ପୂର୍ଣ୍ଣ ଭାଗବତର ସଂକ୍ଷିପ୍ତ ସାରପୁସ୍ତିକା (Hand Book) ବା କୋଥଳି ଭାଗବତ" ମାତ୍ର ୨୫ ପଇସାରେ ମଧ୍ୟ ବଜାରରେ ମିଳୁଛି, ଭାଗବତର ଆଧାର ଉପରେ ଆପଣ ୧୦୮ ଖଣ୍ଡ ପୁସ୍ତକ କାହିଁକି ଲେଖିବେ ବୋଲି କହୁଛନ୍ତି ? ତେବେ ତାହାକୁ ଭାଗବତର ଅନୁବାଦ, ଭାଷ୍ୟ, ସମାଲୋଚନା ବା ସଂଗ୍ରହ-କ'ଣ ବୋଲି କୁହାଯିବ ?" ଏହାର ଉତ୍ତରରେ ଏଠାରେ ମୁଁ ଦୁଇଟି ଦୃଷ୍ଟାନ୍ତ ଦେଉଅଛି । ଦସମନ (ଦର୍ଶମନ) ଦୁଗ୍ଧ ସ୍ୱରୂପ, ଏବେ ଆମେ ତାହାକୁ ସଙ୍ଗରେ ନେଇ ଯଦି ଯାତ୍ରା କରୁଁ ତେବେ ଆମକୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିବ । ଏଣୁ ଆଧୁନିକ ଯନ୍ତ୍ର ସାହାଯ୍ୟରେ ତହିଁରେ ଥିବା ଜଳକୁ ଶୁଖାଇଦେଇ ତାହାର ସାର ଅଂଶକୁ ଗୁଣ୍ଡ ଆକାରରେ ବାହାର କରି ତାହାରେ ଭରିକରି ନେଇଥାଉଁ । ପୁନଶ୍ଚ ଯେତେବେଳେ ଆବଶ୍ୟକ ହୁଏ, ତହିଁରେ ପାଣି ମିଳାଇ ତାକୁ

ନୁହେଁ, ଏହିପରି ଅନେକ ମୁସ୍‌ଲିମ୍ କର୍ମଚାରୀଙ୍କ ସହିତ ମୋର ସାକ୍ଷାତ୍ ହୋଇଥିଲା। କିନ୍ତୁ ଆଜିର ପରିସ୍ଥିତି ଯାହା ହୋଇଛି, ତାହା ନ କହିଲେ ମଧ୍ୟ ପ୍ରତ୍ୟେକେ ବୁଝି ପାରିବେ । ପୂର୍ବେ ଲୋକମାନଙ୍କର ବିଶ୍ୱାସ ଥିଲା ଯେ ଅଧର୍ମ ଧନ କେବେହେଲେ ଫଳବନ୍ତ ହୁଏ ନାହିଁ । ଆଜି ସୁବିଧାବାଦୀ (ଶାସକ) ଗଣ ଧର୍ମକୁ ଜୀବନରୁ ବାଦଦେଇ ଦୂରକୁ ଠେଲି ଦେଇଛନ୍ତି । ସେମାନେ କେବଳ ଆଇନ୍ କାନୁନ୍‌କୁ ଦୁଇହାତ ମୁଠାରେ ଜାବୁଡ଼ି ଧରି ରଖିବାକୁ ଚାହାନ୍ତି ଓ ଏହାକୁ ଏକ କୌଶଳ ବୋଲି ଭାବନ୍ତି ।

ପାର୍ବତ୍ୟ ଅଞ୍ଚଳରେ ଆଜି ଧର୍ମକୁ ଯେତେ ମର୍ଯ୍ୟାଦା ଦିଆଯାଉଛି, ସେତେ ଦେଶ ମଧ୍ୟରେ ନାହିଁ । ଏଥିପାଇଁ ପାହାଡ଼ୀ ଜିଲ୍ଲାରେ ପୁଲିସ୍‌ର ଆବଶ୍ୟକତା ପଡ଼ୁନାହିଁ । ଯେଉଁଠାରେ ଚୋର ଥାଆନ୍ତି, ସେଠାରେ ତ ପୁଲିସ୍‌ର ଆବଶ୍ୟକତା ପଡ଼ିଥାଏ । ସେଠାରେ ଜଣେ ଚୌକିଦାର ରହି ସବୁ କାମ ଚଳୁଥିଲା । ଆମ ସଭ୍ୟଲୋକମାନେ ଯେଠାରେ ଯେଉଁଦିନଠାରୁ ସଭ୍ୟତାର ପ୍ରଚାର କଲେ, ସେହିଦିନଠାରୁ ସେଠାରେ ଚୋରି ହେବାରେ ଲାଗିଲା ଓ ମକଦ୍ଦମା ଆରମ୍ଭ ହେଲା । ପୂର୍ବରୁ ସେଠାରେ ସମସ୍ତ କାର୍ଯ୍ୟ ଧର୍ମରେ ଚଳୁଥିଲା । ଆମେ ପିଲାଦିନେ ଶୁଣୁଥିଲୁ ଯେ—ତୁମେ ବଦ୍ରୀନାଥ ଆସ, ରାସ୍ତାରେ ସୁନା ପଡ଼ି ରହିଥିଲେ ମଧ୍ୟ କେହି ଉଠାଉ ନଥିବାର ଦେଖିବ ଓ ଫେରି ଆସିଲାବେଳେ ଦେଖିବ, ତାହା ଯେଉଁଠି ଯେପରି ପଡ଼ିଥିଲା, ସେଠାରେ ସେହିପରି ପଡ଼ିଛି । ଏକଥା ମିଥ୍ୟା ନୁହେଁ । ଆଜକୁ ୫୦ ବର୍ଷ ପୂର୍ବେ ମଧ୍ୟ ଏହିପରି ହେଉଥିଲା । ଦେଖିବା ଲୋକେ ଦେଖି କହିଥିବା ଏକ ଘଟଣା ଯାହା ମୁଁ ଶୁଣିଥିଲି, ତାହା ବର୍ତ୍ତମାନ କହୁଛି ।

ଆଜକୁ ୧୫।୨୦ ବର୍ଷ ତଳେ ଡେରାଡୁନ୍ ନିକଟରେ ଥିବା ସହସ୍ର ଧାରାରେ ମୁଁ ଅବସ୍ଥାନ କରୁଥିଲି । ସେଠାରେ ନଦୀଜଳକୁ ବନ୍ଧାଇ ପାହାଡ଼ୀ ଲୋକମାନେ କ୍ଷେତରେ ପାଣି ମଡ଼ାଇବା ପାଇଁ ନଳେ ମାହାର ଖୋଳୁଥାଆନ୍ତି ଓ ସ୍ଥାନେ ସ୍ଥାନେ ଅଟାପେଷା ଯନ୍ତ୍ର ସ୍ଥାପନ କରିଥାଆନ୍ତି । ଏକ ପ୍ରକାର ଶୁଖିଲା ଘାସ ନିର୍ମିତ କୁଟୀରରେ ଏହିକଳ ରହିଥାଏ । କୁଟୀରରେ ଦ୍ୱାର ନଥାଏ, ଯେ ଯେତେବେଳେ ଚାହୁଁଥାଆନ୍ତି, ସେତେବେଳେ ସେହିକଳ ଚଳାଉଥାଆନ୍ତି । ପାଣିକୁ ବନ୍ଦକରି ଅଟକାଇଦିଆ ଯାଏ ଚକ ଆପେ ଆପେ ଘୁରୁଥାଏ । ନିଜର ଖାଇବା ଅଟା ପେଷି ପେଷାଇ ଫର୍ଦ୍ଦ ସେହି ଚକିଆ ଉପରେ ଏକ ପାତ୍ରରେ ରଖି ଆସୁଥିଲେ ମଧ୍ୟ ତିନିଚାରିଦିନ ପରେ ଯାଇ ମାଲିକ ତାହା ନେଇ ଆସିଥାଏ । ମୁଁ ବିଶ୍ୱାସ କରୁଛି ଏବେ ମଧ୍ୟ ପାର୍ବତ୍ୟ ଅଞ୍ଚଳରେ ଏହିପରି କଥା ହେଉଥିବ ।

ମୁଁ ଯେଉଁଠାରେ ରହୁଥିଲି, ସେଠାରେ ମୋ ବସା ନିକଟରେ ଏକ ଅଟାକଳ ଥିଲା । ମୁଁ ତା ଭିତରକୁ ଯାଇ ଜଣେ ଲୋକ ଅଟା ପେଷୁଥିବାର ଦେଖିଲି ଓ ତାକୁ ପଚାରିଲି—"ଆପଣଙ୍କୁ କଣ ଅଟା ପେଷିବା ପାଇଁ ଫର୍ଦ୍ଦ ଦେବାକୁ ପଡ଼େ ?" ସେ

ମୋତେ କହିଲେ—"ଯାହା ଖର୍ଚ୍ଚ ହେବାର କଥା, ତାହାର କୌଣସି ହିସାବ ନାହିଁ, ଯେ ଏଠାରେ ଅଣ୍ଟା ପେଷନ୍ତି, ସେ ଅନ୍ଦାଜରେ ପେଷାଇ ଖର୍ଚ୍ଚ ରଖିଦେଇ ଯାଆନ୍ତି।" ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି—"ଏଠାରେ ତ କେହି ପେଷାଇ ଖର୍ଚ୍ଚ ନେବାଲୋକ ନାହାନ୍ତି।" ସେ ମୋତେ କହିଲେ—"ପେଷାଇ ଖର୍ଚ୍ଚ ଏହିଠାରେହିଁ ରଖିଦେଇ ଗଲେ ହୁଏ। କଳ ମାଲିକ ଦୁଇ ଘଣ୍ଟା ଦିନରେ ଥରେ ଆସି ତାହା ନେଇଯାଏ।" ମୁଁ ପଚାରିଲି—"ଯଦି ତୁମେ ନରଖ ତେବେ?" ଏତିକି କଥା ଶୁଣିବା ମାତ୍ରେ ତାଙ୍କର ଦୁଇ ଆଖି ଲାଲ ପଡ଼ିଗଲା ଓ ସେ ରାଗିଯାଇ କହିଲେ—"ତୁମେ କି କଥା କହୁଛ; ଆମର କଣ ଧର୍ମ ନାହିଁ? ଆମେ ଅଣ୍ଟା ପେଷି ପେଷାଇ ଖର୍ଚ୍ଚା ପୁଣି ନଦେଇ ଚାଲିଯିବୁ? ଆମର କ'ଣ ପୁଅଝିଅ ନାହାନ୍ତି?"

ଆପଣ ବିଶ୍ୱାସ କରନ୍ତୁ, ଏହି ଉତ୍ତର ଶୁଣି ମୋର ଛାତି ଥରିବାକୁ ଲାଗିଲା। ମୁଁ ମନେ ମନେ ତାଙ୍କୁ ପ୍ରଣାମ କଲି ଓ ଚିନ୍ତା କଲି ଧର୍ମର ପ୍ରକୃତ ମର୍ମ ଏମାନେହିଁ ଜାଣି। ପୂର୍ବ କାଳର ଲୋକମାନଙ୍କର ଧର୍ମକୁ ଭୟ ଥିବାରୁ, ସେମାନେ ଧର୍ମକୁ ଆଖି ଆଗରେ ରଖି ସବୁ କାର୍ଯ୍ୟ କରୁଥିଲେ। ସେମାନେ ଭାବୁଥିଲେ ଆମେ ଧର୍ମ ବିରୁଦ୍ଧ କାର୍ଯ୍ୟକଲେ ପରଲୋକରେ ତାହାର ଫଳ ଆମକୁହିଁ ଭୋଗ କରିବାକୁ ପଡ଼ିବ। ଏହି ସବୁ ଶିକ୍ଷା ଆମେ ପୁରାଣରୁ ପାଇଥାଉଁ। ଶଙ୍ଖ ଓ ଲିଖିତ କଥା, ହରିଶ୍ଚନ୍ଦ୍ର, ମୟୂରଧ୍ୱଜ, ରନ୍ତିଦେବ, ଶିବି, ଦଧୀଚି ତଥା ଏହି ପ୍ରକାର ମନୋରଞ୍ଜକ, ଶିକ୍ଷାପ୍ରଦ ହଜାର ହଜାର କଥା ବର୍ଣ୍ଣିତ ହୋଇଅଛି। ପୁରାଣ ପାଠ କରୁ କରୁ ମୋର ଏପରି ଧାରଣା ହେଲାଯେ, କୌଣସି ବ୍ୟକ୍ତି ଏହି ପ୍ରକାର ଗୋଟିଏ ହେଲେ କଥାର କଳ୍ପନା କରି ନପାରନ୍ତି, ଯାହାର ସ୍ରୋତ ପୁରାଣରେ ଦେଖିବାକୁବି ମିଳେନାହିଁ! ଆଜି ଆମେ ଉପନ୍ୟାସ ଗଳ୍ପ-ଗୁଡ଼ିକୁ ପାଠ କରିବା ପାଇଁ ବିଦେଶୀ ଭାଷାର, ବିଦେଶୀ ଲେଖକଙ୍କର ମୁଖ ଅବଲୋକନ କରୁଥାଉଁ କିନ୍ତୁ ଆମ ନିଜ ଘରେ ଥିବା ପୁରାଣଗୁଡ଼ିକରେ କେତେ ଯେ ସୁନ୍ଦର ସୁନ୍ଦର ଶିକ୍ଷାପ୍ରଦ ଗଳ୍ପ ଭରି ରହିଛି, ତାହା ଦେଖିବାକୁ ଇଚ୍ଛା କରୁ ନଥାଉଁ। ସଂସାରର ସମସ୍ତ ଭାବ-ରୌଦ୍ର, ଅଦ୍ଭୁତ, ଶୃଙ୍ଗାର, ହାସ୍ୟ, ବୀର, ବାତ୍ସଲ୍ୟ, ଭୟାନକ, ବିଭତ୍ସ, ଶାନ୍ତ ପ୍ରେମ, ଓ ଭକ୍ତି ଏହି ଏକାଦଶ ରସ ଅନ୍ତର୍ଗତ। ଏହି ଏକାଦଶ ରସ ପୁରାଣମାନଙ୍କରେ ଏତେ ସୁନ୍ଦର ଭାବରେ ଆଲୋଚିତ ହୋଇଛି ଯେ, ତାହା ପାଠ କରୁ କରୁ ମନ ମୁଗ୍ଧ ହୋଇଯାଏ। ଆଜି କାଲିର ଯୁବଗୋଷ୍ଠୀ ଶୃଙ୍ଗାର ରସର ଗଳ୍ପଗୁଡ଼ିକୁ ଶୃଙ୍ଗାର ରସଯୁକ୍ତ ନାଟକ ଗୁଡ଼ିକୁ ଓ ସିନେମାଦି ଦେଖିବାକୁ ଏପରି ପାଗଳ ହୋଇ ପଡ଼ୁଛନ୍ତି ଯେ, ଏହା ବ୍ୟତୀତ ଅନ୍ୟ କିଛି ଇଚ୍ଛା କରୁନାହାନ୍ତି। କିନ୍ତୁ ପୁରାଣରେ ଯେଉଁ ଶୃଙ୍ଗାର ବିଷୟରେ ବର୍ଣ୍ଣନା କରାଯାଇଛି, ତାହା ମର୍ଯ୍ୟାଦାପୂର୍ଣ୍ଣ। ଆଜି କାଲିର ଶୃଙ୍ଗାର ମର୍ଯ୍ୟାଦା ହୀନ, ହେୟ ଓ ଅତ୍ୟନ୍ତ ତୁଚ୍ଛ। ଆଜି ଆମେ "ଭାରତୀୟ ସଂସ୍କୃତି-ଭାରତୀୟ ସଂସ୍କୃତି" ବୋଲି ଚିତ୍କାର କରୁଥାଉଁ, କିନ୍ତୁ ଆମେ ଜାଣୁ ନଥାଉଁ ଯେ 'ଭାରତୀୟ ସଂସ୍କୃତି' ପ୍ରକୃତ

ପୃଷ୍ଠାରେହିଁ ନିହିତ ଅଛି । ସଂସ୍କୃତିର ଭଣ୍ଡାରହିଁ ଏହି ପୁରାଣ । ସେହି ପୌରାଣିକ ଜ୍ଞାନ ପ୍ରସାର ନିମିତ୍ତ, ସେହି ଭାରତୀୟ ସଂସ୍କୃତିର ହିରଦର୍ଶନ ନିମିତ୍ତ "ଭାଗବତୀ କଥା"ର ପ୍ରକାଶନ ଏକ ଲଘୁ ପ୍ରୟାସ । "ଭାଗବତୀ କଥା" ଏପର୍ଯ୍ୟନ୍ତ ୧୦୮ ଖଣ୍ଡ ପ୍ରକାଶିତ ହୋଇଅଛି । ଏହା ଦୈବୀ ପ୍ରେରଣାରେହିଁ ସମ୍ଭବ ହୋଇପାରିଛି । ଧର୍ମରକ୍ଷା, ଧର୍ମ ପ୍ରଚାର ଓ ପ୍ରସାର ଏ ସମସ୍ତ ଭଗବାନଙ୍କ ଦ୍ୱାରାହିଁ ସମ୍ଭବ । ଧର୍ମ ଭଗବାନଙ୍କର ଅତୀବ ପ୍ରିୟ, ଏଣୁ ଧାର୍ମିକ ଗ୍ରନ୍ଥର ପ୍ରଚାର ପ୍ରସାର ହିଁ ଭଗବାନଙ୍କର ବାସ୍ତବ ସେବା । ଆମ୍ଭେ ଏହି ସେବା ଯେପରି ପ୍ରମାଦରହିତ ଭାବରେ କରୁଁ, ଆମ୍ଭମନରେ ଯେପରି ଅହଂ ଭାବ ସ୍ଥାନ ନପାଏ ଓ ଆମ୍ଭେ ନିଜକୁ ଚରାଚର ଇଶ୍ୱର ସେବକ ବୋଲି ଜ୍ଞାନ କରି ପ୍ରତ୍ୟେକଙ୍କର ସେବା କରିପାରୁ, ଏହି ଆଶୀର୍ବାଦ ପ୍ରତ୍ୟେକଙ୍କଠାରୁ ଆଶା କରୁଁ ।

ବାଞ୍ଛା-କଳ୍ପତରୁଭ୍ୟଶ୍ଚ କୃପାସିନ୍ଧୁଭ୍ୟ ଏବ ଚ
ପତିତାନାଂ ପାବନେ ଭ୍ୟୋଚ ବୈଷ୍ଣବେଭ୍ୟୋ ନମୋନମଃ ॥

ସଙ୍କୀର୍ତ୍ତନ ଭବନ,
ଝୁସୀ ପ୍ରୟାଗ
ଜ୍ୟେଷ୍ଠ—କୃ ୫/୨୦୦୬ ବି:

ପ୍ରଭୁଦତ୍ତ ବ୍ରହ୍ମଚାରୀ



# ସୂର୍ଯ୍ୟବଂଶର ପ୍ରଥମ ପୃଷଧ୍ରଙ୍କ କଥା

**ପୃଷଧ୍ରସ୍ତୁ ମନୋଃ ପୁତ୍ରୋ ଗୋପାଲୋ ଗୁରୁଣା କୃତଃ ।**
**ପାଲୟାମାସ ଗା ଯତ୍ତୋ ରାତ୍ର୍ୟାଂ ବୀରାସନବ୍ରତଃ ॥**

(ଶ୍ରୀ: ଭା: ୯ ସ୍କ:, ୨ ଅ: ୩ ଶ୍ଳୋକ)

## ଛପ୍‌ପଦ୍ମ

ଇକ୍ଷ୍ୱାକୁ ନୃଗ ଆଦି ଭୟେ ସୁତ ମନୁକେ ପୁନ ଦଶ ।
ପ୍ରଥମ ପୃଷଧ୍ର ଚରିତ୍ର କହୁଁ ଫିର ଔରନକୋ ଯଶ ॥
କୀୟେ ଗୁରୁ ଗୋପାଲ କ୍ରମର ରକ୍ଷକ ଗାଇନକୁଁ ।
ହିଂସକ ଆବୈଂ ସିଂହ ବ୍ୟାଘ୍ର ମାରୈଂନେତ ତନକୁଁ ॥
ଏକ ଦନା ଜଣି ଧେନୁକୁଁ, ପକରି ସିଂହ ଘଗୋ୍ୟା ତହାଁ ।
ଡକରାଇ ଗୌୟା ଜବହି, ଲୈଅସି ସୋ ପହୁଁଚେ୍ୟା ବହାଁ ॥

ଗୋମାତା ହେଉଛନ୍ତି ଲୋକ ମାତା । ଯେ ଗୋମାତାଙ୍କୁ ରକ୍ଷା ନ କରନ୍ତି, ତାଙ୍କ ବଧରେ ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷରେ ସାହାଯ୍ୟ କରନ୍ତି, ସେ ଦସ୍ୟୁ ଅଟନ୍ତି । ସେ ବର୍ଣ୍ଣାଶ୍ରମ ବହିଷ୍କୃତ ବ୍ୟକ୍ତି ଅଟନ୍ତି । ଗୋବଧ ଏତେ ବଡ଼ ପାପ ଯେ, ତାହାର ପ୍ରାୟଶ୍ଚିତ କେବଳ ପ୍ରାଣତ୍ୟାଗରେ ହିଁ ହୋଇଥାଏ । ପ୍ରାଚୀନ କାଳରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ତଥା ଶୁଦ୍ରାଦି ପ୍ରତ୍ୟେକେ ଗୋ ସେବାରେ ବିଶେଷ ଯତ୍ନ ନେଉଥିଲେ । ଦେବତାଙ୍କ ଭଳି ଗୋ ମାତାଙ୍କର ପୂଜା କରୁଥିଲେ । ତାଙ୍କଠାରେ ପଶୁବୁଦ୍ଧି ରଖିବା କେବଳ ପଶୁତା ନୁହେଁ, ପାପ ମଧ୍ୟ । ଗୋମାତାଙ୍କ ସମସ୍ତ ଅଙ୍ଗରେ ସମସ୍ତ ଦେବତା ବାସ କରନ୍ତି । ଗୋମାତାଙ୍କ ପୂଜା କରିବା ଦ୍ୱାରା ପ୍ରତ୍ୟେକ ଦେବତାଙ୍କୁ ପୂଜା କରାଯାଇଥାଏ । ତେଣୁ ଗୋମାତାଙ୍କ ମହତ୍ତ୍ୱ ବର୍ଣ୍ଣନା କରିବା ପାଇଁ ପ୍ରଥମ ମନୁପୁତ୍ର ପୃଷଧ୍ରଙ୍କ ଚରିତ ଏଠାରେ ବର୍ଣ୍ଣନା କରାଯାଉଛି ।

ଶୁକଦେବ କହିଲେ—"ହେ ରାଜନ ! ମୁଁ ବୈବସ୍ୱତ ମନୁଙ୍କ ପ୍ରଥମ ପୁତ୍ର ସୁଦ୍ୟୁମ୍ନଙ୍କ ବଚିତ୍ର ଚରିତ୍ର ଆପଣମାନଙ୍କୁ ଅତି ସଂକ୍ଷେପରେ କହୁଅଛି । ଯଦିଚ ସୁଦ୍ୟୁମ୍ନ ବଡ଼ ଥିଲେ, ସେ ସ୍ତ୍ରୀରେ ପରିଣତ ହୋଇ ଅନ୍ୟ ବଂଶ ବୃଦ୍ଧି କରାଇ ଥିଲେ ଓ ସେହି ବଂଶର ଜାତ ବ୍ୟକ୍ତି ମାନଙ୍କୁ ଚନ୍ଦ୍ରବଂଶୀ ବୋଲି କୁହାଯାଉଥିଲା । ବୈବସ୍ୱତ-ମନୁଙ୍କ ବଂଶକୁ ହିଁ ସୂର୍ଯ୍ୟବଂଶ ବୋଲି କୁହାଯାଏ । ଏଣୁ ମୁଁ ପ୍ରଥମେ ସୂର୍ଯ୍ୟବଂଶ ବିଷୟରେ ବର୍ଣ୍ଣନ କରୁଅଛି ।

ଯେତେବେଳେ ସୁଦ୍ୟୁମ୍ନ ଶିବଙ୍କ ଶାପରେ ଦୁଃଖିତ ହୋଇ ବନକୁ ପ୍ରସ୍ଥାନ କଲେ, ସେତେବେଳେ ବୈବସ୍ୱତ ମନୁ ଯମୁନା ନଦୀ କୂଳରେ ପୁତ୍ର କାମନା କରି ୧୦୦ ବର୍ଷ ପର୍ଯ୍ୟନ୍ତ ଘୋର ତପସ୍ୟା କଲେ । ୧୦୦ ବର୍ଷ ପର୍ଯ୍ୟନ୍ତ ସେ ଯଜ୍ଞ ପୁରୁଷ ଭଗବାନଙ୍କୁ ଯଜ୍ଞ ଦ୍ୱାରା ନିରନ୍ତର ଆରାଧନା କରିବାକୁ ଲାଗିଲେ । ରାଜାଙ୍କର ଆରାଧନାରେ ପୁରାଣପୁରୁଷ ପ୍ରସନ୍ନ ହେଲେ ଓ ତାଙ୍କୁ ୧୦ ପୁତ୍ର ଲାଭ ହେବା ପାଇଁ ବରଦାନ କଲେ । ଏହି ବର ଲାଭ କରି ସୂର୍ଯ୍ୟପୁତ୍ର ଅତ୍ୟନ୍ତ ଆନନ୍ଦିତ ହେଲେ । କାଳକ୍ରମେ ତାଙ୍କର ଇକ୍ଷ୍ୱାକୁ, ନୃଗ, ଶର୍ଯ୍ୟାତି, ଦିଷ୍ଟ, ଧୃଷ୍ଟ, କରୁଷ, ନରିଷ୍ୟନ୍ତ, ପୃଷଧ୍ର, ନଭଗ ଓ କବି ଏହି ଦଶ ପୁତ୍ର ଜାତହୋଇଥିଲେ । ଏମାନଙ୍କ ମଧ୍ୟରେ ଇକ୍ଷ୍ୱାକୁ ସମସ୍ତଙ୍କ ଅପେକ୍ଷା ବଡ଼ ଥିଲା । ଏଥିପାଇଁ ସୂର୍ଯ୍ୟବଂଶକୁ ଇକ୍ଷ୍ୱାକୁବଂଶ ବୋଲି କୁହାଯାଏ । ପ୍ରଥମେ ମୁଁ "ସୂଚୀ କଟାହ ନ୍ୟାୟ"ରେ ଇକ୍ଷ୍ୱାକୁଙ୍କ ବ୍ୟତିତ ଶେଷ ନଅ ପୁତ୍ରଙ୍କ ବିଷୟ ବର୍ଣ୍ଣନ କରୁଅଛି ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଇକ୍ଷ୍ୱାକୁ ବଡ଼ ହୋଇଥିବା କାରଣରୁ ପ୍ରଥମେ ତାଙ୍କ ବଂଶବିଷୟରେ ବର୍ଣ୍ଣନା କରନ୍ତୁ । ଆପଣ ଜ୍ୟେଷ୍ଠ ପୁତ୍ରଙ୍କ ବଂଶ ବର୍ଣ୍ଣନ ନ କରି କନିଷ୍ଠଙ୍କ ବଂଶ ବର୍ଣ୍ଣନ କାହିଁକି କରିବେ ? ପୁନଶ୍ଚ ସୂଚୀ କଟାହ ନ୍ୟାୟ" କଣ ?"

ସୂତ କହିଲେ —"ମହାରାଜ ! ଜଣେ ଲୋକ କମାର ଶାଳକୁ ଯାଇ କହିଲା ଭାଇ ! ମୋତେ ଗୋଟିଏ ବଡ଼ କରେଇ ତିଆରି କରି ଦିଅ ।" କମାର କରେଇ କରିବାର ସମସ୍ତ ଜିନିଷ ଯୋଗାଡ଼ କଲା । ଠିକ୍ ସେତିକିବେଳେ ଜଣେ ଲୋକ ଆସି ତାକୁ କହିଲା—"ଭାଇ ! ମୋତେ ଗୋଟିଏ ଡାଙ୍ଗଣ ତିଆରି କରି ଦିଅ ।" କମାର କରେଇ କାର୍ଯ୍ୟ ଆରମ୍ଭ ନ କରି ପ୍ରଥମେ ସେହି ଲୋକକୁ ଡାଙ୍ଗଣ (ସୂଚୀ) ତିଆରି କରି ଦେଲା ।

ଏ କଥା ଦେଖି ଜଣେ ପଚାରିଲା—"ଆହୋ କମାର ଭାଇ ! ସେ ଲୋକ ପ୍ରଥମେ ଆସିଥିଲେ, ନିୟମାନୁସାରେ ତୁମେ ପ୍ରଥମେ ତାଙ୍କ କାମ କରି ପରେ ଅନ୍ୟର

କାମ କରିବା ଉଚିତ ଥିଲି, ମାତ୍ର ତୁମେ ତାହା ନ କରି ପଛରେ ଆସିଥିବା ଲୋକର କାମ ତ ଆଗେ କଲ ଓ ପ୍ରଥମ ଲୋକ କାର୍ଯ୍ୟ କରିବାରେ ଟିକିଏ ହେଲେ ଧ୍ୟାନ ଦି ଦେଲ ନାହିଁ ।"

ଏ କଥା ଶୁଣି କୁମାର କହିଲା—"ମହାଭାଗ ! କରେଇ. ତିଆରି କରିବାକୁ ବିବାଦ କରିଥିବା ବ୍ୟକ୍ତିଙ୍କ କାମ ବହୁତ ବଡ଼ । ଏଥିପାଇଁ ଅଧିକ ଶ୍ରମ ଓ ସମୟ ଆବଶ୍ୟକ । ତାମ୍ରଣ ତିଆରି କରିବା କାର୍ଯ୍ୟ ଅଳ୍ପ ସମୟ ମଧ୍ୟରେ ହୋଇଯିବ, ତେଣୁ ମୁଁ ତାଙ୍କୁ ଆଗ ବିଦାୟ କରି ଦେଇ ନିଶ୍ଚିନ୍ତ ହୋଇ କରେଇ ତିଆରି କରିବି ବୋଲି ପ୍ରଥମେ ତାଙ୍କୁ ବିଦାୟ କରିଦେଲି ।"

ସୂତ କହିଲେ—"ମୁନିଗଣ ! ଏହି କାରଣରୁ ପ୍ରଥମେ ମୁଁ ନୃଗ, ପୃଷଧ୍ର, କବି, କରୂଷ, ନରିଷ୍ୟନ୍ତ ତଥା ଅନ୍ୟାନ୍ୟ ମନୁପୁତ୍ରଙ୍କ ବିଷୟରେ ବର୍ଣ୍ଣନ କରି ଶେଷରେ ଇକ୍ଷ୍ୱାକୁ ବଂଶ ସମ୍ବନ୍ଧରେ ବିସ୍ତାରିତ ଭାବରେ ବର୍ଣ୍ଣନ କରିବି । ନରରୂପୀ ପରଂବ୍ରହ୍ମ କୌଶଲ୍ୟା ନନ୍ଦନ ଶ୍ରୀରାମ ସ୍ୱୟଂ ଏହି ଇକ୍ଷ୍ୱାକୁ ବଂଶରେ ଅବତୀର୍ଣ୍ଣ ହୋଇଥିଲେ । ଇକ୍ଷ୍ୱାକୁଙ୍କ ନ'ଟି ସାନ ଭାଇଙ୍କ ମଧ୍ୟରୁ ପୃଷଧ୍ରଙ୍କ ଚରିତ ପ୍ରଥମେ ଶୁଣନ୍ତୁ ।"

ଶ୍ରୀ ଶୁକଦେବ ସୂର୍ଯ୍ୟ ବଂଶ ବିଷୟରେ ବର୍ଣ୍ଣନା କରିବାକୁ ଯାଇ ମହାରାଜ ପରୀକ୍ଷିତଙ୍କୁ କହିଲେ—"ରାଜନ୍ ! ଶ୍ରାଦ୍ଧଦେବ ବୈବସ୍ୱତ-ମନୁଙ୍କର ୧୦ ପୁତ୍ର ହୋଇ ଯିବାରୁ ଦିନେ ତାଙ୍କ କୁଳପୁରୋହିତ ତାଙ୍କୁ କହିଲେ ରାଜନ୍ ! ତୁମର ଦଶ ପୁତ୍ର ତ ହେଲେ, ସେମାନଙ୍କ ମଧ୍ୟରୁ ଗୋଟିଏ ପୁତ୍ରକୁ ମୋତେ ପ୍ରଦାନ କର ।"

ରାଜା କହିଲେ—"ମହାଭାଗ ! ସମସ୍ତେ ତ ଆପଣଙ୍କର । ମୁଁ ମଧ୍ୟ ଆପଣଙ୍କର, ଏଥିରେ ପୁଣି ଦେବା ନେବା ପ୍ରଶ୍ନ ଉଠୁଛି କେଉଁଠି ? ଆପଣଙ୍କର ଯାହା ଆଜ୍ଞା ପ୍ରକାଶ କରନ୍ତୁ ।"

ବଶିଷ୍ଠ ଏହା ଶୁଣି ହସି ହସି କହିଲେ—"ରାଜନ ! କଥାଟା ଏପରି ନୁହେଁ, ସମସ୍ତ ଧନ ସମ୍ପତ୍ତି ପ୍ରକୃତରେ ଆପଣଙ୍କର । ଆପଣ ଯାହା କହିଲେ, ତାହା କେବଳ ଶିଷ୍ଟାଚାର । ମୋର ଗାଈ ମାନଙ୍କୁ ଜଗାରଖା କରିବା ପାଇଁ ଆପଣ ଆପଣଙ୍କ ପୁତ୍ର ମାନଙ୍କ ମଧ୍ୟରୁ ପୃଷଧ୍ରଙ୍କୁ ପ୍ରଦାନ କରନ୍ତୁ ।"

ରାଜା ପ୍ରସନ୍ନ ହୋଇ କହିଲେ—"ହଁଅନ୍ତୁ ମହାଭାଗ ! ଏହାତ ମୋର ଓ ପୃଷଧ୍ରଙ୍କର ମହାଭାଗ୍ୟ । କାରଣ ଆପଣ ତାଙ୍କୁ ସର୍ବୋତ୍ତମ ସେବା ଅର୍ପଣ କରୁଛନ୍ତି ।

ବଶିଷ୍ଠଙ୍କ ଆଶ୍ରମରେ ଏକ ଗୋ-ଗୋଷ୍ଠ ଥିଲା ଓ ସେହି ଗୋଷ୍ଠରେ ଅନେକ ଗାଈ ଥିଲେ । ଏକେତ ଅରଣ୍ୟ ମୁଲକ, ଅପର ପକ୍ଷେ ଏହାର ସୀମା ଅତ୍ୟନ୍ତ ବିସ୍ତୀର୍ଣ୍ଣ

ଥିଲା । ଗୁରୁ ପୃଷଧ୍ରଙ୍କୁ କହିଲେ—"ଦେଖ ! ତୁମେ ଅତି ସାବଧାନତା ସହକାରେ ଏଠାରେ ରହି ଗାଈ ମାନଙ୍କର ଯତ୍ନ ନେବ । ଏଠାକୁ ହିଂସ୍ରଜନ୍ତୁମାନେ ରାତିରେ ଆସନ୍ତି । କୌଣସି ଜନ୍ତୁ ଆସି ଯେପରି ଗାଈଙ୍କୁ କଷ୍ଟ ନ ଦିଅନ୍ତି ସେଥିପ୍ରତି ଦୃଷ୍ଟି ରଖିବ ।"

ପୃଷଧ୍ର ହାତଯୋଡ଼ି କହିଲେ, "ଗୁରୁଦେବ ! ମୁଁ ଅତି ସାବଧାନ ହୋଇ ଗୋଗୋଷ୍ଠ ରକ୍ଷା କରିବି ।" ତାଙ୍କଠାରୁ ଏ କଥା ଶୁଣି ଗୁରୁ ଅତ୍ୟନ୍ତ ପ୍ରସନ୍ନ ହେଲେ । ପୃଷଧ୍ର ମଧ୍ୟ ଅତି ସାବଧାନତା ସହକାରେ ରାତି କାଳରେ ବୀରାସନରେ ବସି ନିରନ୍ତର ଗୋଗୋଷ୍ଠକୁ ରକ୍ଷା କରୁଥିଲେ । ହିଂସ୍ର ଜନ୍ତୁଙ୍କ ଗର୍ଜନ ଶୁଣିବା କ୍ଷଣି ସେ ସତର୍କ ହୋଇ ଅଣ୍ଟା ଭିଡ଼ି ଠିଆ ହୁଅନ୍ତି ଓ ହିଂସ୍ରଜନ୍ତୁଙ୍କୁ ମାରି ଘଉଡ଼ାଇ ଦିଅନ୍ତି ।

ଭାଦ୍ରବ ମାସ କୃଷ୍ଣପକ୍ଷ ଏକ ରାତିର ଘଟଣା । ସେ ଦିନ ଆକାଶ କଳା ମେଘରେ ଆଚ୍ଛାଦିତ ହୋଇଥିବାରୁ ତାରକାଟିଏ ବି ଦୃଷ୍ଟିଗୋଚର ହେଉ ନ ଥିଲେ । ଚତୁର୍ଦ୍ଦିଗ ଘୋର ଅନ୍ଧକାରାଚ୍ଛନ୍ନ । ଏହି ସମୟରେ ଗୋରୁପଲ ମଧ୍ୟକୁ ଏକ ବ୍ୟାଘ୍ର ପ୍ରବେଶ କଲା । ସେ ପ୍ରବେଶ କରିବାକ୍ଷଣି ଗାଈମାନେ ହମ୍ବାରଡ଼ି କରିବାକୁ ଲାଗିଲେ । ଗୋ-ଗୋଷ୍ଠର କୌଣସି ଗାଈ ବନ୍ଧା ହୋଇ ନ ଥିଲେ, ସେମାନେ ଖୋଲା ହୋଇ ଶୋଇ ଯାଇଥିଲେ । ସହସା ବ୍ୟାଘ୍ର ପ୍ରବେଶ କରିବାରୁ ସେମାନେ ଭୟରେ ଜାଗ୍ରତ ହୋଇ ଉଠିଲେ ଓ ଏଣେ ତେଣେ ଦୌଡ଼ିବାକୁ ଲାଗିଲେ । ବ୍ୟାଘ୍ର ସେମାନଙ୍କ ମଧ୍ୟରୁ ଗୋଟିକୁ ଭିଡ଼ିନେଇ ପଳାଇଗଲା । ବ୍ୟାଘ୍ର ଯେତେବେଳେ ସେହି ଗାଈକୁ କବଳିତ କରିଥିଲା, ସେତେବେଳେ ସେ ଖୁବ୍ ଜୋରରେ ହମ୍ବାରଡ଼ି କରିଥିଲା । ତାହାର ଆର୍ତ୍ତସ୍ୱର ଶ୍ରବଣ କରି ପୃଷଧ୍ର ଖୁବ୍ ଶୀଘ୍ର ସେଠାକୁ ଧାଇଁ ଆସିଥିଲେ ।

ବର୍ଷଣମୁଖର ଅନ୍ଧକାର ରାତି । ଆକାଶ ମେଘାଚ୍ଛନ୍ନ । ଝିପିଝିପି ବର୍ଷା ଲାଗି ରହିଥାଏ । ଅନ୍ଧକାରରେ ମୁହଁକୁ ମୁହଁ ଦିଶୁ ନଥାଏ । ଗାଈଙ୍କର ଆର୍ତ୍ତନାଦ ଶ୍ରବଣ କରି କୁମାର ଅଗ୍ନି ଜଳାଇ ସେଠାକୁ ନେବାପାଇଁ ସମୟ ନଥିଲା । ସେ ଅବଲମ୍ବେ ହସ୍ତରେ ଖଡ୍‌ଗ ଧାରଣ କରି ଆର୍ତ୍ତସ୍ୱର ଯେଉଁ ଦିଗରୁ ଆସୁଥିଲା, ସେହିଆଡ଼େ ଗାଈଙ୍କୁ ରକ୍ଷା କରିବା ପାଇଁ ଧାଇଁ ଧାଇଁ ଯାଇଥିଲେ । ସହସା ସେ ଗାଈଟିକୁ ଧରିନେଇ ଯାଉଥିବା ବ୍ୟାଘ୍ରକୁ ଅନୁମାନ କରି ଦେଖିଲେ ଓ ସେହିଠାରେ ଖଡ୍‌ଗ ଚାଳନା କଲେ । ଖଡ୍‌ଗଟି ବ୍ୟାଘ୍ର ଶରୀରରେ ନ ବାଜି ଭୁଲବଶତଃ ଗାଈର କଣ୍ଠଦେଶରେ ବାଜିବାକ୍ଷଣି ତାହାର ମୁଣ୍ଡ ଶରୀରୁ ଅଲଗା ହୋଇଗଲା । ସେହି ଖଡ୍‌ଗ ଚୋଟରେ ବ୍ୟାଘ୍ରର ଗୋଟିଏ କାନ କେବଳ କଟିଯାଇଥିଲା । ସେ ଗାଈକୁ ଛାଡ଼ି କଟା କାନରୁ ରକ୍ତ ବହୁଥିବା ଅବସ୍ଥାରେ ସେଠାରୁ ପଳାଇଗଲା । ଏଣେ ଅଗ୍ନିହୋତ୍ର ଉପଯୋଗୀ ସେହି କପିଳା ଗାଈଟି ଭୂମିରେ ଟଳି ପଡ଼ିଲା । କୁମାର ସେହି ଅନ୍ଧକାର ମଧ୍ୟରେ ମନେ ମନେ ଭାବିଲେ—"ମୁଁ ବ୍ୟାଘ୍ରକୁ ମାରିଦେଇଛି ।"

କିଛି ସମୟ ପରେ ରାତି ପାହିସିବାରୁ ସେ ଯାହା ଦେଖିଲେ, ସେଥିରେ ତାଙ୍କର ଦୁଃଖର ସୀମା ରହିଲା ନାହିଁ । ହାୟ ! ବ୍ୟାଘ୍ର ଭ୍ରମରେ ଭୂଲବଶତଃ ମୁଁ ମୋର କପିଳା ଗାଈକୁ ହତ୍ୟା କଲି, ଏବେ ଗୁରୁଦେବଙ୍କୁ କପରି ମୁହଁ ଦେଖାଇବି ? ଏହିପରି ଚିନ୍ତା କରି ପୃଷଧ୍ର ଭୟରେ ଥରିବାକୁ ଲାଗିଲେ ।

ପ୍ରାତଃ କାଳରେ ତାଙ୍କର ମୁଖ ମଳିନ ପଡ଼ିଯାଇଥିଲା । ଶରୀରର କାନ୍ତି କ୍ଷୀଣ ହୋଇଯାଇଥିଲା । କ୍ଷତ୍ରିୟର ତେଜ ତାଙ୍କଠାରୁ ଲୋପ ପାଇଯାଇଥିଲା । ସେ ତରତର ଗୁରୁଙ୍କ ସମୀପରେ ପହଞ୍ଚିଲେ ଓ ଗୁରୁଦେବଙ୍କୁ ଏତିକି ମାତ୍ର କହିଲେ—"ଗୁରୁଦେବ ! ଗତ ରାତିରେ ଭୂଲବଶତଃ ବ୍ୟାଘ୍ର ଭ୍ରମରେ ମୁଁ କପିଳା ଗାଈକୁ ହତ୍ୟା କରି ପକାଇଛି ।"

ଗୋ-ହତ୍ୟା ଶବ୍ଦ ଶୁଣିବା କ୍ଷଣି ଭଗବାନ୍ ବଶିଷ୍ଠ ଅତ୍ୟନ୍ତ କୁପିତ ହେଲେ ଓ ସେହି ରାଜକୁମାରଙ୍କୁ ଶାପ ଦେଇ କହିଲେ—"ଜ୍ଞାତସାରରେ ହେଉ ବା ଅଜ୍ଞାତରେ ହେଉ, ଇଚ୍ଛାକରି ହେଉ ବା ଅନିଚ୍ଛାରେ ହେଉ, ପାପ ତ ପାପ । ପୁନଶ୍ଚ ଗୋହତ୍ୟା ଏପରି ଏକ ଘୋର ଅକ୍ଷମଣୀୟ ପାପ ଯେ, ଯାହାର ପ୍ରାୟଶ୍ଚିତ୍ତ କେବଳ ନିଜ ପ୍ରାଣବଳି ଦେବା । ଏଣୁ ମୁଁ ତୋତେ ଏହି ଶାପ ଦେଉଛି ଯେ ତୁ ନୀଚ କ୍ଷତ୍ରିୟ ବି ନ ହୋଇ ଦସ୍ୟୁ ଶୂଦ୍ରଭଳି ହୋଇ ଯା । କ୍ଷତ୍ରିୟଙ୍କ ସହିତ ତୋର କୌଣସି ସମ୍ବନ୍ଧ ନ ରହୁ ।"

ନିଜର କୁଳଗୁରୁ ଭଗବାନ୍ ବଶିଷ୍ଠଙ୍କ ମୁଖରୁ ଏ ପ୍ରକାର ଶାପ ପାଇ କୁମାର ଆଦୌ ଦୁଃଖ ପ୍ରକାଶ କଲେ ନାହିଁ । ସେ ହସି ହସି ତାହା ଶିରୋଧାର୍ଯ୍ୟ କଲେ । ଏବେ ସେ ଚିନ୍ତା କରିବାକୁ ଲାଗିଲେ—"କ୍ଷତ୍ରିୟମାନଙ୍କ ସହିତ ତ ମୋର ସମ୍ବନ୍ଧ ହେବ ନାହିଁ । ଯଦି ମୁଁ ଅନ୍ୟାନ୍ୟ କୌଣସି ବର୍ଣ୍ଣରେ ବିବାହ କରେ, ତେବେ ମୋର ବଂଶଜ ପ୍ରତ୍ୟେକେ ଦସ୍ୟୁ ଓ ମ୍ଲେଚ୍ଛ ବୋଲି ପରିଚିତ ହେବେ । ତେଣୁ ମୁଁ ଆଦୌ ବିବାହ କରିବି ନାହିଁ । ଆଜିଠାରୁ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବି ।"

ଏହା ଚିନ୍ତା କରି ସେ ଶ୍ରଦ୍ଧାର ସହିତ ଗୁରୁଙ୍କ ଚରଣରେ ପ୍ରଣାମ କରି ମୁନିବ୍ରତ ଧାରଣ ପୂର୍ବକ ତୀର୍ଥାଟନ କରିବା ପାଇଁ ବାହାରି ପଡ଼ିଲେ । ସେ ସମସ୍ତ ପ୍ରକାର ସାଂସାରିକ ସମ୍ବନ୍ଧ ପରିତ୍ୟାଗ କରି ଦେଇଥିଲେ । ନିଃସଙ୍ଗ ଓ ନିର୍ମମ ହୋଇ ସେ ପ୍ରତ୍ୟେକ ପ୍ରାଣୀଠାରେ ପ୍ରଭୁଙ୍କୁ ଦର୍ଶନ କରିବାକୁ ଲାଗିଲେ । ସମଦର୍ଶୀ ହୋଇ ଭକ୍ତିଭାବରେ ପରମ ବିଶୁଦ୍ଧ ଭଗବାନ୍ ବାସୁଦେବଙ୍କଠାରେ ଅନନ୍ୟ ଭକ୍ତିଭାବ ରଖିବାକୁ ଲାଗିଲେ । ସେ ସେହି ସର୍ବାତ୍ମା ଶ୍ରୀହରିଙ୍କୁ ହିଁ ନିଜର ସର୍ବସ୍ୱ ଜ୍ଞାନ କରି ଅଲକ୍ଷିତ ଗତିରେ ପୃଥ୍ୱୀ ପର୍ଯ୍ୟଟନ କରିବାକୁ ଲାଗିଲେ । ସେ କାହାରିଠାରୁ କୌଣସି ବସ୍ତୁ ଗ୍ରହଣ କରୁ

ନଥିଲେ । ସଦା ସର୍ବଦା ଇନ୍ଦ୍ରିୟଗୁଡ଼ିକୁ ନିଜ ବଶରେ ରଖି, ସୁଖ ଦୁଃଖରେ ସମଭାବ ପୋଷଣ କରି, ଦୈବ ଯୋଗରୁ ଯାହା ଯେତେବେଳେ ଆହାର ମିଳିଯାଉଥିଲା ତହିଁରେ ସନ୍ତୁଷ୍ଟ ହୋଇ ଭଗବାନଙ୍କ ଧ୍ୟାନ କରୁଥିଲେ । ଲୋକଙ୍କ ସମ୍ମୁଖରେ ଜଡ଼, ଅନ୍ଧ, ଘୁଙ୍ଗା, ବଧିର, ତଥା ପାଗଳ ବୋଲି ସେ ପରିଚିତ ହୋଇଥିଲେ । କେହି ଥଟ୍ଟା କରୁଥିଲେ ବି ସେଥିପ୍ରତି ସେ ଦୁଃଖ ପ୍ରକାଶ କରୁ ନଥିଲେ । କେହି ପ୍ରଶଂସା କରୁଥିଲେ ମଧ୍ୟ ସେ ପ୍ରସନ୍ନ ହେଉ ନଥିଲେ । ସେ କାହାରିକୁ ନିନ୍ଦା କରୁ ନଥିଲେ ବା କାହାରିକୁ ସ୍ତୁତି ମଧ୍ୟ କରୁ ନଥିଲେ । ଏହିପରି ଭାବରେ ପୂର୍ଣ୍ଣ ଜ୍ଞାନୀ ପୁରୁଷଙ୍କ ବୃତ୍ତି ଧାରଣ କରି ସେ ବିନା ସଂକଳ୍ପରେ ପୃଥିବୀର ବିଭିନ୍ନ ସ୍ଥାନରେ ଭ୍ରମଣ କରୁଥିଲେ ।

କ୍ରମେ ତାଙ୍କ ନିଜ ଜୀବନ ଭାରି ଦୁର୍ବହ ପ୍ରତୀତ ହେବାକୁ ଲାଗିଲା । ଗୁରୁଙ୍କର ଅଭିଶାପ ତାଙ୍କର ସ୍ମରଣ ହେଲା । "ଗୋହତ୍ୟାଜନିତ ଏହି କଳୁଷିତ ଶରୀର ଧାରଣ କରି କି ଲାଭ ?" ଏହି କଥା ଚିନ୍ତା କରି ସମୟ ଅତିବାହିତ କରୁଥିବା ସମୟରେ ଦିନେ ହଠାତ୍ ବନ ମଧ୍ୟରେ ଦାବାଗ୍ନି ଲାଗିଥିବା ସମୟରେ ସେ ସ୍ୱେଚ୍ଛାକୃତ ଭାବରେ ସେହି ଦାବାଗ୍ନି ମଧ୍ୟରେ ନିଜ ଶରୀରକୁ ଆହୁତ ଦେଇ ଦେଲେ । ଅଗ୍ନିରେ ଦେହକୁ ଭସ୍ମୀଭୂତ କରି ସେ ଏହି ପ୍ରକାର ଗୋହତ୍ୟା ଜନିତ ପାପର ପ୍ରାୟଶ୍ଚିତ୍ତ କରିଥିଲେ ।

ସୂତ କହିଲେ—"ମୁନିଗଣ ! ମନୁପୁତ୍ର ପୃଷଧ୍ର ଏହିପରି ଭାବରେ ବିବାହ ନକରି ଏହି ଅସାର ସଂସାରରୁ ବିଦାୟ ନେଇଥିଲେ । ତାଙ୍କର ବଂଶ ଯେତେବେଳେ ରହି ନ ଥିଲା, ସେତେବେଳେ ତାଙ୍କ ବଂଶ ବର୍ଣ୍ଣନା କରିବାର ପ୍ରଶ୍ନ ଉଠୁନାହିଁ । ଏବେ ଆପଣମାନେ ବୈବସ୍ୱତ ମନୁଙ୍କର କବି, କରୁଷ ଆଦି ଅନ୍ୟ ପୁତ୍ରମାନଙ୍କର ବଂଶ ବିଷୟ ଶ୍ରବଣ କରନ୍ତୁ ।"

## ଛପ୍ପୟ

ବ୍ୟାଘ୍ର ନ ଦୀଖ୍ୟୋ ଅନ୍ଧକାର ମହଁ ଖଡ୍‌ଗ ଚଲାୟୋ ।
ଭ୍ରମବଶ ବ୍ୟାଘ୍ର ନ ମରେ୍ୟା ଧେନୁ ସିରକାଟି ଗିରାୟୋ ॥
ଜାନି ଦୋଷ ଗୁରୁ ନିକଟ ଜାୟ ସବ୍ ବୃତ୍ତ ସୁନାୟୋ ।
ସୁନି ମୁନି ଦୀୟୋ ଶାପ କ୍ଷତ୍ର ତେ ଶୁଦ୍ର ବନାୟୋ ॥

କୀୟୋ ନହୀ ବିବାହ, ପାନ, ଜୀବନ ଭରି ହରି ହୀ ଭଜେ୍ୟା ।
ବନ ଦାବାନଳମହଁ ପ୍ରବିଶି, ଅନ୍ତ ସମୟମହି ତନୁ ତଜେ୍ୟା ॥



# କବି, କରୁଷ ଆଦିଙ୍କ ବଂଶ ବର୍ଣ୍ଣନ

(୫୯୭)

**କବିଃ କନୀୟାନ୍ ବିଷୟେଷୁ ନିଃସ୍ପୃହୋ—**
**ବିସୃଜ୍ୟ ରାଜ୍ୟଂ ସହ ବନ୍ଧୁଭିର୍ବନମ୍ ।**
**ନିବେଶ୍ୟ ଚିତ୍ତେ ପୁରୁଷଂ ସ୍ୱରୋଚିଷମ୍**
**ବିବେଶ କୈଶୋରବୟାଃ ପରଂ ଗତଃ ।**

(ଶ୍ରୀ: ଭା: ୯ ସ୍କ: ୨ ଅ: ୧୫ ଶ୍ଳୋକ)

**ଛପ୍ପୟ**

ମନୁ ସୁତ ଲଘୁ ସବ ମାଁହି ନାମ କବି ଅତିଶୟ ତ୍ୟାଗୀ ।
ରାଜ ପାଟ ପରିବାର ତ୍ୟାଗି ବନ ଗୟେ ବିରାଗୀ ।।
ଜୋ କରୁଷ ମନୁପୁତ୍ର ଭୟେ ଉତ୍ତରକେ ଭୂପତି ।
ଧୃଷ୍ଟ ପୁତ୍ରତେଁ ଧାର୍ଷ୍ଟ, ଭୟେ ଦ୍ୱିଜତାକୀ ସନ୍ତତି ।।
ମନୁସୁତ ନୃଗ କେ ସୁମତିସୁତ, ଭୂତଜ୍ୟୋତି ତନତେଂ ଭୟେ ।
ନରିଷ୍ୟନ୍ତକେ ବଂଶଧର, ଆଗେ ଦ୍ୱିଜ ସବ ବନ ଗୟେ ।।

କଥାର ପରମ୍ପରା ଯୋଗ କରିବା ପାଇଁ ପ୍ରତ୍ୟେକ କଥାରେ କୌଣସି ନୀରସ ପ୍ରସଙ୍ଗ ମଧ୍ୟ ବେଳେବେଳେ ବର୍ଣ୍ଣନ କରିବାକୁ ପଡ଼ିଥାଏ । ପାଠକଗଣ ଶ୍ରଦ୍ଧା ସହକାରେ ତାକୁ ପାଠ କରିବାକୁ ବା ଶ୍ରବଣ କରିବାକୁ ମନ ବଳାଉ ଥାନ୍ତୁ ବା ନ ଥାନ୍ତୁ, ତାହା କିନ୍ତୁ ପୁଣ୍ୟପ୍ରଦ । ଏଥିରେ ତିଳେହେଲେ ସନ୍ଦେହ ନାହିଁ । ଯଦି ବଂଶ ପରମ୍ପରା ବର୍ଣ୍ଣନା କରା ନ ଯାଏ, ତେବେ କଥାର ପ୍ରସଙ୍ଗ ଅଧାପନ୍ତରିଆ ରହିଯିବା ଦ୍ୱାରା ଶୃଙ୍ଖଳା ରହେ ନାହିଁ । ଏଥିପାଇଁ ପୁଣ୍ୟଶ୍ଳୋକ ପୁରୁଷଙ୍କର ବଂଶାବଳୀ ଶ୍ରବଣ କରିବା ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମୁଁ ଆପଣଙ୍କ ସମ୍ମୁଖରେ ଭଗବାନ୍ ସ୍ୱାୟମ୍ଭୁବ ମନୁଙ୍କର ଜ୍ୟେଷ୍ଠ ପୁତ୍ର ଇକ୍ଷ୍ୱାକୁଙ୍କ ବଂଶ ବର୍ଣ୍ଣନ କରିବି, ଏଥି ପୂର୍ବରୁ ତାଙ୍କର

କନିଷ୍ଠପୁତ୍ର ମାନଙ୍କ ବଂଶଚରିତ ଅତି ସଂକ୍ଷେପରେ କହୁଛି ଶ୍ରବଣ କରନ୍ତୁ । ସେହି କନିଷ୍ଠପୁତ୍ର ୯ ଜଣଙ୍କ ମଧ୍ୟରୁ ପୃଷଧ୍ରଙ୍କ କଥାତ ମୁଁ ଶୁଣାଇଲି, ଏବେ ଅନ୍ୟ ଅଷ୍ଟପୁତ୍ରଙ୍କ କଥା ଶୁଣାଉଅଛି ।

ମନୁଙ୍କର ସବୁଠାରୁ ସାନ ପୁଅର ନାମ ଥିଲା କବି । କବି ବାସ୍ତବରେ ଜଣେ କବି ଥିଲେ । ସେ ଜ୍ଞାନ ଦୃଷ୍ଟିରେ ଦେଖିପାରିଲେ ଯେ ସାଂସାରିକ ଭୋଗ ନୀରସ । ଯଦିଚ କିଛି କାଳ ପାଇଁ ଏହା ସୁଖଦ ବୋଲି ପ୍ରତୀତ ହୁଏ, ତଥାପି ତାହା ପରିଣାମରେ ଦୁଃଖଦ ହୋଇଥାଏ । ଏଥିରେ ସତ୍ୟ ବୁଦ୍ଧି କରି ରମଣ କରିବା, ଗୃହସ୍ଥାଶ୍ରମୀ ହୋଇ ଜଞ୍ଜାଳ ଜାଲରେ ପଡ଼ିବା ନିଜେ ନିଜକୁ ମାୟା ଆଡ଼କୁ ଠେଲି ହୋଇଯିବା ଦ୍ୱାରା ସଂସାର ଓ ଜୀବ ବନ୍ଧନକୁ ଅଧିକ ଟାଣ କରିଦିଏ । ଏହି ସମସ୍ତ କଥା ଚିନ୍ତାକରି ସେ ରାଜଭୋଗ, କୁଳ-ପରିବାର, ବନ୍ଧୁ ବାନ୍ଧବ ତଥା ସମସ୍ତ ସାଙ୍ଗ ସାଥୀଙ୍କୁ ତ୍ୟାଗ କରି ବନକୁ ଚାଲିଗଲେ । ସେଠାରେ ସେ ନିଜର ବିଶାଳ ହୃଦୟରେ ଜ୍ୟୋତି ସ୍ୱରୂପ ସ୍ୱୟଂ ପ୍ରକାଶ ଭଗବାନ୍ ବାସୁଦେବଙ୍କୁ ସ୍ଥାପିତ କରି କିଶୋରାବସ୍ଥାରେ ହିଁ ପରମ ପଦ ପ୍ରାପ୍ତ ହେଲେ । ସେ ସେହି ପରମେଶ୍ୱର ପ୍ରଭୁଙ୍କଠାରେ ସବୁଦିନ ପାଇଁ ଲୀନ ହୋଇଗଲେ ।

ନଅ ପୁତ୍ରଙ୍କ ମଧ୍ୟରୁ ଜଣଙ୍କ ନାମ ଥିଲା କରୁଷ । ତାଙ୍କ ଔରସରୁ ଯେଉଁ ସନ୍ତାନ ଜନ୍ମଲାଭ କରିଥିଲେ ସେମାନଙ୍କୁ କାରୁଷ କ୍ଷତ୍ରୀୟ ବୋଲି କୁହାଯାଏ । ଏମାନେ ସମସ୍ତେ ପାର୍ବତ୍ୟ ଅଞ୍ଚଳକୁ ଗମନ କରିଥିଲେ ଓ ଉତ୍ତରାପଥ ଦେଶର ରାଜା ହୋଇଥିଲେ । ମନୁଙ୍କର ଚତୁର୍ଥ ପୁତ୍ରର ନାମ ଥିଲା ଧୃଷ୍ଟ । ତାଙ୍କ ବଂଶଜଗଣ ଧାର୍ଷ୍ଟ ନାମରେ ପରିଚିତ ହୋଇଥିଲେ । ସେମାନେ ଅଗ୍ରସର ହୋଇ ନିଜ ନିଜର ଶୁଭକର୍ମ ଅନୁଷ୍ଠାନ ଦ୍ୱାରା ବ୍ରାହ୍ମଣ ଭାବ ପ୍ରାପ୍ତ ହୋଇଥିଲେ ।

ପଞ୍ଚମ ପୁତ୍ର ଥିଲେ ନୃଗ । ସେ ଅତ୍ୟନ୍ତ ଦାନୀ ଓ ଯଶସ୍ୱୀ ଥିଲେ । ତାଙ୍କ ପୁତ୍ରର ନାମ ଥିଲା ସୁମିତି । ସୁମିତିଙ୍କର ପୁତ୍ର ଭୂତଜ୍ୟୋତି, ତାଙ୍କ ପୁତ୍ର ବସୁ, ବସୁଙ୍କ ପୁତ୍ର ପ୍ରତୀକ । ପ୍ରତୀକଙ୍କ ପୁତ୍ର ଓଘବାନ୍, ଓଘବାନଙ୍କ ପୁତ୍ରର ନାମ ଥିଲା ସେହି ଓଘବାନ୍ । ତାଙ୍କର ଓଘବତୀ ନାମକ ଏକ କନ୍ୟା ସୁଦର୍ଶନଙ୍କୁ ବିବାହ କରିଥିଲେ ।

ଷଷ୍ଠପୁତ୍ର ନରିଷ୍ୟନ୍ତଙ୍କର ପୁତ୍ରର ନାମ ଥିଲା ଚିତ୍ରସେନ । କ୍ରମଶଃ ବଂଶ ପରମ୍ପରା ଅନୁସାରେ ଏମାନେ ରାଜା ହୋଇଥିଲେ ଯଥା :—ଚିତ୍ରସେନ, ଋକ୍ଷ, ମୀଢବାନ୍, କୁର୍ଚ୍ଚ, ଇନ୍ଦ୍ରସେନ, ବୀତିହୋତ୍ର, ସତ୍ୟଶ୍ରବା, ଉରୁଶ୍ରବା, ଦେବଦତ୍ତ, ଦେବଦତ୍ତଙ୍କ ପୁତ୍ର ଅଗ୍ନିବେଶ୍ୟ ସାକ୍ଷାତ୍ ଅଗ୍ନିଦେବଙ୍କ ଅବତାର ଥିଲେ । ସେ ଉନ୍ନତି ପଥରେ ଅଗ୍ରସର ହୋଇ କାନୀନ ବା ଜାତୂକର୍ଣ୍ୟ ମହର୍ଷି ନାମରେ ବିଖ୍ୟାତ ହୋଇଥିଲେ । ତାଙ୍କର ବଂଶଜ କ୍ଷତ୍ରିୟ ନ ହୋଇ ପ୍ରତ୍ୟେକେ ଅଗ୍ନି ବେଶ୍ୟାୟନ

ଗୋଷ୍ଠୀ ବ୍ରାହ୍ମଣ ରୂପେ ଖ୍ୟାତ ହୋଇଥିଲେ । ଏଣୁ ଏମାନେ ଗୋତ୍ର ସ୍ଥାପକ ମହାନ୍ ଋଷି ହୋଇଥିଲେ ।

ମନୁଙ୍କ ସପ୍ତମ ପୁତ୍ରର ନାମ ଥିଲା ଦଷ୍ଟ ଓ ତାଙ୍କ ପୁତ୍ରର ନାମ ଥିଲା ନାଭାଗ । ସେ କ୍ଷତ୍ରିୟରୁ ନିଜର ନିକୃଷ୍ଟ କର୍ମଦ୍ୱାରା ବୈଶ୍ୟତା ପ୍ରାପ୍ତ ହୋଇଥିଲେ । ତାଙ୍କ ପୁତ୍ର ହେଉଛନ୍ତି ପରମ ତେଜସ୍ୱୀ ମହାରାଜ ଭଲନ୍ଦନ । ରାଜର୍ଷି ଭଲନ୍ଦନ ବଡ଼ ତେଜସ୍ୱୀ ଓ ବୀର ଥିଲେ ।

ଏକଥା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଦଷ୍ଟଙ୍କର ପୁତ୍ର ମହାରାଜ ନାଭାଗ କେଉଁ କର୍ମ ଦୋଷରୁ କ୍ଷତ୍ରିୟରୁ ବୈଶ୍ୟ ହେଲେ ? ସେ ଯଦି ବୈଶ୍ୟ ହେଲେ, ତାଙ୍କ ପୁତ୍ର ଭଲନ୍ଦନ ପୁନଶ୍ଚ ରାଜର୍ଷି ହେଲେ କିପରି ? ବୈଶ୍ୟ ପୁତ୍ରର ବୈଶ୍ୟ ହେବା କଥା, ଏଥିରେ ମୋର ସଂଶୟ ହେଉଛି, କୃପାକରି ମୋତେ ଏହାର କାରଣ କୁହନ୍ତୁ ଓ ଏ ସମ୍ବନ୍ଧରେ ଯେଉଁସବୁ କଥା ଅଛି ତାହା କୁହନ୍ତୁ ।"

ଏହା ଶୁଣି ସୂତ ଗମ୍ଭୀର ହୋଇଗଲେ ଓ କହିଲେ—"ମହାରାଜ ! ମନୁଷ୍ୟର ଉପରସ୍ତରରୁ ନିମ୍ନ ସ୍ତରକୁ ପତନର କାରଣ କାମ ଓ କ୍ରୋଧ । ମହାରାଜ ନାଭାଗଙ୍କ କଥା ଅତ୍ୟନ୍ତ କୌତୁହଳପୂର୍ଣ୍ଣ । ମୁନିଗଣ ! ଏ ନାଭାଗ ରାଜର୍ଷି ଅମ୍ବରୀଷଙ୍କ ପିତା 'ନାଭାଗ' ନୁହନ୍ତି । ଏ ହେଉଛନ୍ତି ଦଷ୍ଟଙ୍କ ପୁତ୍ର ଦ୍ୱିତୀୟ ନାଭାଗ । ସେ କେଉଁ କାରଣରୁ କ୍ଷତ୍ରିୟରୁ ବୈଶ୍ୟ ହୋଇଥିଲେ ଓ ପୁନଶ୍ଚ ବୈଶ୍ୟ ହୋଇ ମଧ୍ୟ ତାଙ୍କ ପୁତ୍ର କିପରି ଚକ୍ରବର୍ତ୍ତୀ ମହାରାଜ ଭଲନ୍ଦନ ଶୁଦ୍ଧ କ୍ଷତ୍ରିୟ ମୂର୍ଦ୍ଧାଭିଷିକ୍ତ ରାଜା ହୋଇଥିଲେ, ତାହା ମୁଁ ବର୍ଣ୍ଣନା କରୁଅଛି । ଆପଣମାନେ ଏହି ଶିକ୍ଷାପ୍ରଦ କାହାଣୀ ମନଯୋଗ ସହକାରେ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ଦଷ୍ଟ ପୁତ୍ର ନାଭଗ କର୍ମତେଂ ବୈଶ୍ୟ ଭୟେ ତେ ।
ପୁତ୍ର ଭଲନ୍ଦନ ଭୟେ କ୍ଷାତ୍ର କୁଲମାଁହି ରହେ ତେ ॥
ଶୌନକ ବୋଲେ ସୂତ ! କଥା ଯହ ଅତ ଅଚରଜଯୁତ ।
କୌନ କର୍ମତେଂ ଭୟେ ବୈଶ୍ୟ ନାଭଗ ଦଷ୍ଟ ସୁତ ॥
ବୈଶ୍ୟ ଭଲନ୍ଦନ ପୁତ୍ରହୁ, ପୁନ କ୍ଷତ୍ରିୟ କୈସେ ଭୟେ ।
ପିତା ବୈଶ୍ୟ ନୃପ ତେଂ ଭୟେ, ଗୁପ୍ତ ପୁତ୍ର ନୃପ ବନ ଗୟେ ॥

# ନାଭାଗ ଚରିତ

ନାଭାଗୋ ଦିଷ୍ଟ ପୁତ୍ରୋଽନ୍ୟଃ କର୍ମଣା ବୈଶ୍ୟତାଂ ଗତଃ ।
ଭଲନ୍ଦନଃ ସୁତସ୍ତସ୍ୟ ବତ୍ସପ୍ରୀତିର୍ଭଲନ୍ଦନାତ୍ ।

(ଶ୍ରୀ: ଭା: ୯ ସ୍କ: ୨ଅ : ୨୩ ଶ୍ଳୋକ)

**ଛପ୍ପୟ୍ଃ**

ମୁନି ଶୌନକ କେ ବଚନ ସୂତ ହଁସି ବୋଲେ ବାନୀ ।
ବୈଶ୍ୟ ସୁତା ଇକ ହତୀ ରୂପ ଯୌବନ କୀ ଖାନୀ ॥
ଦୃଷ୍ଟି ପରୀ ନାଭଗ ବୈଶ୍ୟ ତେଂ କନ୍ୟା ମାଁଗୀ ।
ନୃପତ ବୈଶ୍ୟ ଅରୁ ଦ୍ୱିଜନ ବାତ ଅତ ଅନୁଚିତ ଲଗୀ ॥

ବଲପୂର୍ବକ-କନ୍ୟା ହରୀ, ପିତା ପୁତ୍ର କୋ ରନ ଭୟୋ ।
ବୈଶ୍ୟ ବନାୟୋ ମୁନିନ ସୁତ, ଭୂପ ଭଲନ୍ଦନ ବନ ଗୟୋ ॥

ମନୁଷ୍ୟ ଯେପରି କର୍ମକରେ, ସେପରି ହୋଇଯାଏ । ଯଦି ସେ ଧର୍ମକୁ ଛାଡ଼ି କାମିନୀ ପ୍ରତି କାମବଶ ହୁଏ, ତେବେ ସେ ତଦ୍‌ରୂପ ହୋଇଯାଏ ଓ ତାହାର ଗୁଣ ବିନିଷ୍ଟ ହୋଇଯାଏ । ଯଦି ସେ ଧର୍ମରକ୍ଷା କରି ଅର୍ଥ ଓ କାମ ସେବା କରେ, ତେବେ ଧର୍ମ ତାକୁ ରକ୍ଷା କରେ । ଯଦି ମନୁଷ୍ୟ କାମବଶ ହୁଏ, ତାହାହେଲେ ସେ ନିଜର ପଦ ପ୍ରତିଷ୍ଠା ପ୍ରଭୃତିକୁ ହରାଇ ବସେ । ଶୀଳ, ସଙ୍କୋଚ୍, ଲଜ୍ଜା ତଥା ବିନୟ ଆଦି ସଦ୍‌ଗୁଣ ମନୁଷ୍ୟ ମଧ୍ୟରେ ସେ ପର୍ଯ୍ୟନ୍ତ ରହିଥାଏ, ଯେ ପର୍ଯ୍ୟନ୍ତ ସେ କାହାରି ନୟନ-ଧନୁର କଟାକ୍ଷ-ବାଣ ଦ୍ୱାରା କ୍ଷତ ବିକ୍ଷତ ନ ହୋଇଥାଏ । ପୁରୁଷ କାମାଧୀନ ହୋଇ ଗୁରୁଜନଙ୍କ ଆଜ୍ଞାକୁ ଲଙ୍ଘନ କରି କୁଳ ପରମ୍ପରା ବିରୁଦ୍ଧ କାର୍ଯ୍ୟ ମଧ୍ୟ କରି ପକାଏ । ଏହାଦ୍ୱାରା ସେ କୁଳଭ୍ରଷ୍ଟ ହୋଇ ଅଧଃପତିତ ହୁଏ ।

ସୂତ କହିଲେ—"ମୁନିଗଣ ! ମୁଁ ଆପଣମାନଙ୍କୁ ସେହିକଥା ଶୁଣାଉ ଅଛି, ଯେଉଁ କାରଣରୁ ଦିଷ୍ଟିଙ୍କ ପୁତ୍ର ନାଭାଗ କ୍ଷତ୍ରିୟରୁ ବୈଶ୍ୟ ହୋଇଥିଲେ ଓ ତାଙ୍କ ପୁତ୍ର

ଭଲନ୍ଦନ ପୁନଃ କ୍ଷତ୍ରୀୟ ହୋଇଥିଲେ । ଆପଣମାନେ ଜାଣନ୍ତି ଯେ ସମସ୍ତ ଅନର୍ଥର ମୂଳ ହେଉଛି ମନୁଷ୍ୟର ଯୁବାବସ୍ଥା । ଯୌବନର ପ୍ରାରମ୍ଭରେ ମନୁଷ୍ୟ ଯେ କଣ ନ କରେ ଓ କି ଅନର୍ଥ ନ ଘଟାଏ ତାହା ବର୍ଣ୍ଣନାତୀତ । ଏହି ଯୌବନାବସ୍ଥାରେ ଯୁବକ ଓ ଯୁବତୀଗଣଙ୍କର ବିବେକ ରହେନାହିଁ । କାମର ପ୍ରାବଲ୍ୟରୁ ଏମାନେ ମନଇଚ୍ଛା ଆଚରଣ କରିବା ପାଇଁ ବାଧ୍ୟ ହୋଇଥାଆନ୍ତି । ଏଥିପାଇଁ ଗୁରୁଜନଙ୍କ ଅଧୀନରେ ରହି ଏହି ଅବସ୍ଥାକୁ ଅତି ସାବଧାନ ହୋଇ କଟାଇବାକୁ ପଡ଼ିଥାଏ । ପିତା, ମାତା ଅନୁଭବୀ ଅଟନ୍ତି । ଏମାନେ ଯୁବାବସ୍ଥା ଭୋଗକରି ଅଛନ୍ତି । ସେଥିପାଇଁ ଅନର୍ଥ କବଳରୁ ରକ୍ଷା ପାଇବା ଉପାୟ ସେମାନେ ଜାଣନ୍ତି । ନିଜର ପୁତ୍ର କନ୍ୟାଙ୍କ ପ୍ରତି ସେମାନଙ୍କର ମମତା ଥିବା କାରଣରୁ ସେମାନେ ସର୍ବଦା ପୁତ୍ରକନ୍ୟାଙ୍କର ମଙ୍ଗଳ କାମନା କରନ୍ତି । ଏଣୁ ଯୁବକ ଓ ଯୁବତୀଗଣଙ୍କର କଲ୍ୟାଣ ଦୃଷ୍ଟିରେ ହିଁ ନିହିତ ଅଛି ଯେ ସେମାନେ ନିଜ ନିଜର ମାତା, ପିତା, ଜ୍ୟେଷ୍ଠଭ୍ରାତା ତଥା ଅନ୍ୟାନ୍ୟ ଗୁରୁଜନଙ୍କର ସମ୍ମାନ ରକ୍ଷା କରିବା କର୍ତ୍ତବ୍ୟ, ସେମାନଙ୍କର ଆଜ୍ଞା ପାଳନ କରିବା ଉଚିତ । ଏପରି କରିବା ଦ୍ୱାରା ସେମାନେ ବହୁ ଅନର୍ଥରୁ ରକ୍ଷାପାଇ ପାରିବେ ଓ ନିଜ ନିଜର ପଦ ମର୍ଯ୍ୟାଦା ତଥା କୁଳ ପରମ୍ପରାଗତ ସଦାଚାରର ମଧ୍ୟ ଉତ୍ତମ ରୂପେ ରକ୍ଷା କରି ପାରିବେ । ମହାଭାଗ ! ଦିଷ୍ଟପୁତ୍ର ନାଭାଗ ଯେତେବେଳେ ଏହି ଯୁବାବସ୍ଥାରେ ପଦାର୍ପଣ କରିଥିଲେ, ସେତେବେଳେ ଯୋଗକୁ ତାଙ୍କ ଦୃଷ୍ଟି ଏକ ଯୁବତୀ ବୈଶ୍ୟକନ୍ୟା ଉପରେ ପଡ଼ିଥିଲା ।

ସେହି କନ୍ୟା ଅତ୍ୟନ୍ତ ସୁନ୍ଦରୀ ଥିଲା । ରାଜକୁମାର ତାକୁ ଦେଖିବାମାତ୍ରେ ତା ପ୍ରତି ଆସକ୍ତ ହୋଇ ପଡ଼ିଲେ । ତା ଘରଠିକଣା ଆଦି ବୁଝି ତାହାର ପିତାଙ୍କ ନିକଟରେ ଯାଇ ପହଞ୍ଚିଲେ ଓ ଅତ୍ୟନ୍ତ ବିନୟ ସହକାରେ ତାଙ୍କୁ କହିଲେ—"ହେ ଶ୍ରେଷ୍ଠିବର ! ଆପଣ ଆପଣଙ୍କର ସର୍ବାଙ୍ଗ ସୁନ୍ଦରୀ କନ୍ୟାକୁ ମୋତେ ପ୍ରଦାନ କରନ୍ତୁ । ମୁଁ ତାହା ସହିତ ଧର୍ମ ବିଧିରେ ବିବାହ କରିବାକୁ ଚାହେଁ ।"

ରାଜକୁମାରଙ୍କର ଏପରି ପ୍ରସ୍ତାବ ଶୁଣି ବୈଶ୍ୟ ଜାଣିପାରିଲେ ଯେ ଧର୍ମ ଭାବରେ ନୁହେଁ, କାମ ଭାବରେ ପ୍ରେରିତ ହୋଇ ରାଜକୁମାର ଏପରି ପ୍ରସ୍ତାବ ଦେଉଅଛନ୍ତି । କାମୀ ଲୋକର କଥାରେ କେଉଁ ବିଶ୍ୱାସ । କାମର ତାଡ଼ନାରେ ଏମାନେ ଯାହାଇଚ୍ଛା ତାହା ଶପଥ କରିଥାଆନ୍ତି, କିନ୍ତୁ କାମାଗ୍ନି ଶିଥିଳ ହେବାକ୍ଷଣି ସେମାନେ ସବୁକିଛି ଭୁଲି ଯାଆନ୍ତି । ନିଜର କଥା ଉପରେ ଆଉ ଗୁରୁତ୍ୱ ଦିଅନ୍ତି ନାହିଁ । ଏଣୁ କନ୍ୟାର ପିତା ଏଥିରେ ଅନିଚ୍ଛା ପ୍ରକାଶ କରି କହିଲେ—"କୁମାର ! ଆପଣଙ୍କର ଏହି ପ୍ରସ୍ତାବ ଆପଣଙ୍କ ଅନୁରୂପ ନୁହେଁ । ଆପଣ ରାଜପୁତ୍ର । ରାଜା ପ୍ରଭୃ ଅଟନ୍ତି ଓ ବୈଶ୍ୟ, ଶୂଦ୍ର ଆଦି ତାଙ୍କର ପ୍ରଜା ଅଟନ୍ତି । ଆପଣ ଶାସକ, ଆମେ ଶାସିତ । ଆପଣ ସ୍ୱାମୀ ଆମେ ଭୃତ୍ୟ । ବିବାହ ତ ସମକୁଳ, ସମଶୀଳ ଓ ସମବର୍ଣ୍ଣ ଆଦିରେ ହୁଏ । ମୋ କନ୍ୟା କଣ ଆପଣଙ୍କୁ

ବିବାହ କରିବା ପାଇଁ କେବେ ଉପଯୁକ୍ତ ହୋଇପାରେ ? ଆପଣ ଉପଯୁକ୍ତ ରାଜକୁମାରୀ ସହିତ ବିବାହ କରନ୍ତୁ ।"

ରାଜକୁମାର କହିଲେ—"ଶ୍ରେଷ୍ଠିବର ! ଆପଣଙ୍କ କଥା ସତ, କିନ୍ତୁ ଯାହାର ମନ ଯାହା ସହିତ ମିଳିଯାଏ, ସେ ଯାହାପ୍ରତି ଆକୃଷ୍ଟ ହୁଏ, ସମାସ୍କନ୍ଦ ନ ହୋଇଥିଲେ ମଧ୍ୟ ସମାନ ହୋଇପାରେ । ଇଚ୍ଛା ଓ ଆବଶ୍ୟକତା ହିଁ ଏକତ୍ୱ ସ୍ଥାପନ କରେ । ମନର ଅଭିଳାଷ ପ୍ରତିକୂଳତାରେ ମଧ୍ୟ ଅନୁକୂଳତାର ବୀଜ ରୋପଣ କରିଥାଏ । ଆପଣ ଆପଣଙ୍କ କନ୍ୟାକୁ ମୋ ସହିତ ବିବାହ କରନ୍ତୁ । ମୁଁ ତାକୁ ପ୍ରାଣଠାରୁ ବଳି ଅଧିକ ଭଲ ପାଇବି ।"

ବୈଶ୍ୟ କହିଲେ—"କୁମାର ! ଆପଣ ଯାହା କହୁଛନ୍ତି, ତାହା ସତ୍ୟ । ଆପଣଙ୍କ ସହିତ ମୋର କନ୍ୟାର ବିବାହ କରିଦେବା ଗୌରବର ବିଷୟ, କିନ୍ତୁ ହେ ରାଜପୁତ୍ର ! କନ୍ୟାର ପିତା ହୋଇଥିବା କାରଣରୁ ମୁଁ ସହସା ଏପରି ସାହସ କରିପାରୁ ନାହିଁ । ଦେଖନ୍ତୁ, ବର୍ତ୍ତମାନ ଆପଣ ପିତାଙ୍କ ଅଧୀନ, ମୁଁ ତ ତାଙ୍କର ଜଣେ ପ୍ରଜା । ତେଣୁ ମୁଁ ମଧ୍ୟ ତାଙ୍କର ବିନା ଆଦେଶରେ ସଦାଚାର ବିରୁଦ୍ଧ କାର୍ଯ୍ୟ କରି ପାରିବି ନାହିଁ । ଏଣୁ ଆପଣ ପ୍ରଥମେ ରାଜାଙ୍କଠାରୁ ଆଜ୍ଞାପାଇ ଆସନ୍ତୁ । ସେ ଆଜ୍ଞା ଦେଲେ ମୋର ଏ ପ୍ରସ୍ତାବରେ କୌଣସି ଆପତ୍ତି ରହିବ ନାହିଁ । ମୁଁ ମୋର କନ୍ୟାକୁ ଆନନ୍ଦ ମନରେ ଆପଣଙ୍କୁ ପ୍ରଦାନ କରିବି ।"

କୁମାର ବିନଶତା ସ୍ୱରରେ କହିଲେ—"ହେ ଶ୍ରେଷ୍ଠୀବର ! ପୁତ୍ର ଯେତେ ବଡ଼ ହେଉନା କାହିଁକି, ସେ କଦାପି ପିତା ଓ ଗୁରୁଜନଙ୍କ ଆଗରେ ନିର୍ଲଜଙ୍କ ଭଳି ଖୋଲି ଖୋଲି ଏପରି କଥା କହିବା ସମୀଚୀନ ନୁହେଁ । ଅନ୍ୟ ସମସ୍ତ କଥା ପଚରା-ଯାଇପାରେ କିନ୍ତୁ କାମ ସମ୍ବନ୍ଧୀୟ କଥା ଗୁରୁଜନମାନଙ୍କ ଆଗରେ ପ୍ରକାଶ କରିବା ସମ୍ଭବ ନୁହେଁ । ଆପଣ ମୋତେ ପରୀକ୍ଷା କରନ୍ତୁ ଓ କନ୍ୟା ପ୍ରଦାନ କରନ୍ତୁ, ତାହା ନ ହେଲେ ମୁଁ ମୋର ଜୀବନ ତ୍ୟାଗ କରିବି ।"

ବୈଶ୍ୟ କହିଲେ—"ରାଜକୁମାର ! ମୁଁ ଆପଣଙ୍କୁ ପ୍ରଥମରୁ ହିଁ କହି ସାରିଛି, କନ୍ୟା ପ୍ରଦାନ କରିବାରେ ମୋର କୌଣସି ଆପତ୍ତି ନାହିଁ, କିନ୍ତୁ ଆପଣଙ୍କ ପିତା ଥାଉ ଥାଉ ମୁଁ ସ୍ୱେଚ୍ଛାରେ ଏପରି ସଦାଚାର ବିରୁଦ୍ଧ କାର୍ଯ୍ୟ କରି ପାରିବି ନାହିଁ । ଆପଣ ଯାହା କହୁଛନ୍ତି ତାହା ସତ୍ୟ ! କୌଣସି ପୁତ୍ର ଆପେ ଆପେ କୌଣସି କନ୍ୟାର ନାମ ନିର୍ଦ୍ଦେଶ କରି ପିତାଙ୍କ ନିକଟରେ ବିବାହ ପ୍ରସ୍ତାବ ବାଢ଼ିବା ଅନୁଚିତ । ଆପଣଙ୍କ ପାଇଁ ଏହା ନିଶ୍ଚୟ ଭାବରେ ଲଜ୍ଜା ଓ ସଙ୍କୋଚର ବିଷୟ, କିନ୍ତୁ ମୋ ପାଇଁ ଏଥିରେ ତ କୌଣସି ଲଜ୍ଜା କରିବାର କାରଣ ନାହିଁ । କନ୍ୟାର ପିତା ଦରିଶ ଯାଗା ଯାଇ ନିଜ କନ୍ୟାର ବିବାହ ପ୍ରସ୍ତାବ ପକାନ୍ତି, ଓ ସେ କୌଣସି ସଜାତୀୟ ଅବିବାହିତ ଯୁବକଙ୍କୁ ଦେଖି ତାଙ୍କ

ବିଷୟରେ ପ୍ରସ୍ତାବ ପକାଇବାକୁ ମନ ବଳାନ୍ତି । ଏଣୁ ଆପଣ ଆପଣଙ୍କ ପିତାଙ୍କୁ ପଚାରିକେ ନ ପଚାରନ୍ତୁ, ନିଜେ ଯାଇ ତାଙ୍କୁ ପଚାରିବି । ଯଦି ସେ ଆଜ୍ଞା ଦେବେ, ତାହାହେଲେ ମୋର ଏଥିରେ କୌଣସି ଆପତ୍ତି ନାହିଁ ।"

ନାଭାଗ ଏବେ ନିରୁତ୍ତର । ବୈଶ୍ୟ କାଳ ବିଳମ୍ବ ନ କରି ମହାରାଜ ଦିଷ୍ଟଙ୍କ ସମୀପରେ ଯାଇ ଉପସ୍ଥିତ ହେଲେ ଓ ହାତଯୋଡ଼ି କହିଲେ—"ପ୍ରଭୋ ! ରାଜକୁମାର ନାଭାଗ ମୋର କନ୍ୟାକୁ ବିବାହ କରିବା ପାଇଁ ପ୍ରସ୍ତାବ ବାଢ଼ୁଛନ୍ତି, ଏଥିରେ ଆପଣଙ୍କର ଆଜ୍ଞା ହିଁ ପ୍ରମାଣ । ଆପଣ ଯାହା ଆଜ୍ଞା କରିବେ, ତାହା ହିଁ ପାଳନ କରିବି ।"

ଏକଥା ଶୁଣି ରାଜା ବଡ଼ ଧର୍ମ ସଙ୍କଟରେ ପଡ଼ିଗଲେ । ଯୁବକ ପୁତ୍ରର ଇଚ୍ଛା ବିରୁଦ୍ଧରେ ସେ ସହସା କିପରି ଆଜ୍ଞା ଦେବେ ଓ କୁଳ ପରମ୍ପରା ବିରୁଦ୍ଧରେ ଏକ ନୂତନ ପ୍ରଥାକୁ ଅବା ସେ କିପରି ପ୍ରଚଳିତ କରିବେ । ଏହିସବୁ କଥା ଚିନ୍ତା କରି ସେ ବିନ୍ଧୁ ଧର୍ମଜ୍ଞ ତଥା ବେଦଜ୍ଞ ବ୍ରାହ୍ମଣଙ୍କୁ ଡକାଇ ସେମାନଙ୍କ ସମ୍ମୁଖରେ ଏହି ସମସ୍ୟା ଉପସ୍ଥାପନ କଲେ ।

ସମସ୍ତ ଘଟଣା ଶୁଣି ଋଚିକ ଆଦି ବ୍ରାହ୍ମଣମାନେ କହିଲେ—"କୁମାର ! ରାଜପୁତ୍ର ହୋଇ ଯଦି ତୁମେ ବର୍ଣ୍ଣାଶ୍ରମ ଧର୍ମରକ୍ଷା ନକର, ତେବେ ଅନ୍ୟ କିଏ କରିବ ? ପତ୍ନୀ ସର୍ବଦା ନିଜ ବର୍ଣ୍ଣର ହେବା ଉଚିତ । ହଁ, ଆବଶ୍ୟକତା ଅନୁସାରେ ଉପପତ୍ନୀ ଅନ୍ୟବର୍ଣ୍ଣରୁ ଗ୍ରହଣ କରାଯାଇଥାଏ । ପ୍ରଥମ ବର୍ଣ୍ଣରେ ବିବାହ କରି ପୁନରାୟ ଯଦି ପତ୍ନୀ ଗ୍ରହଣ କରିବାକୁ ଇଚ୍ଛାହୁଏ, ତେବେ ଧର୍ମପୂର୍ବକ ନିଜଠାରୁ ନୀଚବର୍ଣ୍ଣର କନ୍ୟା ସହିତ ମଧ୍ୟ ବିବାହ କରାଯାଇପାରେ । ସେହି ଉପପତ୍ନୀର ଯଜ୍ଞରେ ଦୀକ୍ଷା ନେବାର ଅଧିକାର ନାହିଁ । ଯେପରିକି ବ୍ରାହ୍ମଣଙ୍କର ପ୍ରଧାନ ପତ୍ନୀଙ୍କୁ ବ୍ରାହ୍ମଣୀ ବୋଲି କୁହାଯାଏ ଓ କ୍ଷତ୍ରିୟ ବୈଶ୍ୟ ତଥା ଶୂଦ୍ରଙ୍କ କନ୍ୟା ତାଙ୍କର ଉପପତ୍ନୀ ହୋଇପାରନ୍ତି । ସେହିପରି କ୍ଷତ୍ରିୟ-ମାନଙ୍କର ଉପପତ୍ନୀ ବୈଶ୍ୟା, ଶୂଦ୍ରା ଓ ବୈଶ୍ୟଙ୍କର ଉପପତ୍ନୀ ଶୂଦ୍ରା ହୋଇପାରନ୍ତି । ସେମାନଙ୍କଠାରୁ ଯେଉଁ ସନ୍ତାନ ଉତ୍ପନ୍ନ ହୁଅନ୍ତି, ସେମାନେ ଉପବର୍ଣ୍ଣର ହୁଅନ୍ତି, ଅର୍ଥାତ୍ ପିତାଙ୍କ ବର୍ଣ୍ଣଠାରୁ ଶ୍ରେଷ୍ଠ ଓ ମାତାଙ୍କ ବର୍ଣ୍ଣଠାରୁ ବଡ଼ ବର୍ଣ୍ଣ ବଶିଷ୍ଟ ହୁଅନ୍ତି । ଯେପରି ବ୍ରାହ୍ମଣଙ୍କର କ୍ଷତ୍ରିୟା ପତ୍ନୀଠାରୁ ଯେଉଁ ସନ୍ତାନ ଉତ୍ପନ୍ନ ହୁଅନ୍ତି, ସେ ଉପବ୍ରାହ୍ମଣ ଅର୍ଥାତ୍ ମୂର୍ଦ୍ଧାଭିଷିକ୍ତ ନାମର ହୁଅନ୍ତି । ସେହିପରି କ୍ଷତ୍ରିୟଙ୍କଠାରୁ ବୈଶ୍ୟାପତ୍ନୀଙ୍କ ଗର୍ଭରୁ ଯେଉଁ ସନ୍ତାନ ଉତ୍ପନ୍ନ ହୁଅନ୍ତି, ସେମାନେ ଉପକ୍ଷତ୍ରିୟ ହୁଅନ୍ତି । ନିଜ ବର୍ଣ୍ଣର ପତ୍ନୀଙ୍କଠାରୁ ଯେଉଁ ସନ୍ତାନ ଜାତ ହୁଅନ୍ତି ସେମାନେ ସ୍ୱତଃ ସ୍ୱବର୍ଣ୍ଣଯୁକ୍ତ ଅଟନ୍ତି । ହେ ରାଜକୁମାର ! ଏହି କାରଣରୁ ତୁମେ ସେହି ବୈଶ୍ୟକନ୍ୟାକୁ ଯଦି ବିବାହ କରିବାକୁ ଇଚ୍ଛା କରୁଛ, ତେବେ ପ୍ରଥମେ କୌଣସି କ୍ଷତ୍ରିୟ କନ୍ୟାଙ୍କୁ ବିବାହକରି ପରେ ସେହି ବୈଶ୍ୟ କନ୍ୟାଙ୍କୁ

ଉପପତ୍ନୀ ରୂପେ ଗ୍ରହଣ କରିପାର । ଏପରି ନକରି ଯଦି ତୁମେ ଏହି ବୈଶ୍ୟ କନ୍ୟାକୁ ପ୍ରଥମେ ବିବାହକର, ତେବେ ତୁମେ ମଧ୍ୟ ସେହି ବର୍ଣ୍ଣର ହୋଇଯିବ ; ତୁମେ ନିଜେ ବିଶୁଦ୍ଧ ବୈଶ୍ୟ ହେବ ଓ ତୁମର ସନ୍ତାନଙ୍କୁ ବୈଶ୍ୟ ବୋଲି ମଧ୍ୟ କୁହାଯିବ । ଏହା ହିଁ ବର୍ଣ୍ଣାଶ୍ରମ ଧର୍ମର ସଦାଚାର । ଧର୍ମକୁ ପ୍ରକୃତରେ ଜାଣିଥିବା ମୁନିଋଷିଗଣ ଏହି ବ୍ୟବସ୍ଥା କରିଯାଇଛନ୍ତି ଯଦି ବ୍ରାହ୍ମଣ ପ୍ରଥମେ କ୍ଷତ୍ରିୟ କନ୍ୟାକୁ ବିବାହ କରେ, ତେବେ ସେ କ୍ଷତ୍ରିୟ ହିଁ ହୁଏ । ତୁମେ କ୍ଷତ୍ରିୟ ଧର୍ମ ପରିତ୍ୟାଗ କରିବା ଉଚିତ୍ ନୁହେଁ । ଋଷିଗଣଙ୍କ ବାକ୍ୟ ଧର୍ମପୂର୍ବକ ପାଳନ କରିବା ଉଚିତ୍ ।''

ସୂତ କହିଲେ-—''ମୁନିଗଣ ! ବେଦଜ୍ଞ ବ୍ରାହ୍ମଣମାନେ କୁମାର ନାଭାଗଙ୍କୁ ବହୁତ ପ୍ରକାର ବୁଝାଇଲେ, କିନ୍ତୁ ସେ ସେମାନଙ୍କର ବାକ୍ୟ ଉପରେ ଆଦୌ ଧ୍ୟାନ ଦେଲେ ନାହିଁ । ସେ ହସ୍ତରେ ଖଡ୍‌ଗ ଧାରଣ କରି ସମସ୍ତଙ୍କ ସମ୍ମୁଖରେ ତାହା ଉତ୍ତୋଳନ ପୂର୍ବକ କହିଲେ-—''କ୍ଷତ୍ରିୟଙ୍କ ପାଇଁ ରାକ୍ଷସ ବିଧିରେ କନ୍ୟା ଅପହରଣ କରିବା ମଧ୍ୟ ଶାସ୍ତ୍ର ସମ୍ମତ । ମୁଁ ମୋର ବାହୁବଳରେ ଏହି କନ୍ୟାକୁ ଅପହରଣ କରୁଛି, ଯାହାର ସାମର୍ଥ୍ୟ ଅଛି, ସେ ମୋତେ ଏଥିରୁ ନିବୃତ୍ତ କରୁ ।'' ଏହା କହି ସେ ଅସ୍ତ୍ର-ଶସ୍ତ୍ରରେ ସୁସଜ୍ଜିତ ହୋଇ ବୈଶ୍ୟ ଘରଆଡ଼େ ଅଗ୍ରସର ହେଲେ । କୁମାର ଅତ୍ୟନ୍ତ ବଳଶାଳୀ ଓ ଅସ୍ତ୍ରଚାଳନାରେ ପାରଙ୍ଗମ ଥିଲେ । ରଣକୌଶଳ ତାଙ୍କ ଉତ୍ତମରୂପେ ଜଣାଥିଲା । ଏଣୁ ତାଙ୍କୁ ପ୍ରତିରୋଧ କରିବାପାଇଁ କେହି ସାହସ କଲେନାହିଁ ।

ବୈଶ୍ୟ ଯେତେବେଳେ ଦେଖିଲେ ଯେ କୁମାର ତାଙ୍କ କନ୍ୟାକୁ ବଳାତ୍କାରରେ ଅପହରଣ ପାଇଁ ଉଦ୍ୟତ ହେଲେଣି, ସେତେବେଳେ ସେ ନିଜକୁ ରକ୍ଷା କରିବା ପାଇଁ ରାଜାଙ୍କ ନିକଟରେ ଶରଣ ପଶିଲେ । ରାଜା କ୍ରୋଧରେ ଜର୍ଜ୍ଜରିତ ହୋଇ ବହୁ ସୈନ୍ୟ ସେଠାକୁ ପଠାଇ ସେମାନଙ୍କୁ କହିଲେ ଯେ, ତୁମ୍ଭେମାନେ ରାଜକୁମାରଙ୍କୁ ହତ୍ୟା କର । ରାଜାଜ୍ଞା ପାଇ ସୈନ୍ୟଗଣ କୁମାର ନାଭାଗଙ୍କ ସହିତ ଯୁଦ୍ଧ କରିବାକୁ ବାହାରି ପଡ଼ିଲେ । କିନ୍ତୁ ସେ ଅସ୍ତ୍ର-ଶସ୍ତ୍ରରେ ଏପରି ନିପୁଣଥିଲେ ଯେ, ପ୍ରତ୍ୟେକ ସୈନିକଙ୍କୁ ମାରି ଘଉଡ଼ାଇ ଦେଲେ । ଯେତେବେଳେ ରାଜା ଦେଖିଲେ ଯେ ତାଙ୍କ ସୈନ୍ୟମାନେ ହାରିଯାଉଛନ୍ତି, ସେତେବେଳେ ସେ ନିଜେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ନିଜର ପୁଅକୁ ହତ୍ୟା କରିବାପାଇଁ ଚାଲିଲେ । ପିତା ପୁଅଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହେବାକୁ ଲାଗିଲା । ଦେଖଣାହାରିମାନେ ଏହି ବିଚିତ୍ର ସଂଗ୍ରାମକୁ କୌତୁହଳ ପୂର୍ବକ ଦେଖିବାକୁ ଲାଗିଲେ । ପିତା ତ ପୁଣି ପିତାରୂପେ ନିଜର କର୍ତ୍ତବ୍ୟ ପାଳନ କରିବେ । ସେ ଅସ୍ତ୍ରଶସ୍ତ୍ର ଚାଳନାରେ ପୁଅଠାରୁ ବଳି ସିଦ୍ଧ । ନାଭାଗ ଏହି ଯୁଦ୍ଧରେ କ୍ରମେ ଶିଥିଳ ହେବାକୁ ଲାଗିଲେ । ଠିକ ଏହି ସମୟରେ ଶୂନ୍ୟମାର୍ଗରେ ଇତଃସ୍ତତଃ ପରିଭ୍ରମଣ କରୁଥିବା ବହୁତ ମୁନିଋଷି ଆକାଶ ମାର୍ଗରୁ ଅବତରଣ କରି ରାଜା ଓ କୁମାରଙ୍କ ମଧ୍ୟରେ

ଦଣ୍ଡାୟମାନ ହୋଇ ଅତି ମଧୁର ବଚନରେ ରାଜାଙ୍କୁ କହିଲେ—"ରାଜନ ! ଆପଣଙ୍କ ପୁତ୍ର ଧର୍ମଭ୍ରଷ୍ଟ ହୋଇଯାଇଛି । ଏବେ ସେ ନିଜ କର୍ମରୁ ବୈଶ୍ୟତା ପ୍ରାପ୍ତ ହୋଇଛି । ମହାରାଜ ! ବୈଶ୍ୟ ସହିତ କ୍ଷତ୍ରିୟର ଯୁଦ୍ଧ ଧର୍ମ ସଙ୍ଗତ ନୁହେଁ । ଏଣୁ ଆପଣ ପୁତ୍ର ସହିତ ଆଉ ଯୁଦ୍ଧ କରନ୍ତୁ ନାହିଁ ।"

ଋଷିଗଣଙ୍କର କଥାଶୁଣି ରାଜା ଯୁଦ୍ଧରୁ ନିବୃତ୍ତ ହେଲେ । ନାଭାଗର ମଧ୍ୟ ସେହି ପରମ ସୁନ୍ଦରୀ ବୈଶ୍ୟ କନ୍ୟା ସହିତ ବିଧିପୂର୍ବକ ବିବାହ ହେଲା । ବୈଶ୍ୟ କନ୍ୟା ନାଭାଗଙ୍କୁ ପାଇ ପରମ ପ୍ରସନ୍ନ ହେଲେ । ନାଭାଗ ମଧ୍ୟ ନିଜର ସମ୍ପତ୍ତି, ଏପରିକି ନିଜର ବର୍ଣ୍ଣ ମଧ୍ୟ ତାଙ୍କପାଇଁ ତ୍ୟାଗ କରିଦେଲେ । ଉଭୟେ ଉଭୟଙ୍କୁ ପାଇ ଅତ୍ୟନ୍ତ ପ୍ରସନ୍ନ ହେଲେ ।

ଯେତେହେଲେ ନାଭାଗ ରାଜପୁତ୍ର । ବିବାହପରେ ସେ ଯୋଡ଼ହସ୍ତରେ ନମ୍ରତାର ସହିତ ନିଜ ପିତାଙ୍କ ନିକଟରେ ଯାଇ ପହଞ୍ଚିଲେ ଓ ତାଙ୍କୁ ପ୍ରଣାମ କରି ବିନୀତ ଭାବରେ କହିଲେ—"ପ୍ରଭୋ ! ମୁଁ ଆପଣଙ୍କର ଅଧୀନ, ଏବେ ମୋର ଯାହା କର୍ତ୍ତବ୍ୟ, ତାହା ମୋତେ ଦୟାକରି କୁହନ୍ତୁ ।"

ପୁତ୍ର ଯେପରିହେଉ ପଛକେ, ସେତ ଆତ୍ମଜ । ତାଙ୍କର ଇଚ୍ଛାଥିଲା ଯେ ପୁତ୍ରକୁ କିଛି ରାଜ୍ୟ ଦେବେ, କିନ୍ତୁ ଧର୍ମ ଓ ପ୍ରଜାଙ୍କ ବିରୁଦ୍ଧରେ ସେ କିପରି ବା ଯାଆନ୍ତେ ? ଏଣୁ କୁମାରଙ୍କ ସମ୍ବନ୍ଧରେ ଏକ ନିର୍ଣ୍ଣୟ ସମିତି ଗଠନ କଲେ । ବାଭ୍ରବ୍ୟ ମୁନିଙ୍କୁ ସେହି ନିର୍ଣ୍ଣୟ ସମିତିର ଅଧ୍ୟକ୍ଷ କରାଗଲା । ଏହି ସମିତି ଯାହା ନିର୍ଣ୍ଣୟ କରିବେ, ତାହା ପ୍ରତ୍ୟେକେ ସ୍ୱୀକାର କରିବେ, ଏହାହିଁ ସ୍ଥିର ହେଲା ।

ସମିତିର ବୈଠକ ବସିଲା । ସର୍ବସମ୍ମତିକ୍ରମେ ସଭାସଦମାନେ ଏହି ନ୍ୟାୟ ଦେଲେ ଯେ କୁମାର ବର୍ଣ୍ଣାଶ୍ରମ ଧର୍ମର ବିରୁଦ୍ଧାଚରଣ କରି ଅଛନ୍ତି, ତେଣୁ ସେ ରାଜା ହେବାର ଅଧିକାରୀ ନୁହନ୍ତି । ରାଜା ତାଙ୍କୁ କିଛି ଭୂସମ୍ପତ୍ତି ପ୍ରଦାନ କରନ୍ତୁ ଓ ସେଥିରେ ସେ କୃଷି କରନ୍ତୁ, ପଶୁପାଳନ କରନ୍ତୁ ଓ ବାଣିଜ୍ୟ ବ୍ୟବସାୟ କରି ନିଜର ଜୀବିକା ନିର୍ବାହ କରନ୍ତୁ । ଆଜିଠାରୁ ସେ କ୍ଷତ୍ରିୟ ନ ହୋଇ ବୈଶ୍ୟ ହେଲେ ବୋଲି ସମିତି ଘୋଷଣା କଲେ ।

କୁମାର ସମିତିର ନ୍ୟାୟକୁ ସହର୍ଷ ବଦନରେ ସ୍ୱୀକାର କରିନେଲେ । ସେ ଏବେ ନିଜକୁ ବୈଶ୍ୟ ବୋଲି କହିବାକୁ ଲାଗିଲେ ଓ କୃଷି, ଗୋରକ୍ଷା ତଥା ବାଣିଜ୍ୟ କରି ଜୀବିକା ନିର୍ବାହ କରିବାକୁ ଲାଗିଲେ । କିଛିଦିନ ପରେ ସେହି ବୈଶ୍ୟ କନ୍ୟା ଗର୍ଭରୁ ଏକ ପୁତ୍ର ଜାତହେଲା ଓ ତାହାର ନାମ ଭଲନ୍ଦନ ରଖାଗଲା । ଶେଷରେ ସେହି ଭଲନ୍ଦନ ପରମ ତେଜସ୍ୱୀ ରାଜର୍ଷି ଭଲନ୍ଦନ ନାମରେ ଖ୍ୟାତ ହେଲେ ଓ ପିତା ବୈଶ୍ୟ ହୋଇଥିଲେ ମଧ୍ୟ ସେ ରାଜ୍ୟ ସିଂହାସନର ଅଧିକାରୀ ହେଲେ ।

ଏକଥା ଶୁଣି ଶୌନକ ପଚାରିଲେ—ହେ ସୂତ ! ମୁଁ ତ ସେହି କଥା ପଚାରୁଥିଲି ଯେ, ଭଲନ୍ଦନ ବୈଶ୍ୟପୁତ୍ର ହୋଇ ପୁନଶ୍ଚ ରାଜାହେଲେ କପରି ?"

ସୂତ କହିଲେ—"ତେବେ ତାହା କହୁଛୁ, ଶୁଣନ୍ତୁ ମହାରାଜ ! ନାଭାଗଙ୍କର ପୁତ୍ର ଭଲନ୍ଦନ ପରମ ତେଜସ୍ୱୀ ଥିଲେ । ପିତା ମାତା ତାଙ୍କର ସମସ୍ତ ବୈଶ୍ୟୋଚିତ ସଂସ୍କାର କରାଇଲେ । ଭଲନ୍ଦନ ଯେତେବେଳେ ବଡ଼ ହେଲେ, ସେତେବେଳେ ସେ ନିଜର ପିତାଙ୍କର ସମସ୍ତ ସମାଚାର ବିଦିତ ହେଲେ । ତାଙ୍କର ଦାଦା ତାଉଙ୍କ ପିଲାମାନେ ରାଜୋଚିତ ବସ୍ତ୍ରାଭୂଷଣ ପରିଧାନ କରି ପଦାକୁ ବାହାରନ୍ତି । ସୁନ୍ଦର ସୁନ୍ଦର କିରୀଟ ମୁକୁଟ ଧାରଣ କରି ଅସ୍ତ୍ରଶସ୍ତ୍ର ନେଇ, ଅଶ୍ୱପୃଷ୍ଠରେ ଆରୋହଣ କରି ଭ୍ରମଣ କରନ୍ତି । ତାଙ୍କୁ ଦର୍ଶନକରି ପ୍ରତ୍ୟେକେ ଉଠି ଦଣ୍ଡାୟମାନ ହୋଇ ସମ୍ମାନ ପ୍ରଦର୍ଶନ କରନ୍ତି । ସେମାନେ ସମସ୍ତ ପ୍ରକାର ରାଜୋଚିତ ସମ୍ମାନ ପାଆନ୍ତି । କିନ୍ତୁ ଭଲନ୍ଦନ ବୈଶ୍ୟଙ୍କଭଳି ପଗଡ଼ିବାନ୍ଧି ନାନାସ୍ଥାନ ଭ୍ରମଣ କରନ୍ତି । ଏହିକଥା ତାଙ୍କୁ ଖରାପ ଲାଗିଲା । ସେ ଚିନ୍ତାକରି ଦେଖିଲେ ମୁଁ ମଧ୍ୟ ରାଜକୁମାର, ପିତାଙ୍କ ଯୋଗୁଁ ଆଜି ମୁଁ ରାଜବଂଶର ପ୍ରଭୁତ୍ୱରୁ ବଞ୍ଚିତ ହୋଇଅଛି, ପୁନଶ୍ଚ ଯେପରି ରାଜସମ୍ମାନ ପାଇପାରିବି, ତାହାର ବ୍ୟବସ୍ଥା କରିବାକୁ ହେବ ।"

ସେ ଟିକିଏ ବଡ଼ ହୋଇଯିବାରୁ ତାଙ୍କର ମାତା କହିଲେ—"ବାବୁ ! ବୈଶ୍ୟୋଚିତ ଗୋପାଳନ କାର୍ଯ୍ୟ ଏବେ ତୁ କର । ଆମର ଅନେକ ଗାଈ ଅଛନ୍ତି, ସେମାନଙ୍କୁ ନେଇ ତୁ ଜଙ୍ଗଲରେ ଚରା ।"

ମାତାଙ୍କ ମୁଖରୁ ଏ ପ୍ରକାର ଆଜ୍ଞାପାଇ ଭଲନ୍ଦନ ମାତାଙ୍କୁ ପ୍ରଣାମ କରି ବନକୁ ଚାଲିଗଲେ । ତା'ର ତ ପୁନଶ୍ଚ ରାଜ୍ୟଲାଭ କରିବାର ଚିନ୍ତାଥିଲା, ତେଣୁ ସେ ଗୋ-ଗୋଠରେ ନ ଯାଇ ସିଧା ସଳଖ ଘୋର ବନ ମଧ୍ୟରେ ପ୍ରବେଶକଲା । ସେଠାରେ ପରମ ପ୍ରତାପୀ ରାଜର୍ଷି ନୀପ ଘୋର ତପସ୍ୟା କରୁଥିଲେ । ହିମାଳୟର ସେହି ବିସ୍ତୃତ ସାନୁଦେଶମାନଙ୍କ ବନଭୂମିରେ ଭଲନ୍ଦନ ଭ୍ରମଣ କରୁ କରୁ ରାଜର୍ଷି ନୀପଙ୍କ ଆଶ୍ରମରେ ପହଞ୍ଚିଲେ । ସେଠାରେ ସେ ପରମ ଶ୍ରଦ୍ଧାର ସହିତ ରାଜର୍ଷିଙ୍କୁ ପ୍ରଣାମ କରି ତାଙ୍କ ସମ୍ମୁଖରେ ବସି ପଡ଼ିଲେ ।

ସେହି ଶାନ୍ତ-ଦାନ୍ତ ସୁଶୀଳ ତେଜସ୍ୱୀ ବାଳକକୁ ଦେଖି ରାଜର୍ଷି ନୀପ ପଚାରିଲେ—"ବତ୍ସ ! ତୁମେ କିଏ ? କେଉଁଠାରୁ ଆସିଅଛ ? ତୁମେ ଏଠାକୁ ଆସିବାର ଅଭିପ୍ରାୟ କଣ ?"

ଭଲନ୍ଦନ କହିଲେ—"ଭଗବନ୍ ! ମୁଁ ମନୁପୁତ୍ର ମହାରାଜ ଦିଷ୍ଟଙ୍କର ନାତି ଅଟେ । ମୋର ପିତା କର୍ମବଶତଃ ବୈଶ୍ୟତା ପ୍ରାପ୍ତ ହୋଇଥିଲେ । ମୋର ମାତା

ମୋତେ ଗୋପାଳନ କରିବା ପାଇଁ ଆଜ୍ଞା ଦେଲେ । ପ୍ରଭୋ ! ମୋତେ ସେହି ବୈଶ୍ୟ-ବୃତ୍ତି କରିବା ପାଇଁ ଇଚ୍ଛା ହେଉନାହିଁ । ମୋର ପିତୃବ୍ୟ ଯେପରି ରାଜ୍ୟ ଶାସନ କରୁଥିଲେ ମୁଁ ସେହିପରି ରାଜା ହୋଇ ରାଜ୍ୟ ଶାସନ କରିବାକୁ ଇଚ୍ଛା କରୁଛି । ମୁଁ ଆପଣଙ୍କର ଶରଣାଗତ । ଆପଣ ମୋତେ ଭୂପତି କରି ଦିଅନ୍ତୁ ।"

ଭଲନ୍ଦନର ଏପରି ସରଳ, ମଧୁର, ଆଗ୍ରହପୂର୍ଣ୍ଣ କଥା ଶୁଣି ରାଜର୍ଷି ନୀପଙ୍କର ତା ପ୍ରତି ଦୟା ହେଲା । ସେ ଦିବ୍ୟଦୃଷ୍ଟିରେ ତାହାର ଭୂତ, ଭବିଷ୍ୟତ ସମସ୍ତ ଜାଣି ପାରିଲେ ଓ କହିଲେ—"ବତ୍ସ ! ତୁମେ ମୋର ଆଶ୍ରମରେ ରହ । ମୁଁ ତୁମକୁ ସମସ୍ତ ଧନୁର୍ବେଦ ଶିକ୍ଷା ଦେଇ ଉତ୍ତମ ଅସ୍ତ୍ରଶାସ୍ତ୍ର ଦୀକ୍ଷା ଦେବି ।"

ରାଜର୍ଷି ନୀପଙ୍କ ମୁଖରୁ ଏ ପ୍ରକାର ବଚନ ଶୁଣି ଭଲନ୍ଦନ ଅତିଶୟ ଆନନ୍ଦିତ ହେଲେ । ସେ ଅତ୍ୟନ୍ତ ଶ୍ରଦ୍ଧା ସହକାରେ ନିଜ ଗୁରୁଙ୍କର ସେବା କରିବାକୁ ଲାଗିଲେ । ମହାରାଜ ନୀପ ମଧ୍ୟ ତାହାର ଶାନ୍ତଶିଷ୍ଟ ସ୍ୱଭାବରେ ସନ୍ତୁଷ୍ଟ ହୋଇ ତାଙ୍କୁ ଦିବ୍ୟରୁ ଦିବ୍ୟତର ଅସ୍ତ୍ର-ଶସ୍ତ୍ର ବିଦ୍ୟା ଶିକ୍ଷା ଦେବାକୁ ଲାଗିଲେ । ଅଳ୍ପଦିନ ମଧ୍ୟରେ ଅସ୍ତ୍ର ଶସ୍ତ୍ର ଚାଳନାରେ ସେ ପାରଙ୍ଗମ ହୋଇଗଲେ । ଯେତେବେଳେ ନୀପ ତାଙ୍କୁ ପୂର୍ଣ୍ଣ ଧନୁର୍ବେଦ ଜ୍ଞାତା ବୋଲି ବୁଝିପାରିଲେ, ସେତେବେଳେ ତାଙ୍କୁ କହିଲେ—"ବତ୍ସ ! ତୁମେ ସମରରେ ଏବେ ପାରଙ୍ଗମ ହୋଇଅଛ । ତେଣୁ ଏବେ ନିଜର ଦାଦାଙ୍କ ପୁତ୍ରମାନଙ୍କ-ଠାରୁ ରାଜ୍ୟର ଭାଗ ମାଗ । ଯଦି ସେ ଦେବାପାଇଁ ଆପତ୍ତି କରନ୍ତି, ତେବେ ତୁମେ ତାଙ୍କ ସହିତ ଧର୍ମଦ୍ୱନ୍ଦ୍ୱ ଯୁଦ୍ଧ କରିବ ।"

ଗୁରୁଙ୍କ ମୁଖରୁ ଏହି ଆଜ୍ଞା ପାଇ ଭଲନ୍ଦନ ତାଙ୍କ ଚରଣରେ ପ୍ରଣାମ କରି ନିଜ ପିତାମହଙ୍କ ରାଜଧାନୀ ଅଭିମୁଖେ ଯାତ୍ରା କଲେ ଓ ନିଜର ଦାଦିପୁଅ ଭାଇମାନଙ୍କୁ ରାଜ୍ୟ ଭାଗ ମାଗିଲେ ।

ଏହା ଶୁଣି ତାଙ୍କ ଦାଦିପୁଅ ଭାଇମାନେ କହିଲେ—"ଯେତେବେଳେ ତୁମ ବାପା ରାଜ୍ୟର ଅଧିକାରୀ ନ ଥିଲେ, ସେତେବେଳେ ତୁମେ କିପରି ରାଜ୍ୟର ଅଧିକାରୀ ହୋଇପାରିବ ? ବୈଶ୍ୟର କର୍ମ ହେଉଛି କୃଷି, ଗୋରକ୍ଷା ଓ ବାଣିଜ୍ୟ କରିବା । ହାଟରେ ତରାଜୁ ଧରି ଦ୍ରବ୍ୟ ବିକ୍ରୟ କରି ଯାଅ ନିଜ ଜୀବିକା ନିର୍ବାହ କରିବ । ରାଜ୍ୟ ତ ପରାକ୍ରମ ଦ୍ୱାରା ଭୋଗ ହୁଏ । ତୁମେ ବୈଶ୍ୟପୁତ୍ର, ତେଣୁ ତୁମେ ତୁମର ସେହି ବୈଶ୍ୟଧର୍ମ ପାଳନ କର ।"

ଭଲନ୍ଦନ କହିଲେ—"ଏ ପୃଥିବୀ ତ ବୀରଭୋଗ୍ୟା । ଯଦି କେହି କ୍ଷତ୍ରିୟ ହୋଇ ତାଙ୍କଠାରେ ବଳ ପରାକ୍ରମ ନ ଥାଏ, ତେବେ ସେ ରାଜ୍ୟର ଅଧିକାରୀ ହୋଇ ନ ପାରେ । ଯେ ନିଜକୁ ରକ୍ଷା କରିବାରେ ଅସମର୍ଥ, ସେ କିପରି ପ୍ରଜାଗଣଙ୍କୁ ରକ୍ଷା

କରିବ ? ଅନ୍ୟ ପକ୍ଷରେ ଯାହାର ବାହୁରେ ବଳ ଅଛି, ପ୍ରଜା ପାଳନ କରିବାର ଦକ୍ଷତା ଅଛି, ସେ ଯେଉଁ ବର୍ଣ୍ଣର ହେଉ ନା କାହିଁକି, ନିଜ ପୁରୁଷକାର ବଳରେ ରାଜ-ସିଂହାସନର ଅଧିକାରୀ ହୋଇପାରେ । ମୁଁ ତ ରାଜ-ପୁତ୍ର । ଯଦି ତୁମେ ଭଲରେ ରାଜ୍ୟ ନ ଦେବ, ମୁଁ ତୁମ୍ଭମାନଙ୍କ ସହିତ ଯୁଦ୍ଧକରି ନିଜର ଭାଗ ନେବ !''

ତାଙ୍କର ଏ ପ୍ରକାର ବୀରତ୍ୱପୂର୍ଣ୍ଣ ବାକ୍ୟ ଶୁଣି ପ୍ରତ୍ୟେକ ରାଜପୁତ୍ର ତାଙ୍କ ସହିତ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହୋଇଗଲେ । ଉଭୟ ପକ୍ଷ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା । ଭଲନ୍ଦନ ନିଜ ବାହୁବଳରେ ସମସ୍ତଙ୍କୁ ପରାସ୍ତ କରି ରାଜ୍ୟ ଅଧିକାର କରିନେଲେ । ଶତ୍ରୁମାନଙ୍କୁ ପରାସ୍ତ କରି ଭଲନ୍ଦନ ନିଜ ପିତାଙ୍କ ନିକଟରେ ଯାଇ ପହଞ୍ଚିଲେ । ପିତାଙ୍କୁ ଶ୍ରଦ୍ଧା-ଭକ୍ତି ସହକାରେ ପ୍ରଣାମ କରି ତାଙ୍କୁ ନମ୍ରତା ପୂର୍ବକ କହିଲେ—''ବାପା ! ଆପଣଙ୍କ ଆଶୀର୍ବାଦରୁ ମୁଁ ମୋର ପିତୃପିତାମହଙ୍କ ରାଜ୍ୟ ଜୟ କରି ପାରିଛି ! ଆପଣ ଏଥର ରାଜସିଂହାସନ ଆରୋହଣ କରି ଧର୍ମତଃ ପ୍ରଜା ପାଳନ କରନ୍ତୁ ।''

ଭଲନ୍ଦନଙ୍କର ମାତା ମଧ୍ୟ ସେଠାରେ ବସି ସବୁ ଶୁଣୁଥିଲେ । ସ୍ନେହାଭିଭୂତ ହୋଇ ନାଭାଗ କହିଲେ—ବତ୍ସ ! ତୁମେ ନିଜ ବାହୁ ବଳରେ ରାଜ୍ୟ ଲାଭ କରିଛ, ତେଣୁ ତୁମେ ହିଁ ରାଜ୍ୟ ଶାସନ କର, ମୁଁ ସିଂହାସନ ଆରୋହଣ କରିବାକୁ ଚାହୁଁ ନାହିଁ ।''

ଭଲନ୍ଦନ ଅତ୍ୟନ୍ତ ବିନୟ ସହକାରେ କହିଲେ—''ପ୍ରଭୋ ! ଆପଣ କିପରି ଏ ପ୍ରକାର ଧର୍ମବିରୁଦ୍ଧ କଥା କହୁଛନ୍ତି ? ସର୍ବ-ସମର୍ଥ ଶୂର-ବୀର ପିତା ଥାଉ ଥାଉ ଯେଉଁ ପୁତ୍ର ରାଜସିଂହାସନ ଆରୋହଣ କରେ, ସେ ନରକଗାମୀ ହୁଏ । ଆପଣ ଥାଉ ଥାଉ ମୁଁ କିପରି ସିଂହାସନରେ ଅଭିଷିକ୍ତ ହେବି ?''

ନାଭାଗ ଏକଥା ଶୁଣି ଅତି ଦୁଃଖର ସହିତ କହିଲେ—''ଦେଖ ବତ୍ସ ! ରାଜ ପାରିଷଦ୍‌ବର୍ଗ ମୋତେ ରାଜ୍ୟର ଅନଧିକାରୀ ବୋଲି ସିଦ୍ଧାନ୍ତ କରି ଅଛନ୍ତି, ମୁଁ ମଧ୍ୟ ପଣ୍ଡିତମାନଙ୍କର ସେହି ନିଷ୍ପତ୍ତିକୁ ଶିରୋଧାର୍ଯ୍ୟ କରି ବୈଶ୍ୟବୃତ୍ତିକୁ ଆଦର ନେଇଛି । ମୁଁ ଏବେ ଯଦି ଲୋଭବଶତଃ ପୁନଶ୍ଚ ରାଜ୍ୟଶାସନ ଭାର ବହନ କରେ, ତେବେ ଧର୍ମଚ୍ୟୁତ ହୋଇଯିବି । ଏହି ରାଜସିଂହାସନ, ଧନ, ସମ୍ପତ୍ତି, ସ୍ତ୍ରୀ, ପୁତ୍ର ସବୁକିଛି କେବଳ ଧର୍ମରକ୍ଷା ପାଇଁ ସୃଷ୍ଟି । ଧର୍ମକୁ ବାଦ୍ ଦେଲେ ଏହାର କୌଣସି ମହତ୍ତ୍ୱ ନାହିଁ । ପ୍ରଥମରୁ ମୁଁ ଗୋଟିଏ ବଡ଼ ଅଧର୍ମ କାର୍ଯ୍ୟ କରି ନିଜ ପିତାଙ୍କ ଇଚ୍ଛା ବିରୁଦ୍ଧରେ ବୈଶ୍ୟକନ୍ୟା ସହିତ ବିବାହ କରିଅଛି । ପିତାଙ୍କ ଅପ୍ରିୟ ଏହି ନୀତିବିରୁଦ୍ଧ କାର୍ଯ୍ୟ କରିଥିବାରୁ ମୁଁ ଏବେ ପଶ୍ଚାତାପ କରୁଛି ! ମୁଁ ଚିନ୍ତା କରୁଛି, ଏହି ପାପର ଫଳ ସ୍ୱରୂପ ମୋତେ କୌଣସି ନା କୌଣସି ନର୍କବାସ କରିବାକୁ ହେବ । କାମର ବଶୀଭୂତ

ହୋଇ ମୋର ଯେଉଁ ଭୁଲ୍ ହୋଇଯାଇଛି, ତାହା ଅକ୍ଷମଣୀୟ । ଏବେ ମୁଁ ପୁଣି ରାଜ୍ୟଭାର ଗ୍ରହଣ କରି ପିତାଙ୍କର ଆଜ୍ଞା ଅବଜ୍ଞା କରିବ ନାହିଁ । ଏବେ ମୁଁ ଯଦି ନିର୍ଦ୍ଧିତ ନିଷ୍ପତ୍ତିର ବିରୁଦ୍ଧାଚରଣ କରେ, ତେବେ ମୋକ୍ଷର ଅଧିକାରୀ ହୋଇପାରିବ ନାହିଁ । ଏବେ ତ ମୁଁ ବୈଶ୍ୟବୃତ୍ତି ଆଦର ନେଇଛି । ସାରା ଜୀବନ ଏହି ବୃତ୍ତିଦ୍ୱାରା ହିଁ ମୋତେ ଧର୍ମ ଅନୁସାରେ ମୋର କର୍ତ୍ତବ୍ୟ ସମ୍ପାଦନ କରିବାକୁ ପଡ଼ିବ ।"

ଭଲନ୍ଦନ କହିଲେ—"ପିତଃ ! ମୁଁ ତେବେ କିପରି ରାଜା ହୋଇ ରାଜ୍ୟଶାସନ କରି ପାରିବ ? ଏବେ ଆମକୁ କିଏ କେହି ସ୍ୱତଃପ୍ରବୃତ୍ତ ହୋଇ ରାଜ୍ୟ ପ୍ରଦାନ କରିଛନ୍ତି ? ଆମେ ନିଜର ବାହୁ ବଳରେ ତାହା ଲାଭ କରିଥାଉଁ । ଏଥିରେ ଅଧର୍ମ ହେବାର କୌଣସି ପ୍ରଶ୍ନ ଉଠୁନାହିଁ ।"

ନାଭାଗ କହିଲେ—"ଦେଖ ବତ୍ସ ! ଏକେ ତ ମୁଁ ବୈଶ୍ୟ, ପୁନଶ୍ଚ ବାନ୍ଧମାନୀ ମଧ୍ୟ । ତୁମେ ମୋର ପୁତ୍ର ହୋଇଥିଲେ ବି ମୋତେ ତ ପୁଣି ତୁମ ଦ୍ୱାରା ବିଜୟ ହୋଇଥିବା ରାଜ୍ୟ ଶାସନ କରିବାକୁ ପଡ଼ିବ, ଏହା କିନ୍ତୁ ମୋର ପ୍ରତିଜ୍ଞାର ପ୍ରତିକୂଳ ପନ୍ଥା ହେବ । ମୁଁ ବୈଶ୍ୟଙ୍କ କନ୍ୟାକୁ ବିବାହ କରିଛି, ଏଣୁ ମୁଁ କଦାପି ରାଜ୍ୟ ଶାସନ କରିପାରିବ ନାହିଁ । ତୁମେ ନିଜେ ରାଜ୍ୟ ଲାଭ କରିଅଛ, ତେଣୁ ତୁମେ ହିଁ ରାଜ-ସିଂହାସନ ଆରୋହଣ କରିବା ଉଚିତ୍ । ଏଥିରେ ତଳେ ହେଲେ ଦୋଷ ନାହିଁ ।"

ଭଲନ୍ଦନଙ୍କର ମାତା ଏହା ଶୁଣି ହସି ହସି ନିଜର ପତିଙ୍କୁ କହିଲେ—"ସ୍ୱାମୀ ! ଆପଣ ପୁତ୍ରକଥାରେ ସ୍ୱୀକୃତ ପ୍ରଦାନ କରି ସିଂହାସନରେ ଅଧିଷ୍ଠିତ ହୁଅନ୍ତୁ । ସମସ୍ତ ପ୍ରକାର ଭ୍ରମ ତ୍ୟାଗ କରନ୍ତୁ । ଆପଣ ବୈଶ୍ୟ କନ୍ୟା ସହିତ ବିବାହ କରି ନାହାନ୍ତି । ଆପଣ ଯେପରି ବିଶୁଦ୍ଧ କ୍ଷତ୍ରିୟ ସନ୍ତାନ ମୁଁ ମଧ୍ୟ ସେହିପରି ବିଶୁଦ୍ଧ ବଂଶୋଦ୍ଭବା କ୍ଷତ୍ରିୟ କନ୍ୟା । ପ୍ରଭୋ ! ଆମ ପୁତ୍ର ଭଲନ୍ଦନ ତେଣୁ ବୈଶ୍ୟପୁତ୍ର ନୁହେଁ, ବିଶୁଦ୍ଧ କ୍ଷତ୍ରିୟ ସନ୍ତାନ ।

ନାଭାଗ ଏଥିରେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ- "ତୁମେ କିପରି କ୍ଷତ୍ରିୟ କନ୍ୟା ? ବୈଶ୍ୟପିତା ତୁମକୁ କାହିଁକି ପାଳନ କରିଥିଲେ ? ପ୍ରଥମେ ତୁମେ ମୋତେ ଏହି କଥା ଭଲଭାବେ ବୁଝାଇ କୁହ, ତେବେ ମୁଁ ରାଜସିଂହାସନରେ ବସିବି କି ନାହିଁ ସ୍ଥିର କରିବ ।"

ଏହାଶୁଣି ନାଭାଗ ପତ୍ନୀ 'ସୁପ୍ରଭା' କହିଲେ—"ତେବେ ଠିକ୍ ଅଛି, ଶୁଣନ୍ତୁ । ପ୍ରାଚୀନ କାଳରେ ସୁଦେବ ନାମକ ଜଣେ ରାଜାଥିଲେ । ତାଙ୍କର ନଳ ନାମରେ ଏକ କ୍ଷତ୍ରିୟ ଲମ୍ପଟ ମିତ୍ର ଥିଲେ । ଥରେ ବସନ୍ତ ଋତୁରେ ମହାରାଜ ସୁଦେବ ନିଜର ମିତ୍ର ନଳଙ୍କ ସହିତ ନିଜ ନିଜର ସ୍ତ୍ରୀଙ୍କୁ ନେଇ ଆମ୍ରବନ ମଧ୍ୟକୁ ଭ୍ରମଣ କରିବା ପାଇଁ

ଯାଇଥିଲେ । ବନ ବିହାର ସମୟରେ ସ୍ୱେଚ୍ଛାରେ ଖାଦ୍ୟପେୟ ଗ୍ରହଣ କରିବା ଓ ସ୍ୱଚ୍ଛନ୍ଦରେ ଭ୍ରମଣ କରିବା ତ ଆନନ୍ଦଦାୟକ ବିଷୟ । ସମାଜରେ ଶିଷ୍ଟାଗୃହରେ ରହିବାକୁ ହୁଏ, ଭଦ୍ର ବ୍ୟବହାର କରିବାକୁ ପଡ଼େ ଓ ସାମାଜିକ ଆଗ୍ରହ ବ୍ୟବହାର ଅନୁସାରେ କଥା କହିବାକୁ ପଡ଼େ । ଏକାନ୍ତରେ ନିଜର ସମବୟସ୍କ ଏବଂ ସାଙ୍ଗସାଥୀଙ୍କ ସହିତ ମନୁଷ୍ୟକୁ ସ୍ୱଚ୍ଛନ୍ଦରେ ବିଚରଣ କରିବାକୁ ମଧ୍ୟ ପଡ଼ିଥାଏ । ସେହିପରି ମହାରାଜ ସୁଦେବ ବନକୁ ଯାଇ ସ୍ୱଚ୍ଛନ୍ଦରେ ବିହାର କରୁଥିଲେ । ପୂର୍ବରୁ ଲୋକେ ଯାଇ ସେଠାକୁ ଯାଇ ଭୋଜନର ବ୍ୟବସ୍ଥା କରିଥାଆନ୍ତି । ଏମାନେ ସେଠାକୁ ଯାଇ ଯଥେଷ୍ଟ ବାରୁଣୀ ପାନ କଲେ, ସୁମିଷ୍ଟ ଦ୍ରବ୍ୟମାନ ଭୋଜନ କଲେ । ସମ୍ମୁଖରେ ଏକ ସ୍ୱଚ୍ଛ ସଲିଳ ବିଶିଷ୍ଟ ସରୋବର ଥିଲା । ସେଥିରେ ସ୍ତ୍ରୀମାନଙ୍କ ସହିତ ରାଜା ଜଳ ବିହାର କରିବାକୁ ଲାଗିଲେ । ତାଙ୍କର ସଖା ନଳ ଅତ୍ୟନ୍ତ ଉଦଣ୍ଡ ଥିଲେ । ସେ ସେଦିନ ଯଥେଷ୍ଟ ବାରୁଣୀ ପାନ କରିଥିବାରୁ ହୋସ୍‌ରେ ନଥିଲେ । ଦୈବ ଯୋଗକୁ ପ୍ରାରବ୍ଧ କର୍ମ ବଶତଃ ମହର୍ଷି ଚ୍ୟବନଙ୍କ ପୁତ୍ର ପ୍ରମତିଙ୍କର ପତ୍ନୀ କଳସୀରେ ଜଳ ନେବାପାଇଁ ସେଠାରେ ଆସି ପହଞ୍ଚିଲେ । ସେ କୁଳୀନ ରାଜବଂଶରେ ଜନ୍ମ ହୋଇଥିଲେ ଓ ଅତ୍ୟନ୍ତ ସୁନ୍ଦରୀ ଥିଲେ । ତାଙ୍କ ଅଙ୍ଗ ପ୍ରତ୍ୟଙ୍ଗରୁ ସୌନ୍ଦର୍ଯ୍ୟ ଝରି ପଡ଼ୁଥିଲା । ବଲ୍‌କଳ ବସ୍ତ୍ର ମଧ୍ୟରୁ ତାଙ୍କର ସୁବର୍ଣ୍ଣମୟ ତନୁ ଶୋଭାରେ ଦଶଦିଶ ଝଲସି ଉଠୁଥିଲା । ସେହି ପ୍ରମତି-ପତ୍ନୀଙ୍କର ସେତେବେଳେ ପୂର୍ଣ୍ଣ ଯୌବନାବସ୍ଥା । ତାଙ୍କୁ ଦେଖିବାମାତ୍ରେ ମଦିରା ନିଶାରେ ଉନ୍ମତ୍ତ ନଳ ତାଙ୍କ ପାଖକୁ ଧାଇଁ ଆସି ପଛପଟୁ ତାଙ୍କୁ ଧରିନେଲେ । ଅନନ୍ୟୋପାୟ ହୋଇ ସେହି ଋଷିପତ୍ନୀ ସେତେବେଳେ ଚିତ୍କାର କରି ଉଠିଲେ । ତାଙ୍କର ଆର୍ତ୍ତନାଦ ଶୁଣି ମହର୍ଷି ପ୍ରମତି କାଳବିଳମ୍ବ ନକରି ସେଠାରେ ଆସି ପହଞ୍ଚିଲେ । ମଦୋନ୍ମତ୍ତ ନଳ ତାଙ୍କୁ ଦେଖି କହିଲେ ବିଚରା କୁରରୀ ପକ୍ଷୀଙ୍କ ଭଳି ଚିତ୍କାର କରୁଅଛୁ । ନିଜକୁ ରକ୍ଷା କରିବା ପାଇଁ ରଡ଼ି ଛାଡ଼ୁଛୁ । ଏଣେ ନିକଟରେ ମହାରାଜ ସୁଦେବ ଥିଲେ ମଧ୍ୟ ନଳଙ୍କର ଏପରି ବ୍ୟବହାର ତାଙ୍କୁ ଆଦୌ ପସନ୍ଦ ହୋଇ ନଥିଲା କିମ୍ବା ସେ ଋଷିପତ୍ନୀଙ୍କୁ ଅପମାନିତ କରିବାରେ ଏକମତ ହୋଇ ନଥିଲେ । ସେ ନଳଙ୍କୁ ଅନ୍ତରରେ ଘୃଣା କରୁଥିଲେ ମଧ୍ୟ ତାଙ୍କୁ ଏଥିରୁ ନିବୃତ୍ତ କରିବାର ସାହସ ତାଙ୍କର ନଥିଲା । ତତ୍‌କ୍ଷଣାତ୍ ପ୍ରମତି ସେଠାରେ ପହଞ୍ଚି ରାଜାଙ୍କୁ କଡ଼ାକଡ଼ି ଭାବରେ କହିଲେ — "ରାଜନ୍ ! ଏହା ଆପଣଙ୍କ-ପକ୍ଷେ ଅତି ଲଜ୍ଜାର ବିଷୟ ଯେ ଆପଣ ଜଣେ ଅବନୀ ପାଳକ ହୋଇ ଏପରି ଅନ୍ୟାୟ ଆପଣଙ୍କ ସମ୍ମୁଖରେ ଘଟୁଥିଲେ ମଧ୍ୟ ଆପଣ ମଜା ଦେଖୁଛନ୍ତି ଓ ଦୁଷ୍ଟକୁ ପ୍ରତିରୋଧ କରୁ ନାହାନ୍ତି; ଆପଣ କ୍ଷତ୍ରିୟ ହେଲେ କିପରି ?"

ସମ୍ମୁଖରେ ତେଜସ୍ୱୀ ମୁନିଙ୍କୁ ଦେଖି ମହାରାଜ ସୁଦେବ ଶଙ୍କିଗଲେ ଓ କହିଲେ—"ବ୍ରହ୍ମନ୍ ! ମୁଁ କ୍ଷତ୍ରିୟ ନୁହେଁ, ସ୍ୱର୍ଣ୍ଣକାର (ବଣିଆ) । ଆପଣ ଅନ୍ୟ କୌଣସି କ୍ଷତ୍ରିୟଙ୍କ ନିକଟକୁ ଯାଆନ୍ତୁ, ଯେ କି ଆପଣଙ୍କୁ ରକ୍ଷା କରିବେ ।"

ଋଷି ସ୍ପଷ୍ଟରୂପେ ଜାଣିପାରିଲେ ଯେ ରାଜା ତାଙ୍କୁ ମିଥ୍ୟା କହୁଛନ୍ତି । ତେଣୁ ସେ କ୍ରୋଧରେ ଅଟ୍ଟହାସ୍ୟ କରି କହିଲେ—"ଠିକ୍ ଅଛି, ଯଦି ଆପଣ ନିଜକୁ ବୈଶ୍ୟ ବୋଲି କହୁଛନ୍ତି, ତେବେ ଯାଆନ୍ତୁ ଆଜିଠାରୁ ଆପଣ ବୈଶ୍ୟ ହେଲେ । କ୍ଷତ୍ରିୟ ତ ସେହି, ଯେଉଁ ବିପଦରୁ ପ୍ରଜାଙ୍କୁ ରକ୍ଷାକରେ । ଆପଣ ଦୁଷ୍ଟଲୋକ କବଳରୁ ମୋର ପତ୍ନୀଙ୍କୁ ରକ୍ଷା କରିନାହାନ୍ତି, ତେଣୁ ଆପଣ କ୍ଷତ୍ରିୟ ଧର୍ମରୁ ଚ୍ୟୁତ ହେଲେ ।"

ସୁପ୍ରଭା ନିଜର ପତି ନାଭାଗଙ୍କୁ କହୁଛନ୍ତି—"ହେ ପ୍ରାଣନାଥ ! ପ୍ରମତି ମୁନିଦେବଙ୍କୁ କ୍ରୋଧରେ ଏହିପ୍ରକାର ଶାପଦେଇ ଅତ୍ୟନ୍ତ କ୍ରୁଦ୍ଧହୋଇ ନଳଙ୍କୁ ଶାପ ଦେଲେ ଯେ, "ତୁ ସଙ୍ଗେ ସଙ୍ଗେ ଭସ୍ମ ହୋଇଯା ।" ଦେଖୁ ଦେଖୁ ନଳଙ୍କ ଶରୀରରୁ ଅଗ୍ନି ଉତ୍ପନ୍ନ ହୋଇ ତାଙ୍କୁ ସେଠାରେ ଭସ୍ମ କରିଦେଲା । ମୁନିଙ୍କର ଏପରି ପ୍ରଭାବ ଦେଖି ମୁଁ ଦେବ ହତଚେତନଙ୍କ ଭଳି ହୋଇଗଲେ । ତାଙ୍କୁ ଚତୁର୍ଦ୍ଦିଗ ଶୂନ୍ୟ ଦେଖାଗଲା । ସେ ଅତ୍ୟନ୍ତ ଦୈନ୍ୟତା ପ୍ରକାଶ କରି ନତମସ୍ତକ ହୋଇ ମୁନିଙ୍କୁ ବାରମ୍ବାର ଭୂମିଷ୍ଠ ପ୍ରଣାମ କଲେ ଓ ଅତ୍ୟନ୍ତ ନମ୍ରତାର ସହିତ ହାତଯୋଡ଼ି କହିଲେ – "ବ୍ରହ୍ମନ୍ ! ମୁଁ ସେତେବେଳେ ହତଜ୍ଞାନ ହୋଇ ବାହ୍ୟ ଚେତନା ହରାଇ ବସିଥିଲି । ମଦିରା ନିଶାରେ ମୁଁ କର୍ତ୍ତବ୍ୟ ଶୂନ୍ୟ ହୋଇ ପଡ଼ିଥିଲି । ଆପଣ କୃପା କରନ୍ତୁ, ଯେପରି ମୋର କ୍ଷତ୍ରିୟତ୍ୱ ନଷ୍ଟ ନ ହୁଏ । ଆପଣ ନିଜ ଶାପକୁ ନିଜେ ଫେରାଇ ନିଅନ୍ତୁ ।"

ମୁନି ଋଷିଙ୍କର କ୍ରୋଧ ତ ପାଣିର ଗାରପରି । ନଳ ଭସ୍ମ ହୋଇଯିବା କ୍ଷଣି ମହାମୁନି ପ୍ରମତିଙ୍କର କ୍ରୋଧ ଶାନ୍ତ ହୋଇଗଲା । ତେଣୁ ସେ ସରଳତାର ସହିତ କହିଲେ—"ରାଜନ୍ ! ମୁଁ କେବେହେଲେ ହସ ଖୁସିରେ ବି ମିଛ କହେନାହିଁ, ତେଣୁ ମୋର ଶାପ ନିଶ୍ଚିତ ଭାବେ ଫଳିବ, କେବେହେଲେ ଅନ୍ୟଥା ହେବ ନାହିଁ । ଆପଣଙ୍କୁ ବୈଶ୍ୟ ହେବାକୁ ହିଁ ହେବ; କିନ୍ତୁ ଯଦି କୌଣସି କ୍ଷତ୍ରିୟ ଆସି ବଳପୂର୍ବକ ତୁମ କନ୍ୟାକୁ ହରଣକରେ, ତେବେ ତୁମେ କ୍ଷତ୍ରିୟ ହୋଇଯିବ ଓ ସେହି କନ୍ୟାହରଣକାରୀ ବୈଶ୍ୟ ହୋଇଯିବ ।"

ନିଜ ପତ୍ନୀଙ୍କ ମୁହଁରୁ ଏହିକଥା ଶୁଣି ନାଭାଗ କହିଲେ—"ତେବେ ମୋର ବୈଶ୍ୟତ୍ୱ ତ କାହିଁ ନଷ୍ଟ ହୋଇନାହିଁ ? ତୁମ ପିତାଙ୍କର ଶାପ ମୋଚନ ହେଲେ ସୁଦ୍ଧା, ତୁମେ ତ ବୈଶ୍ୟ କନ୍ୟା ହୋଇ ରହିବ ।"

ଏ କଥା ଶୁଣି ସୁମତି କହିଲେ—"ନା, ପ୍ରଭୋ ! ମୁଁ ବୈଶ୍ୟ କନ୍ୟା ନୁହେଁ । ମୁଁ ମଧ୍ୟ ଅଯୋନିଜା । ପ୍ରାଚୀନ କାଳରେ ଗନ୍ଧମାର୍ଦ୍ଦନ ପର୍ବତ ଉପରେ ସୁରଥ ନାମକ ଜଣେ ରାଜା ଥିଲେ । ସେ ସେଠାରେ ତପସ୍ୟା କରୁଥିଲେ । ସେଠାରେ ଥରେ ଗୋଟିଏ ବଜ୍ରପକ୍ଷୀ ଏକ ସାପକୁ ଧରିପକାଇବାରୁ ସେ ଜୀବନ ବିକଳରେ ସେହି ଶ୍ୟେନପକ୍ଷୀ କବଳରୁ କୌଣସି ପ୍ରକାରେ ଖସିଯାଇ ମୂର୍ଚ୍ଛିତ ହୋଇ ରାଜର୍ଷି ସୁରଥଙ୍କ

ସମ୍ମୁଖରେ ପଡ଼ିଗଲା । ବିପଦଗ୍ରସ୍ତ ସେହି ସାରିକାକୁ ଦେଖି ରାଜର୍ଷି ମଧ୍ୟ କୃପା-ବଶୀଭୂତ ହୋଇ ମୂର୍ଚ୍ଛିତ ହୋଇ ଗଲେ । ତାଙ୍କ ଶରୀର ଘର୍ମାକ୍ତ ହୋଇ ତହିଁରୁ ସ୍ୱେଦବିନ୍ଦୁ ନିର୍ଗତ ହେବାକୁ ଲାଗିଲା । ସେହି ସମୟରେ ତାଙ୍କ ଅଙ୍ଗରୁ ମୋର ଉତ୍ପତ୍ତି ହେଲା । କୃପାରୁ ଉତ୍ପନ୍ନ ହୋଇଥିବା କାରଣରୁ ସେ ମୋର ନାମ କୃପାବତୀ ରଖିଲେ । ମୁଁ ଯୌବନାବସ୍ଥାରେ ପଦାର୍ପଣ କରିଥିବା ଅବସ୍ଥାରେ ଥରେ ନିଜର ସହଚରୀ (ସାଙ୍ଗସାଥୀ) ମାନଙ୍କ ସହିତ ଭ୍ରମଣ କରୁଥାଏ, ମୋର ଜଣେ ସାଥୀ ଅଗସ୍ତ୍ୟ ମୁନିଙ୍କ ଭାଇଙ୍କୁ ବୈଶ୍ୟ ବୋଲି କହିଦେଲା । ଏଥିରେ ସେ କ୍ରୁଧିତ ହୋଇ ମୋତେ ଶାପ ଦେଲେ ଯେ, ତୁ ବୈଶ୍ୟ କନ୍ୟା ହୋଇଯା ।''

ମୁଁ ସେତେବେଳେ ତାଙ୍କୁ ଅନେକ ପ୍ରାର୍ଥନା କରି ଶାପମୁକ୍ତ କରିବା ପାଇଁ କହିବାରୁ ସେ ମୋତେ କହିଲେ—''ତୁ ବୈଶ୍ୟ କନ୍ୟା ତ ନିଶ୍ଚିତ ଭାବେ ହେବୁ, କିନ୍ତୁ ଯେତେବେଳେ ତୁ ନିଜର ବୈଶ୍ୟ ପୁତ୍ରକୁ ଜାତି ସ୍ମରଣ କରାଇବୁ, ସେତେବେଳେ ନିଜ ପତିଙ୍କ ସହ ପୁନଃ କ୍ଷତ୍ରିୟ ହୋଇଯିବୁ ।''

ସେହି କାରଣରୁ ମୁଁ ଏହି ବୈଶ୍ୟ ହୋଇଥିବା ରାଜାଙ୍କ କନ୍ୟା ହୋଇ ରହିଥିଲି । ଆପଣଙ୍କ ସହିତ ମୋର ବିବାହ ସମ୍ପନ୍ନ ହେଲା । ଏବେ ଆପଣ ରାଜସିଂହାସନ ମଣ୍ଡନ କରି ପ୍ରଜା ପାଳନ କରି ପାରନ୍ତି । ଏଥିରେ ଆପଣଙ୍କର କୌଣସି ଦୋଷ ହେବ ନାହିଁ ।''

ଏ କଥା ଶୁଣି ନାଭାଗ ନିଜ ପୁତ୍ରକୁ କହିଲେ— ''ଦେଖ କୁମାର ! ମୁଁ ନିଜ ପିତାଙ୍କ ସମ୍ମୁଖରେ ପ୍ରତିଜ୍ଞା କରି କହିଛି ଯେ—''ମୋର ରାଜ୍ୟ ଅଧିକାରକୁ ମୁଁ ପରିତ୍ୟାଗ କରି ବୈଶ୍ୟ ବୃତ୍ତିକୁ ଆଜିଠାରୁ ଗ୍ରହଣ କରିନେଲି ।'' ତେଣୁ ଏବେ ଯେତେ ଯାହା କହିଲେ ମଧ୍ୟ ମୁଁ କଦାପି ରାଜ୍ୟ ଭାର ଗ୍ରହଣ କରିପାରିବି ନାହିଁ । ତୁମେ ନିଜ ବାହୁବଳରେ ରାଜ୍ୟ ଲାଭ କରିଛ, ରାଜା ହୁଅ ବା ନ ହୁଅ ତାହା ତୁମ ଇଚ୍ଛା ଉପରେ ନିର୍ଭର କରେ । ତୁମେ ଯଦି ରାଜା ହୁଅ, ତେବେ ମୁଁ ଜଣେ ବୈଶ୍ୟର ଯାହା କର୍ତ୍ତବ୍ୟ ତୁମ ଅଧୀନରେ ରହି ତାହା ସମ୍ପାଦନ କରିବି ।''

ନିଜ ପିତାଙ୍କ ମୁହଁରୁ ଏପରି କଥା ଶୁଣି ଭଲନ୍ଦନ ମନ ମଧ୍ୟରେ ଅନେକ ଚିନ୍ତା କରି ଶେଷକୁ ପିତା-ମାତାଙ୍କ ଆଗ୍ରହ ଭାଙ୍ଗି ନ ପାରି ରାଜସିଂହାସନରେ ବସିଲେ ଧର୍ମରେ ପ୍ରଜା ପାଳନ କଲେ । ଏହାପରେ ସେ କ୍ଷତ୍ରୀୟ କନ୍ୟାଙ୍କ ସହିତ ବିବାହ କଲେ । ସେ ଏପରି ଧର୍ମ ଓ ନ୍ୟାୟ ପରାୟଣ ରାଜା ଥିଲେ ଯେ ତାଙ୍କର ଯଶ ସର୍ବତ୍ର ପରିବ୍ୟାପ୍ତ ହୋଇଥିଲା । ସେତେବେଳର ସେ ଅଦ୍ୱିତୀୟ ରାଜା ଥିଲେ । ତାଙ୍କ ବାହୁବଳରେ ସେ ଅନ୍ୟାନ୍ୟ କ୍ଷତ୍ରିୟ ରାଜାମାନଙ୍କୁ ଜୟ କରି ସେମାନଙ୍କଠାରୁ କର ଗ୍ରହଣ କରୁଥିଲେ ଓ ବଡ଼ ବଡ଼ ରାଜସୂୟ, ଅଶ୍ୱମେଧାଦି ଯଜ୍ଞ କରିଥିଲେ । ତାଙ୍କର

ବତ୍ସପ୍ରୀତି ନାମକ ଏକ ପୁତ୍ର ହୋଇ ଥିଲେ ଓ ସେ ପିତାଙ୍କ ଭଳି ଧର୍ମାତ୍ମା ଥିଲେ ଏବଂ ସମସ୍ତଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ ।

ସୂତ କହିଲେ—' ମୁନିଗଣ ! ମୁଁ ଅତି ସଂକ୍ଷେପରେ ଆପଣମାନଙ୍କୁ ମହାରାଜ ନାଭାଗଙ୍କ ବୈଶ୍ୟ ହେବା ଓ ତାଙ୍କ ପୁତ୍ର ଭଲନ୍ଦନ ପୁନଶ୍ଚ ରାଜସିଂହାସନ ଲାଭ କରିବା କଥା କହିଲି, ଏବେ ଆପଣମାନେ ଆଉ କଣ ଶୁଣିବାକୁ ଇଚ୍ଛା କରୁଛନ୍ତି କୁହନ୍ତୁ ।"

ଏହା ଶୁଣି ଶୌନକ କହିଲେ—"ହେ ସୂତ ! ଏବେ ଆପଣ ଭଲନ୍ଦନଙ୍କ ପରବର୍ତ୍ତୀ ରାଜା ମାନଙ୍କର ଚରିତ ବର୍ଣ୍ଣନା କରନ୍ତୁ । ଆପଣ କହୁଥିଲେ ଯେ ଭଲନ୍ଦନଙ୍କର ବତ୍ସପ୍ରୀତି ନାମକ ଏକ ପୁତ୍ର ହୋଇଥିଲା । ସେ କପରି ରାଜା ହେଲେ ଓ ତାଙ୍କର ବିବାହ କାହା ସହିତ ହୋଇଥିଲା ଏବଂ ତାଙ୍କ ଚରିତରେ ଯଦି କୌଣସି ବିଶେଷତ୍ୱ ଥାଏ, ତେବେ କୁହନ୍ତୁ ।"

ଏହା ଶୁଣି ସୂତ କହିଲେ—"ମହାଭାଗ ! ଭଲନ୍ଦନଙ୍କର ପୁତ୍ର ବତ୍ସପ୍ରୀତି ତଥା ତାଙ୍କ ବଂଶାବଳୀର ଚରିତ ମୁଁ ସଂକ୍ଷେପରେ ଆପଣମାନଙ୍କୁ କହୁଅଛି । ଆପଣମାନେ ଏହା ମନଯୋଗ ସହକାରେ ଶ୍ରବଣ କରନ୍ତୁ ।"

## ଛପ୍ପୟ

ମାତୁ ଭଲନ୍ଦନ ପୁତ୍ର ପଠାୟୋ ଗୋପାଳନ ହିତ ।
ଗୟୋ ନୀପ ମୁନି ନିକଟ ବୈଶ୍ୟ ବନବେକତେଂ ଦୁଖିତ ।।
ନୀପ ଶିଖାୟେ ଅସ୍ତ୍ର ଯୁଦ୍ଧ ଷଇନତେଂ କୀହ୍ନୋଂ ।
କରେ ପରାଜିତ ବନ୍ଧୁ ରାଜ୍ୟ ପୁନି ଅପନୋ ଲୀହ୍ନୋଂ ।।
ଭୟେ ଭଲନ୍ଦନ ଭୂମିପତି, ସୁମତି ଚରିତ ପନ୍ନୀ କହେ ।
ଅତି ଆଗ୍ରହ ପିତୁତେଂ କରେଯା, ବନେ ନ ନୃପ ବୈଶ୍ୟହି ରହେ ।।



# ବତ୍ସପ୍ରୀତି, ପ୍ରାଂଶୁ ଆଦିଙ୍କ ଚରିତ

**ବତ୍ସପ୍ରୀତେ, ସ୍ତୁତଃ ପ୍ରାଂଶୁସ୍ତସ୍ୟ ସୁତଂ ପ୍ରମତିଂ ବିଦୁଃ ।**
**ଖନିତ୍ର ପ୍ରମତେସ୍ତସ୍ମାଚ୍ଚାକ୍ଷୁଷୋଽଥ ବିବିଂଶତିଃ ।**

(ଶ୍ରୀ: ଭି: ୯ମ ସ୍କନ୍ଦ, ୨ଅ; ୨୪ ଶ୍ଳୋକ)

## ଛପ୍‌ପୟ୍

ବତ୍ସପ୍ରୀତି ସୁତ ଭୟେ ଭଲନ୍ଦନ କେ ଉତ୍ସାହୀ ।
ଦାନବ ହନେୟା କୁଜୁମ୍ଭ ବିଦୁରଥ କନ୍ୟା ବ୍ୟାହୀ ।।
ମୁଦାବତୀତେ ଭୟେ ପୁତ୍ର ବାରହ ତେଜସ୍ୱୀ ।
ଜେଏଷ୍ଠ ଶ୍ରେଷ୍ଠ ନୃପ ପ୍ରାଂଶୁ ଜଗତମହଁ ଭୟେ ଯଶସ୍ୱୀ ।
ଭୟେ ପ୍ରାଂଶୁକେ ପ୍ରମତି ସୁତ, ଉନକେ ପୁତ୍ର ଖନିତ୍ର ହୈଂ ।
ଅତି ପବିତ୍ର ଜଗମହଁ ବିଦିତ, ତିନକେ ଶୁଚି ଚରିତ୍ର ହୈଂ ।।

ବୀରତ୍ୱର ପୁରସ୍କାର ସ୍ୱରୂପ ଯେଉଁ ବସ୍ତୁ ଲାଭ ହୁଏ, ତାହାର ମହତ୍ତ୍ୱ ଅତ୍ୟଧିକ ହୋଇଥାଏ । ବସ୍ତୁ ମାନଙ୍କ ମଧ୍ୟରେ କୌଣସିଟି ଶ୍ରେଷ୍ଠ ନୁହେଁ କିମ୍ବା କୌଣସିଟି ବଡ଼ ମଧ୍ୟ ନୁହେଁ । ଯେଉଁବସ୍ତୁ ପଛରେ ଯେତେ ପରାକ୍ରମ ପରିଶ୍ରମ ତଥା ବୀରତ୍ୱର ଇତିହାସ ରହିଛି, ସେ ବସ୍ତୁ ସେତେ ଅଧିକ ମହତ୍ତ୍ୱଶାଳୀନୀ ଅଟେ । ବସ୍ତୁ ସାଧାରଣତଃ କ୍ଷିତି, ଆପ, ତେଜ, ମରୁତ୍ ଓ ବ୍ୟୋମ ଏହି ପଞ୍ଚଭୂତରେ ଗଢ଼ା ହୋଇଥାଏ । କୌଣସି ବସ୍ତୁରେ କୌଣସି ଭୂତର ଆଧିକ୍ୟ ପରିଲକ୍ଷିତ ମଧ୍ୟ ହୁଏ । କିନ୍ତୁ ଯେଉଁ ବସ୍ତୁ ଶ୍ରମ ଦ୍ୱାରା ଲାଭ ହୋଇଥାଏ, ଯେଉଁ ବସ୍ତୁ ଦୁର୍ଲଭ, ଯେଉଁ ବସ୍ତୁ ପ୍ରାପ୍ତ ହେବା ସମସ୍ତଙ୍କ ପକ୍ଷେ ସମ୍ଭବ ନୁହେଁ । ସେହି ବସ୍ତୁର ମୂଲ୍ୟ ଅଧିକ । ବିବାହ ତ ବହୁତ ଭଳି ହୋଇଥାଏ, କିନ୍ତୁ ଯେଉଁ ବିବାହରେ ବୀରତ୍ୱର ପଣ ରହେ, ବୀର ପରାକ୍ରମ ପ୍ରମାଣିତ କରି ଯେଉଁ କନ୍ୟା ଲାଭ ହୁଏ, ତାହାର ମହତ୍ତ୍ୱ ଅନ୍ୟ ବିବାହର ମହତ୍ତ୍ୱ ଅପେକ୍ଷା ଅତ୍ୟଧିକ । ଯେପରି କି ପଣ ରଖି ସୀତାଙ୍କ ବିବାହ କରାଯାଇ ଥିବାରୁ ସେହି ବିବାହର ମହତ୍ତ୍ୱ ଅତ୍ୟଧିକ ହୋଇଥିଲା ।

ସୂତ କହିଲେ—“ମୁନିଗଣ ! ଭଲନ୍ଦନଙ୍କର ପୁତ୍ର ବସ୍ତ୍ରପ୍ରୀତ ପରମ ତେଜସ୍ୱୀ ଥିଲେ । ସେ ବଡ଼ ବୀର, ଶତ୍ରୁ ବିଜୟୀ ଓ ଅତ୍ୟନ୍ତ ପରାକ୍ରମୀ ଥିଲେ । ସେ ପାତାଳ-ପୁରୀକୁ ଯାଇ କୁଜୃମ୍ଭ ନାମକ ଦୈତ୍ୟକୁ ବଧ କରିଥିଲେ ଓ ଭାଗ୍ୟବତୀ ମୁଦାବତୀଙ୍କୁ ବିବାହ କରିଥିଲେ ।”

ଏହା ଶୁଣି ଶୌନକ କହିଲେ—“ହେ ସୂତ ! ଏହି କୁଜୃମ୍ଭ ଦାନବର ଇତିହାସ କଣ ଓ ବସ୍ତ୍ରପ୍ରୀତ ତାକୁ କିପରି ମାରିଲେ ? ମୁଦାବତୀ କାହାର କନ୍ୟା ଓ ତାଙ୍କର ବିବାହ ବସ୍ତ୍ରପ୍ରୀତଙ୍କ ସହିତ କିପରି ହେଲା ତାହା ଆମ୍ଭମାନଙ୍କୁ କୁହନ୍ତୁ ।”

ସୂତ କହିଲେ—“ମହାରାଜ ! ମୁଁ ବସ୍ତ୍ରପ୍ରୀତଙ୍କ ବୃତ୍ତାନ୍ତ ଆପଣଙ୍କୁ ଶୁଣାଉଛି, ତାହା ମନଯୋଗ ଦେଇ ଶ୍ରବଣ କରନ୍ତୁ ।”

ପୂର୍ବ କାଳରେ ବିଦୂରଥ ନାମରେ ଜଣେ ଧର୍ମ ପରାୟଣ ରାଜା ଥିଲେ । ସେ ପ୍ରଜାମାନଙ୍କୁ ଖୁବ ଭଲ ପାଳନ କରୁଥିଲେ । ଦିନେ ମହାରାଜ ସିନ୍ଧୁ ଦେଶର ଏକ ସୁନ୍ଦର ଶାନ୍ତ ସ୍ୱଭାବ ବିଶିଷ୍ଟ ଅଶ୍ୱ ପୃଷ୍ଠରେ ଆରୋହଣ କରି ବନକୁ ଶିକାର କରିବାକୁ ବାହାରିଲେ । ରାଜଧାନୀଠାରୁ କିଛି ଦୂର ଯିବାପରେ ସେ ଏକ ବିରାଟ ଗହ୍ୱର ଦେଖିବାକୁ ପାଇଲେ । ରାଜା ସେହି ଅତଳ ଗମ୍ଭୀର ବିଶିଷ୍ଟ ଗର୍ତ୍ତକୁ ଦେଖି ଅତ୍ୟନ୍ତ ବିସ୍ମିତ ହେଲେ । ଏହା ଦେଖି ସେ ଚିନ୍ତା କରିବାକୁ ଲାଗିଲେ ଯେ—“ମୁଁ ତ ଅନେକ ଥର ଏହି ପଥ ଦେଇ ଯାତାୟତ କରିଛି, ଏପରି ଅପୂର୍ବ ଗର୍ତ୍ତ ଏଥି ପୂର୍ବରୁ କେବେ ଦେଖି ନାହିଁ । ଏହି ଗର୍ତ୍ତ ମଧ୍ୟ ସାଧାରଣ ଗର୍ତ୍ତପରି ଜଣାପଡ଼ୁ ନଥିଲା । ରାଜା ଆଶ୍ଚର୍ଯ୍ୟ ହୋଇ ସେହି ଗର୍ତ୍ତ ସମ୍ବନ୍ଧରେ ଚିନ୍ତାମଗ୍ନ ଥିବା ସମୟରେ ତାଙ୍କ ସମ୍ମୁଖରେ ଜଣେ ପରମ ତେଜସ୍ୱୀ ଋଷି ଯାଉଥିବାର ଦେଖିଲେ । ସେହି ଋଷି ନିକଟବର୍ତ୍ତୀ ଅରଣ୍ୟରେ ରହି ଥିଲେ ଓ ସୁବ୍ରତ ନାମରେ ସର୍ବତ୍ର ପ୍ରସିଦ୍ଧ ଥିଲେ ।

ମହାମୁନି ସୁବ୍ରତଙ୍କୁ ସମ୍ମୁଖରେ ଦର୍ଶନ କରି ମହାରାଜ ବିଦୂରଥ ତାଙ୍କୁ ଭକ୍ତିରେ ପ୍ରଣାମ କଲେ ଓ ଅଶ୍ୱ ପୃଷ୍ଠରୁ ଅବତରଣ କରି ତାଙ୍କୁ ନମ୍ରତାର ସହିତ ପଚାରିଲେ—“ବ୍ରହ୍ମନ୍ ଏଠାରେ ଏ ଅଦ୍ଭୁତ ପୂର୍ବ ଗର୍ତ୍ତ କିପରି ହେଲା ? କିଏ କିପରି ଏ ଅତଳ ଗହ୍ୱର ଖନନ କଲା ? ମହାରାଜ ! ମୁଁ ଜାଣି ପାରୁଛି ଯେ ଏହା ନିଶ୍ଚିତ ଭାବେ ପାତାଳ ପୁରକୁ ଦ୍ୱାର ସ୍ୱରୂପ । ଏହି ଗର୍ତ୍ତ ମଧ୍ୟଦେଇ ଯେ କେହି ପାତାଳ ପୁରକୁ ଯାଇ ପାରିବେ ।”

ଏକଥା ଶୁଣି ସୁବ୍ରତ ମୁନି ହସି ହସି କହିଲେ— “ରାଜନ୍ ! ତୁମେ ପ୍ରଜା ପାଳକ ହୋଇ ମଧ୍ୟ ଏ ବିଷୟରେ କିଛି ହେଲେ ଜାଣିନାହିଁ ? ତୁମେ ପ୍ରଜା ପାଳନ କିପରି କରି ପାରୁଛ ?”

ରାଜା ଲଜ୍ଜିତ ହୋଇ କହିଲେ—"ବ୍ରହ୍ମନ୍ ! ଏଥି ପୂର୍ବରୁ ତ ମୁଁ ଏ ଗର୍ତ୍ତକୁ କେବେ ଦେଖିନଥିଲି, ତେଣୁ ଏ ସମ୍ବନ୍ଧରେ ମୁଁ କିଛି ଜାଣିନାହିଁ, ଏବେ କୁହନ୍ତୁ ମୋତେ କଣ କରିବାକୁ ହେବ । ଏ ଗର୍ତ୍ତ ଯୋଗୁଁ ପ୍ରଜା ମାନଙ୍କର କି ଅନିଷ୍ଟ ଘଟିବ ? ଆପଣ ଯେପରି ଆଜ୍ଞା କରିବେ, ସେହି ଅନୁସାରେ ମୁଁ କାର୍ଯ୍ୟ କରିବି ।

ଏହା ଶୁଣି ସୁବ୍ରତ ମୁନି କହିଲେ—"ରସାତଳରେ କୁଜୃମ୍ଭ ନାମରେ ଜଣେ ଅତି ପରାକ୍ରମୀ ରାକ୍ଷସ ରହୁଛି, ସେ ପୃଥିବୀ ଉପରେ ସ୍ଥାନେ ସ୍ଥାନେ ଏହିପରି ଗର୍ତ୍ତ ସୃଷ୍ଟି କରୁଛି ।"

ରାଜା ପଚାରିଲେ—"ଭଗବନ୍ ! ସେ ରାକ୍ଷସର ନାମ କୁଜୃମ୍ଭ କିପରି ହେଲା ଓ ସେ ପାତାଳରୁ ପୃଥିବୀ ପୃଷ୍ଠ ପର୍ଯ୍ୟନ୍ତ ଏ ପ୍ରକାର ଗର୍ତ୍ତ କିପରି କଲା ତାହା ମୋତେ କୃପା କରି କହନ୍ତୁ ।"

ମହାମୁନି ସୁବ୍ରତ କହିଲେ—"ରାଜନ୍ ! ଏହି ଦାନବ ସୁରଶିଳ୍ପୀ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ହୋଇଥିବା 'ସୁନନ୍ଦ' ନାମକ ମୁଷଳକୁ କୌଶଳକ୍ରମେ ନେଇ ଆସିଥିଲା । ସେହି ମୂଷଳର ଏପରି ଶକ୍ତି ଯେ, ତାହାକୁ ଯାହା ଉପରେ ଚାଳନ କରାଯାଏ, ତାହା ବିଦୀର୍ଣ୍ଣ ହୋଇଯାଏ । ତାହା ସାହାଯ୍ୟରେ ସେ ଧରାବକ୍ଷକୁ ଦୁଇଭାଗ କରିଦିଏ ଓ ସ୍ଥାନେ ସ୍ଥାନେ ଗର୍ତ୍ତ କରିଦିଏ । ସେହି ଗର୍ତ୍ତ ମଧ୍ୟ ଦେଇ ଦୈତ୍ୟ ଦାନବଗଣ ପାତାଳ-ପୁରରୁ ଅନାୟାସରେ ଭୂପୃଷ୍ଠକୁ ଆସି ପାରନ୍ତି । ଏହିପରି ଗର୍ତ୍ତ ମଧ୍ୟଦେଇ ନିରନ୍ତର ଜଳ ବହିର୍ଗତ ହୋଇଥାଏ । ଯଦି ସେହି ଦୁଷ୍ଟ ଦାନବ ଏହିପରି କରିବ, ତେବେ ଦିନେ ନା ଦିନେ ଏ ପୃଥିବୀ ଜଳମଗ୍ନ ହୋଇଯିବ । ଏହି ଭୂପୃଷ୍ଠକୁ କୁମ୍ଭିତ ଅର୍ଥାତ୍ ଛିଦ୍ରଯୁକ୍ତ କରୁଥିବା କାରଣରୁ ସେହି ଦୁଷ୍ଟ ଦାନବର ନାମ କୁଜୃମ୍ଭ । ମହାରାଜ ! ଯେ ପର୍ଯ୍ୟନ୍ତ ଆପଣ ସେହି ଦୁଷ୍ଟ ଦାନବକୁ ଦମନ ନ କରିଛନ୍ତି, ସେ ପର୍ଯ୍ୟନ୍ତ ଆପଣଙ୍କୁ ପୂର୍ଣ୍ଣ ପୃଥିବୀପତି ବୋଲି କୁହାଯାଇ ନ ପାରେ । ଆପଣଙ୍କର ସର୍ବପ୍ରଥମ କାର୍ଯ୍ୟ ହେଉଛି ଏହି ଦୁଷ୍ଟ ଦାନବକୁ ବିନାଶ କରିବା ।"

ରାଜା ବିସ୍ମୟ ହୋଇ ମହାମୁନି ସୁବ୍ରତଙ୍କୁ ପଚାରିଲେ—"ଭଗବନ୍ ! ବିଶ୍ୱକର୍ମା ଙ୍କ ନିର୍ମିତ ସେହି ଦିବ୍ୟ ଅମୋଘ ମୂଷଳ କିପରି ବ୍ୟର୍ଥ ହେବ, ସେ ଉପାୟ ଆପଣ ବତାଇ ଦିଅନ୍ତୁ । ଯେ ପର୍ଯ୍ୟନ୍ତ ସେହି ଦୁଷ୍ଟ ଦାନବ ପାଖରେ ମୂଷଳ ରହିଥିବ, ସେ ପର୍ଯ୍ୟନ୍ତ ତାକୁ କେହି ପରାସ୍ତ କରି ପାରିବେ ନାହିଁ । ତେଣୁ ସେହି ମୂଷଳର ଶକ୍ତି କିପରି ହ୍ରାସ କରାଯିବ ତାହା ଆପଣ କୁହନ୍ତୁ ।"

ଏହା ଶୁଣି ସୁବ୍ରତ ମୁନି କହିଲେ—"ରାଜନ୍ ! ମୁଁ ତୁମକୁ ବର୍ତ୍ତମାନ ଏପରି ଏକ ପରମ ଗୁପ୍ତ ରହସ୍ୟମୟୀ କଥା କହୁଛି, ଯେଉଁ ବିଷୟରେ କି ଦୁଷ୍ଟ ଦାନବ ଆଦୌ କିଛୁ ଜାଣି ନାହିଁ କିମ୍ବା ତାହାର ସନ୍ଧାନ ମଧ୍ୟ ପାଇ ନାହିଁ । ଯଦି କୌଣସି ଯୁବତୀ ସ୍ତ୍ରୀ ସେହି ମୂଷଳକୁ ନିଜର ସୁକୋମଳ ଅଙ୍ଗୁଳି ଦ୍ୱାରା ସ୍ପର୍ଶ କରେ, ତେବେ ସେହି ମୂଷଳ ସେହିଦିନ ଶକ୍ତିହୀନ ହୋଇଯିବ, କିନ୍ତୁ ତା ପରଦିନ ତାହା ପୂର୍ବଭଳି ସବଳ ହୋଇଯିବ । ମହାରାଜ ! ଯଦି ତୁମେ ସେହି ଦାନବକୁ ନ ମାରିବେ ତେବେ, ନିଜର ରାଜ୍ୟପାଟ ହରାଇ ବସିବ । ସେ ତ ତୁମ ରାଜଧାନୀ ନିକଟରେ ହିଁ ଉପଦ୍ରବ କରିବାକୁ ବସିଲାଣି ।"

ମହାରାଜ ଋତୁଧ୍ୱଜ ହାତ ଯୋଡ଼ି କହିଲେ—"ବ୍ରହ୍ମନ୍ ! ଆପଣ ମୋତେ ଆଶୀର୍ବାଦ କରନ୍ତୁ ଯାହାକି ମୋତେ ଏହି କାର୍ଯ୍ୟରେ ଉପଯୁକ୍ତ କରାଇବ । ବର୍ତ୍ତମାନ ମୁଁ ସେହି ଦୁଷ୍ଟ ଦାନବକୁ ମାରିବା ପାଇଁ ପ୍ରସ୍ତୁତ ହେଉଛି ।"

ସୂତ କହିଲେ—"ମୁନିଗଣ ! ରାଜାଙ୍କର ଏପରି କଥାଶୁଣି ଓ ତାଙ୍କ ଦ୍ୱାରା ସତ୍କୃତ ହୋଇ ମହାମୁନି ସୁବ୍ରତ ନିଜ ଆଶ୍ରମକୁ ଚାଲିଗଲେ ଓ ରାଜା କୁଜମ୍ଭ ବିଷୟ ଚିନ୍ତା କରି କରି ନିଜ ରାଜଧାନୀକୁ ଫେରି ଆସିଲେ ।"

ରାଜଧାନୀରେ ପହଞ୍ଚି ରାଜା ନିଜ ମନ୍ତ୍ରୀଗଣଙ୍କୁ ତଥା ମୁଖ୍ୟ ସେନାପତି ମାନଙ୍କୁ ଏକତ୍ରିତ କଲେ ଏବଂ ସେମାନଙ୍କ ଆଗରେ ସେହି ଗର୍ତ୍ତ କଥା ଓ ସୁବ୍ରତ ମୁନିଙ୍କ ମୁଖରୁ ଶୁଣିଥିବା କୁଜମ୍ଭର ମୂଷଳ କଥା ସମସ୍ତ କହିଲେ । ତାହା ସଙ୍ଗେ ସଙ୍ଗେ ଏହା ମଧ୍ୟ କହିଲେ ଯେ ଯୁବତୀ ସ୍ତ୍ରୀର କୋମଳ ଅଙ୍ଗୁଳି ସ୍ପର୍ଶରେ ଦିନକପାଇଁ ଉକ୍ତ ମୂଷଳ ଶକ୍ତିହୀନ ହୋଇଯାଏ । କୁଜମ୍ଭ ଦାନବର ପରାକ୍ରମ କଥାଶୁଣି ସମସ୍ତେ ବିସ୍ମିତ ହେଲେ ଓ ତାକୁ ମାରିବା ପାଇଁ ଉପାୟ ଚିନ୍ତା କରିବାକୁ ଲାଗିଲେ । ସେ ଏଥିପାଇଁ ବଛା ବଛା ବୀର ସୈନ୍ୟମାନଙ୍କୁ ବାଛିଲେ ଯେଉଁମାନେ କି ପାତାଳପୁରକୁ ଯାଇ ସେହି ଦୁଷ୍ଟ ଦାନବ ସହିତ ଯୁଦ୍ଧ କରିପାରିବେ ।

ଏଣେ ରାଜା ସୈନ୍ୟବଳ ପ୍ରସ୍ତୁତ କରିବାରେ ବ୍ୟସ୍ତ ଥିବା ସମୟରେ ତେଣେ ସେହି ଦାନବ କୁଜମ୍ଭ ଅନ୍ୟ ଗୋଟିଏ କୁତ୍ସିତ କାର୍ଯ୍ୟ କରି ପକାଇ ଥାଏ । ମହାରାଜଙ୍କର ମୁଦାବତୀ ନାମକ ରୂପବତୀ ଯୁବତୀ କନ୍ୟା ଦିନେ ନିଜର ସଖୀଗଣଙ୍କ ସହିତ ଉଦ୍ୟାନରେ କ୍ରୀଡ଼ା କରୁଥିବା ସମୟରେ ସେହି ଦୁଷ୍ଟ କୁଜମ୍ଭ ଆସି ତାଙ୍କୁ ହରଣକରି ପାତାଳକୁ ନେଇ ଯାଇଥାଏ । ଏବେ ଏହା ପ୍ରଜ୍ଜ୍ୱଳିତ ଅଗ୍ନିରେ ଘୃତ ଆହୁତି ଦେଲଭଳି ଘଟଣା ହେଲା । ରାଜା ନିଜର ପରାକ୍ରମଶାଳୀ ଯଶସ୍ୱୀ ଦୁଇ ପୁତ୍ରଙ୍କୁ ଡାକି ତାଙ୍କୁ କହିଲେ--ବତ୍ସ ! ସେହି ଦୁଷ୍ଟ ଦାନବ ମୋତେ ଅତ୍ୟନ୍ତ ଅପମାନିତ

କରିଛୁ, ତୁମେ ଦୁହେଁ ପାତାଳପୁରୀକୁ ଯାଇ ସେହି ପାପୀକୁ ତାର କ୍ରୂରକର୍ମର ଉପଯୁକ୍ତ ଫଳ ଚଖାଅ ଓ ସେହି ଦୁଷ୍ଟ ଦାନବକୁ ମାରି ନିଜ ଭଉଣୀକୁ ଉଦ୍ଧାରକରି ତା ନିକଟରୁ ନେଇ ଆସ ।"

ପିତାଙ୍କ ଆଦେଶରେ ତାଙ୍କର ସୁନାଭ ଓ ସୁମଭ ନାମକ ପୁତ୍ରଦ୍ୱୟ କ୍ରୋଧରେ ସୈନ୍ୟ ମାନଙ୍କ ସହ ପାତାଳପୁରୀକୁ ଯୁଦ୍ଧଯାତ୍ରା କଲେ । ଏହି ମନୁଷ୍ୟମାନଙ୍କୁ ସଦଳବଳେ ଆସୁଥିବାର ଦେଖି କୁଜୃମ୍ଭ ଦାନବ ଆନନ୍ଦରେ ଉଲ୍ଲସିତ ହୋଇ ବହୁତ ହସିଲା । ସେ ଅସ୍ତ୍ରଶସ୍ତ୍ର ଆଣି ସେମାନଙ୍କ ସହିତ ଲଢ଼ିବା ପାଇଁ ପ୍ରସ୍ତୁତ ହୋଇଗଲା । ଯଦିଚ ରାଜକୁମାର ଦ୍ୱୟ ଅତ୍ୟନ୍ତ ବୀର ଓ ଅସ୍ତ୍ରବିଦ୍ୟା ବିଶାରଦ ଥିଲେ, ତଥାପି ସେହି ଦାନବ ସହିତ ଯୁଦ୍ଧରେ ସମକକ୍ଷ ହୋଇ ପାରିଲେ ନାହିଁ । ସେହି ମାୟାବୀ ଦୈତ୍ୟ ଏମାନଙ୍କୁ ମାୟାରେ ବାନ୍ଧିନେଲା ଓ ସୈନ୍ୟକଙ୍କୁ ମାରି ହଟାଇ ଦେଲା ।

ରାଜା ବଜ୍ରରଥ ଏହି ସମାଚାର ଶୁଣି ଅତ୍ୟନ୍ତ ଦୁଃଖିତ ହେଲେ । ନିଜେ ମଧ୍ୟ ସେହି ଗର୍ତ୍ତରେ ପ୍ରବେଶ କରିବାକୁ ସାହସ କଲେ ନାହିଁ । ସେ ଘୋଷଣା କଲେ ଯେ, ଯେଉଁ ରାଜକୁମାର ପାତାଳପୁରୀକୁ ଯାଇ ସେହି ଦୁଷ୍ଟ ଦାନବକୁ ମାରି ମୋର ପୁତ୍ର ଓ କନ୍ୟାଙ୍କୁ ତା କବଳରୁ ରକ୍ଷାକରି ଆଣିପାରିବ, ତାଙ୍କ ସହିତ ମୋର କନ୍ୟାକୁ ବିବାହ କରିବି ।

ମୃଦାବତୀ ଅତ୍ୟନ୍ତ ସୁନ୍ଦରୀ ଯୁବତୀ ଥିଲେ । ବହୁ ରାଜକୁମାର ତାଙ୍କୁ ବିବାହ କରିବାକୁ ଇଚ୍ଛା କରୁଥିଲେ, କିନ୍ତୁ କୁଜୃମ୍ଭର ବୀରତ୍ୱ ଓ ମାୟା କଥା ଶୁଣି ତା ସହିତ ଯୁଦ୍ଧ କରିବାକୁ କାହାର ସାହସ ହେଲା ନାହିଁ । ସେହି ସମୟରେ ମହା ପରାକ୍ରମୀ ଭଲନ୍ଦନଙ୍କ ପୁତ୍ର ବତ୍ସପ୍ରୀତ ତାଙ୍କ ପିତାଙ୍କ ମିତ୍ର ମହାରାଜ ବଜ୍ରରଥଙ୍କ ସମୀପରେ ଆସି ଉପସ୍ଥିତ ହେଲେ ଓ ତାଙ୍କୁ କହିଲେ—"ମହାରାଜ ! ଆପଣ ନିଜ ଅନୁଚରମାନଙ୍କୁ ଆଦେଶ କରନ୍ତୁ । ମୁଁ ସେହି ଦୁଷ୍ଟ ଦାନବ କୁଜୃମ୍ଭକୁ ମାରି ଆପଣଙ୍କର ପ୍ରିୟକାର୍ଯ୍ୟ ସମ୍ପାଦନ କରିବି ।"

ନିଜର ମିତ୍ର ଭଲନ୍ଦନଙ୍କ ପୁତ୍ର ବତ୍ସପ୍ରୀତଙ୍କର ଏପରି ବୀରତ୍ୱପୂର୍ଣ୍ଣ ବଚନ ଶୁଣି ମହାରାଜ ବଜ୍ରରଥ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ବତ୍ସପ୍ରୀତଙ୍କୁ ପ୍ରେମରେ ଆଲିଙ୍ଗନ କଲେ ଓ ଶିର ଆଘ୍ରାଣ କରି ଅତି ଆଦରରେ କହିଲେ—"ବତ୍ସ ! ତୁମର କଲ୍ୟାଣ ହେଉ, ଭଗବାନ ତୁମକୁ ତୁମ କାର୍ଯ୍ୟରେ ସଫଳ କରନ୍ତୁ । ତୁମେ ଶୀଘ୍ର ଯାଇ ସେହି ଦୈତ୍ୟକୁ ମାରି ମୋର ପ୍ରିୟକାର୍ଯ୍ୟ ସମ୍ପାଦନ କର ।"

ମହାରାଜଙ୍କର ଆଜ୍ଞା ଓ ଆଶୀର୍ବାଦ ପାଇ ବସ୍ତ୍ରପ୍ରୀତ ପାତାଳପୁରୀକୁ ଯାତ୍ରା କଲେ । ସେଠାକୁ ଯାଇ ସେ ନିଜ ଧନୁରେ ଗୁଣ ଚଢ଼ାଇ ଧନୁରଟଙ୍କାର ଶବ୍ଦରେ ପାତାଳ ପୁରୀ ମୁଖରିତ କଲେ । ଜଣେ ମନୁଷ୍ୟ ପୁଣି ଯୁଦ୍ଧ କରିବା ପାଇଁ ଆସିଥିବାର ଦେଖି ସେହି ରଣରଙ୍ଗ ଦୁର୍ମଦ ଦାନବ ଅତ୍ୟନ୍ତ ପ୍ରସନ୍ନ ହେଲା ଓ ଅସ୍ତ୍ରଶସ୍ତ୍ର ଧରି ସୈନ୍ୟମାନଙ୍କୁ ନେଇ ରାଜକୁମାର ବସ୍ତ୍ରପ୍ରୀତଙ୍କ ସହିତ ଯୁଦ୍ଧ କରିବାକୁ ଆସିଲା । କୁମାର ସେହି ଦାନବ ସହିତ ଘୋର ଯୁଦ୍ଧ କଲେ । ଦିନ ଦିନ ରାତିରାତି ନିରନ୍ତର ଲୋମହର୍ଷଣକାରୀ ଭୟଙ୍କର ଯୁଦ୍ଧ ଚାଲିଲା । ଯେତେବେଳେ ଅନ୍ୟ ଅସ୍ତ୍ର ଶସ୍ତ୍ର ଦ୍ୱାରା ଶତ୍ରୁକୁ ଜୟ କରାଯାଇ ନପାରେ, ସେତେବେଳେ ସେହି ଦୈତ୍ୟ ନିଜର ଦିବ୍ୟ ମୂଷଳକୁ ବ୍ୟବହାର କରିଥାଏ । ସେ ଯେତେବେଳେ ଦେଖିଲା ଏ ରାଜକୁମାର ଅତ୍ୟନ୍ତ ବଳଶାଳୀ, ଅନ୍ୟ କୌଣସି ଅସ୍ତ୍ରଶସ୍ତ୍ର ଦ୍ୱାରା ତାଙ୍କୁ ଜୟ କରି ହେବ ନାହିଁ, ସେତେବେଳେ ସେ ସେହି ଦିବ୍ୟ ମୂଷଳକୁ ଆଣିବା ପାଇଁ ଅନ୍ତଃପୁରକୁ ଧାଇଁଲା । କୁମାରୀ ମୃଦାବତୀଙ୍କୁ ସେଠାରେ ସେହି ଦୈତ୍ୟ ବନ୍ଦୀକରି ରଖିଥିଲା । ସେ ଯେତେବେଳେ ଜାଣିଲେ ଯେ ତାଙ୍କୁ ଉଦ୍ଧାର କରିବା ପାଇଁ କୁମାର ବସ୍ତ୍ରପ୍ରୀତ ଯୁଦ୍ଧକରିବାକୁ ଆସିଛନ୍ତି ଓ ଦାନବ ଦିନଦିନ ରାତିରାତି ନିରନ୍ତର ଯୁଦ୍ଧ କରି ମଧ୍ୟ ତାଙ୍କୁ ହରାଇ ପାରୁନାହିଁ, ସେତେବେଳେ ତାଙ୍କ ମନରେ ଉଦ୍ଧାର ହେବା ଆଶାର ସଞ୍ଚାର ହେଲା । ସେ ନିଜ ଘରେ ଥିବା ସମୟରେ ବସ୍ତ୍ରପ୍ରୀତଙ୍କର ପ୍ରଶଂସା ଶୁଣିଥିଲେ ଓ ମନେ ମନେ ତାଙ୍କପ୍ରତି ଆସକ୍ତିଯୁକ୍ତା ମଧ୍ୟ ହୋଇ ଯାଇଥିଲା । ଯେତେବେଳେ ସେ ଦେଖିଲେ ଏହି ଦାନବ ରାଜକୁମାରଙ୍କୁ ମାରିବା ପାଇଁ ଦିବ୍ୟ ମୂଷଳ ନେବାକୁ ଆସୁଛି, ସେତେବେଳେ ନିଜ ପିତାଙ୍କ ଠାରୁ ଶୁଣିଥିବା କଥା ତାଙ୍କର ସ୍ମରଣ ହେଲା । ସେ ଦୌଡ଼ିଯାଇ ସେହି ମୂଷଳକୁ ଛୁଇଁ ଦେଲେ । ଇତି ମଧ୍ୟରେ ଦୈତ୍ୟ ମଧ୍ୟ ସେଠାରେ ଆସି ପହଞ୍ଚିଗଲା । ତାକୁ ପ୍ରଣାମ କରି ରାଜକୁମାରୀ ପୁନଃ ସେହି ମୂଷଳକୁ କମଳ ପାଖୁଡ଼ା ସଦୃଶ ରକ୍ତାଭ ନିଜର କୋମଳ ଅଙ୍ଗୁଳି ଦ୍ୱାରା ସ୍ପର୍ଶ କଲେ ।

ସେତେବେଳେ ସେହି ଦାନବ ତ କ୍ରୋଧାନ୍ଧ ହୋଇଥିଲା । ତେଣୁ ସେ ଶ୍ରଦ୍ଧାରେ ପୂଜାକରୁଥିବା ସେହି ଦିବ୍ୟ ମୂଷଳକୁ ଆଣି କୁମାର ବସ୍ତ୍ରପ୍ରୀତଙ୍କ ପାଖକୁ ଧାଇଁଲା । କିନ୍ତୁ ଆଜି ସେହି ଦିବ୍ୟ ମୂଷଳ ବ୍ୟର୍ଥ ହୋଇଗଲା । ଦୈତ୍ୟ ଜାଣି ପାରିଲା ଯେ, ତାର ମୃତ୍ୟୁକାଳ ସନ୍ନିକଟ । ମରିବାକୁ ଯାଉଥିବା ଲୋକର ପୁଣି ଭୟ କଣ ? ସେ ପୁନଶ୍ଚ ଅନ୍ୟ ଦିବ୍ୟ ଅସ୍ତ୍ର ସାହାଯ୍ୟରେ ଯୁଦ୍ଧ କଲା । କିନ୍ତୁ ରାଜକୁମାର ତାର ସମସ୍ତ ଅସ୍ତ୍ର ଶସ୍ତ୍ର ବ୍ୟର୍ଥ କରିଦେଲେ ଓ ଶେଷରେ କୁମାର ଏକ ଦିବ୍ୟ ଆଗ୍ନେୟାସ୍ତ୍ର ତା ଗ୍ରୀବାକୁ ଲକ୍ଷ୍ୟ କରି ଛାଡ଼ିଲେ । ସେହି ଦିବ୍ୟ ଅସ୍ତ୍ରର ପ୍ରହାରକୁ ଦୈତ୍ୟ ଆଉ ସହ୍ୟ କରି ପାରିଲା ନାହିଁ । ତାହାର ଗ୍ରୀବା ଫାଟିଗଲା ଓ ବିଶାଳ ବଟବୃକ୍ଷ ସଦୃଶ ସେ ଭୂପୃଷ୍ଠରେ କଚାଡ଼ି ହୋଇ ମରିଲା । ତଳେ ପଡ଼ିଯିବାମାତ୍ରେ ତାର ପ୍ରାଣବାୟୁ ଉଡ଼ିଗଲା । ସେ

ମଣିବା ଦ୍ୱାରା ପାତାଳ ନିବାସୀ ନାଗ ଆଦି ପ୍ରସନ୍ନ ହେଲେ । ସମସ୍ତେ ରାଜକୁମାର ବତ୍ସପ୍ରୀତିଙ୍କୁ ଅଭିନନ୍ଦିତ କଲେ । ପାତାଳପୁରବାସୀଙ୍କ ଦ୍ୱାରା ସତ୍କୃତ ହୋଇ କୁମାର ଚାରୁହାସିନୀ କୃଶୋଦରୀ ପରମ ରୂପବତୀ ମୁଦାବତୀଙ୍କ ନିକଟକୁ ଗଲେ । ତାଙ୍କୁ ସେ ସେହି ବନ୍ଦୀଗୃହରୁ ମୁକ୍ତ କଲେ । ମହାରାଜ ବିଦୂରଥଙ୍କର ଦୁଇପୁତ୍ରଙ୍କୁ ମଧ୍ୟ କାରାବାସରୁ ମୁକୁଳାଇଲେ ଓ ସେମାନଙ୍କୁ ସଙ୍ଗରେ ନେଇ କୁମାର ବତ୍ସପ୍ରୀତି ଆଗେଇ ଚାଲିଲେ । ନାଗମାନେ ତାଙ୍କ ଉପରେ ପୁଷ୍ପ ବୃଷ୍ଟି କଲେ । ଶେଷ ନାଗ ତାଙ୍କୁ ଆଶୀର୍ବାଦ ଦେଲେ ଓ କୁଜୃମ୍ଭ ମରିଯାଇଥିବାରୁ ସେହି ସୁନନ୍ଦ ନାମକ ମୂଷଳକୁ ନାଗରାଜ ଭଗବାନ ଅନନ୍ତ ନିଜ ପାଖରେ ରଖିନେଲେ ଓ ସେହି ମୂଷଳର ସ୍ମୃତି ପାଇ ରାଜକୁମାରୀ ମୁଦାବତୀଙ୍କୁ ସୁନନ୍ଦା ନାମରେ ନାମିତ କଲେ ।

ଏଥର କୁଜୃମ୍ଭକୁ ମାରି, ପାତାଳପୁର ଜୟକରି ଓ ମହାରାଜ ବିଦୂରଥଙ୍କ କନ୍ୟା ଓ ପୁତ୍ରଙ୍କୁ ବନ୍ଧନ ମୁକ୍ତ କରି ବତ୍ସପ୍ରୀତି ମୁଦାବତୀଙ୍କ ପିତାଙ୍କ ନିକଟରେ ଆସି ପହଞ୍ଚିଲେ । ବହୁଦିନ ପରେ ନିଜର କନ୍ୟା ଓ ପୁତ୍ରଙ୍କ ମୁଖ ଦର୍ଶନ କରି ମହାରାଜଙ୍କ ନେତ୍ରରୁ ଆନନ୍ଦାଶ୍ରୁ ବିଗଳିତ ହେବାକୁ ଲାଗିଲା । ସେ ଅତ୍ୟନ୍ତ ସ୍ନେହ ପୂର୍ବକ ବତ୍ସପ୍ରୀତିଙ୍କୁ ଆଲିଙ୍ଗନ କରି କହିଲେ—"ପୁତ୍ର ! ତୁମେ ମୋର ଅତ୍ୟନ୍ତ ଉପକାର କରିଅଛ । ତେଣୁ ମୁଁ ତୁମକୁ ମୋର ଏହି ସର୍ବଗୁଣସମ୍ପନ୍ନା କନ୍ୟା ମୁଦାବତୀକୁ ଅର୍ପଣ କରୁଛି, ତୁମେ ତାକୁ ଧର୍ମପତ୍ନୀ ରୂପେ ଗ୍ରହଣ କରି ଉଭୟେ ଆନନ୍ଦରେ ଗାର୍ହସ୍ଥ୍ୟାଶ୍ରମଧର୍ମ ପାଳନ କର ।" ମହାରାଜାଙ୍କ ମୁଖରୁ ଏହି କଥା ଶୁଣି ବତ୍ସପ୍ରୀତି ମଥାନତ କରି ମୌନ ଭାଷାରେ ସମ୍ମତି ଜଣାଇଲେ । ବତ୍ସପ୍ରୀତିଙ୍କ ସହିତ ମୁଦାବତୀଙ୍କର ବୈଦିକରୀତିରେ ବିବାହ ସମ୍ପନ୍ନ ହେଲା । ବତ୍ସପ୍ରୀତିଙ୍କୁ ପତିରୂପେ ପାଇ ସୁନନ୍ଦା (ମୁଦାବତୀ) ପରମ ପ୍ରୀତ ହେଲେ ଓ ପରମାତ୍ମା ବୁଦ୍ଧିରେ ତାଙ୍କର ପରିଚର୍ଯ୍ୟା କରିବାକୁ ଲାଗିଲେ । କାଳକ୍ରମେ ମୁଦାବତୀଙ୍କ ଗର୍ଭରୁ ବତ୍ସପ୍ରୀତିଙ୍କ ଔରସରେ ବାରଟି ପୁତ୍ର ଉତ୍ପନ୍ନ ହୋଇଥିଲେ । ସେମାନଙ୍କ ନାମ ଯଥାକ୍ରମେ ପ୍ରାଂଶୁ, ପ୍ରବୀର, ଶୂର, ସୁଚକ୍ର, ବିକ୍ରମ, କ୍ରମ, ବଲ, ବାଲକ, ଚଣ୍ଡ, ପ୍ରଚଣ୍ଡ, ସୁବିକ୍ରମ ଓ ସ୍ୱରୂପ ଥିଲା । ଏମାନଙ୍କ ମଧ୍ୟରେ ପ୍ରାଂଶୁ ଜ୍ୟେଷ୍ଠ ଓ ଶ୍ରେଷ୍ଠ ଥିଲେ । ସେ ଗୁଣ ଓ ସହନଶୀଳତାରେ ମଧ୍ୟ ଅଦ୍ୱିତୀୟ ଥିଲେ ।

ସୂତ କହିଲେ—"ମହାରାଜ ! ନିଜର ପିତା ବତ୍ସପ୍ରୀତିଙ୍କର ପରଲୋକ ହୋଇଯିବାରୁ ଜ୍ୟେଷ୍ଠପୁତ୍ର ପ୍ରାଂଶୁ ରାଜସିଂହାସନରେ ଅଭିଷିକ୍ତ ହେଲେ । ପ୍ରାଂଶୁଙ୍କର ପୁତ୍ର ପ୍ରମତି ବା ପ୍ରଜାତି ବଡ଼ ଯଶସ୍ୱୀ ହୋଇ ପାରିଥିଲେ । ପ୍ରମତିଙ୍କର ଖନିତ୍ର, ଶୌରି, ଉଦାବସୁ, ସୁନନ୍ଦ ଓ ମହାରଥ ଏ ପାଞ୍ଚପୁତ୍ର ଥିଲେ । ଏମାନଙ୍କ ମଧ୍ୟରେ ଖନିତ୍ର ହେଉଛନ୍ତି ଜ୍ୟେଷ୍ଠ ପୁତ୍ର । ନିୟମାନୁସାରେ ସେ ରାଜା ହୋଇଥିଲେ । ସେ ନିଜର କ୍ଷତ୍ରିୟୋଚିତ ପରାକ୍ରମ ପାଇଁ ବିଶ୍ୱବିଖ୍ୟାତ ହୋଇପାରିଥିଲେ । ସେ ଅତ୍ୟନ୍ତ ଶାନ୍ତ,

ସତ୍ୟବାଦୀ, ବୀର୍, ପରୋପକାରୀ, ସ୍ୱଧର୍ମ ପରାୟଣ, ଦୟାଳୁ, ବୃଦ୍ଧଜନ ସେବାପରାୟଣ, ଶାସ୍ତ୍ରଜ୍ଞ, ବକ୍ତା, ବିନୟଶୀଳ, ସମସ୍ତ ଅସ୍ତ୍ର-ଶସ୍ତ୍ର ଜ୍ଞାତା, ସର୍ବପ୍ରିୟ ଓ ବ୍ରାହ୍ମଣ ଭକ୍ତ ଥିଲେ । ସେ କେବେହେଲେ କାହାର ସହିତ ବିଦ୍ରୋହ କରୁ ନ ଥିଲେ । ତାଙ୍କର ଅନ୍ୟ କନିଷ୍ଠ ଚାରି ଭାଇ ସେବକଙ୍କ ଭଳି ତାଙ୍କ ଅଧୀନରେ ରହୁଥିଲେ । ମହାରାଜ ଖନିତ୍ର ନିଜ ଚାରିଭାଇଙ୍କୁ ଚାରିଦିଗରେ ପୃଥକ୍ ପୃଥକ୍ ଚାରିଟି ରାଜ୍ୟରେ ଅଭିଷିକ୍ତ କରାଇଥିଲେ ଓ ନିଜେ ସମଗ୍ର ବିଶ୍ୱକୁ ଧର୍ମରେ ପାଳନ କରୁଥିଲେ । ଚାରିଭାଇଙ୍କ ମଧ୍ୟରୁ ପୂର୍ବଦିଗସ୍ଥ ରାଜ୍ୟରେ ଶୌରିଙ୍କୁ, ଦକ୍ଷିଣ ଦିଗସ୍ଥ ରାଜ୍ୟରେ ଉଦାବସୁଙ୍କୁ , ପଶ୍ଚିମ ଦିଗସ୍ଥ ରାଜ୍ୟରେ ସୁନୟନଙ୍କୁ ଓ ଉତ୍ତର ଦିଗସ୍ଥ ରାଜ୍ୟରେ ମହାରଥଙ୍କୁ ଅଭିଷିକ୍ତ କରାଇ ଥିଲେ । ନିଜେ ନିଜ ଭାଇମାନଙ୍କ ପ୍ରତି ସ୍ନେହଭାବ ରଖିଥିଲେ । ପ୍ରତ୍ୟେକ ପ୍ରାଣୀଙ୍କ ଠାରେ ଭଗବଦ୍-ବୁଦ୍ଧିରଖି ପ୍ରତ୍ୟେକଙ୍କ ସହିତ ସମାନ ବ୍ୟବହାର କରୁଥିଲେ । ଏଥିପାଇଁ ବ୍ରାହ୍ମଣଙ୍କ ଦ୍ୱାରା ପ୍ରେରିତ ହୋଇଥିବା 'କୃତ୍ୟା' ତାଙ୍କର କିଛି ଅନିଷ୍ଟ କରିପାରି ନଥିଲା ।"

ଏକଥା ଶୁଣି ଶୌନକ ପଚାରିଲେ—ହେ ସୂତ ! ଧର୍ମାତ୍ମା ମହାରାଜା ଖନିତ୍ରଙ୍କ ନିକଟରେ ବ୍ରାହ୍ମଣମାନେ କାହିଁକି କୃତ୍ୟାକୁ ପଠାଇଥିଲେ ଓ ପୁନଶ୍ଚ ଅଭିଚାର ମନ୍ତ୍ରରେ ରାଜାଙ୍କ ଉପରେ ପ୍ରେରିତ ହୋଇଥିବା କୃତ୍ୟା କିପରି ନିଷ୍ଫଳ ହୋଇଥିଲା ? କୃପାକରି ଏହି କଥା ଆମ୍ଭମାନଙ୍କୁ କହନ୍ତୁ ।"

ଏହା ଶୁଣି ସୂତ କହିଲେ—"ମହାରାଜ ! ପ୍ରାଣୀ ନିଜ ପାପରୁ ହିଁ ଅପମୃତ୍ୟୁ ବରଣ କରେ । ଯଦି ଆମ୍ଭେମାନେ କାହାରି ପ୍ରତି ଦ୍ରୋହ ନ କରି ଅନ୍ତଃକରଣ ନିର୍ମଳ ରଖିବା, ତେବେ ଆମର କେହି କିଛି ଅନିଷ୍ଟ କରି ପାରିବେ ନାହିଁ । ମହାରାଜ ଖନିତ୍ରଙ୍କ ଚରିତରୁ ଏହି ଶିକ୍ଷା ହିଁ ମିଳିଥାଏ । ମୁଁ ମହାରାଜ ଖନିତ୍ରଙ୍କର ଏହି ସମତ୍ୱଭାବପୂର୍ଣ୍ଣ ବୃତ୍ତାନ୍ତ ଆପଣମାନଙ୍କ ନିକଟରେ ପ୍ରକାଶ କରୁଛି, ଆପଣମାନେ ସମାହିତ ଚିତ୍ତରେ ତାହା ଶ୍ରବଣ କରନ୍ତୁ ।"

## ଛପ୍ପୟ

ନୃପ ଖନିତ୍ର ଅତି ବିନୟୀଶୀଳ ସେବକ ବୃନ୍ଦ ନିକେ ।
ଶୌରୀ, ଉଦାବସୁ, ସୁନୟ ମହାରଥ ଭ୍ରାତା ଉନକେ ।।
ଚହୁଁ ଦିଶନିକୋ ରାଜ ଦେୟୋ ଚହୁଁ ଭାଇନକୁଁ ।
ସ୍ୱୟଂ ବନେ ସମ୍ରାଟ ପ୍ରାଣ ସମ ମାନୈଂ ତିନକୁଁ ।।
ଶୌରୀ ସଚିବନେ ଦ୍ରୋହବଶ, ବନ୍ଧୁନମହଁ ବିଗ୍ରହ କରୀ ।
ଶୌରୀ ସିଖାୟୋ ବନ୍ଧୁ ହତି, ହରତୁ ରାଜ୍ୟ ଜଡ଼ମତି ହରୀ ।।

# ଖନିତ୍ର ଚରିତ

(୫୯୯)

ଅହୋ ବତାତ୍ୟଦ୍ଭୁତମେଷ ରକ୍ଷସା
 ବାଲୋ ନିବୃତ୍ତିଂ ଗମିତୋଽଭ୍ୟଗାତ୍ ପୁନଃ ।
ହିଂସ୍ରଃ ସ୍ୱପାପେନ ବିହିଂସିତଃ ଖଲଃ
 ସାଧୁଃ ସମତ୍ୱେନ ଭୟାଦ୍ ବିମୁଚ୍ୟତେ ॥
(ଶ୍ରୀ: ଭା: ୧୦ ସ୍କ:, ୭ ଅ: ୩୧ ଶ୍ଳୋକ)

## ଛପ୍ପୟ

ଶୌରୀ ଲୋଭବଶ ଭୟେ ଦୁଷ୍ଟମନ୍ତ୍ରୀ ମତି ମାନୀ ।
ଅନ୍ୟ ବନ୍ଧୁହୂ ଘୋର ପ୍ରବୋହିତ ସବ ଅଜ୍ଞାନୀ ॥
ଗୃହନ୍ତୁ ମିଲି ଅଭିଚାର ଭୟଙ୍କର ମାରଣ କୀନ୍ହେଁ ।
ପ୍ରକଟୀଂ କୃତ୍ୟା ଚରି ସବନକୁଁ ଦରଶନ ଦୀନ୍ହେଁ ॥
ବୋଲେ—ଜାଇ ଖନିତ୍ର କୁଁ, ମାରେ ପ୍ରମୁଦିତ ସବ ଭଇ ।
ଲୈ ତ୍ରିଶୂଲ ଗର୍ଜ୍ଜନ କରତି, ନୃପ ଖନିତ୍ରକେ ଢିଗଁ ଗଇ ॥

ବିଶୁଦ୍ଧମତି କାହାରି ଦୋଷ ଦେଖେ ନାହିଁ । ସେ ପ୍ରତ୍ୟେକଙ୍କ ଠାରେ ଉତ୍ତମ ଗୁଣ ବିଦ୍ୟମାନ ଥିବାର ଦେଖେ । ହୃଦୟରେ ପାପ ପ୍ରବେଶ କଲେ ଯେ କେହି ପାପୀ ତାହା ଦର୍ଶାଇ ଥାଏ । ହୃଦୟହୀନ ହିଂସା ପରାୟଣ ବ୍ୟକ୍ତି ହିଁ ଲୁଚିଛପି ଅନ୍ୟପ୍ରତି ହିଂସା ଆଚରଣ କରନ୍ତି । ବୀରପୁରୁଷ ଶତ୍ରୁଙ୍କୁ ସାବଧାନ କରି ରଣ କ୍ଷେତ୍ରରେ ରହିକରି ଡାକ ଦେଇଥାଏ । ପ୍ରସ୍ତୁତ ନଥିବା ବ୍ୟକ୍ତି ଉପରେ ପଛରୁ ଯେ ପ୍ରହାର କରନ୍ତି, ସେ ମହାପାପୀ ଅଟନ୍ତି । ପାଷାଣ ହୃଦୟ ଅଟନ୍ତି । ପାପୀ ଉପରେ ଓ ଦ୍ୱେଷୀ ଉପରେ ତ ତାହାର ପ୍ରହାର ତାଙ୍କୁ ସଫଳ କରେ କିନ୍ତୁ ନିରପରାଧ ଭଗବଦ୍ ଭକ୍ତ ଉପରେ ତାହାର ପ୍ରହାର କରିବାରେ କେବେହେଲେ ତାହାର ମଙ୍ଗଳ ହୁଏ ନାହିଁ । ପ୍ରହାରକାରୀ ସ୍ୱୟଂ ନାଶ ହୁଏ । ଯେଉଁ ବ୍ୟକ୍ତି ସର୍ବଭୂତରେ ଆତ୍ମବୁଦ୍ଧି ରଖି ମଧୁର ବାକ୍ୟ ବ୍ୟବହାର କରନ୍ତି ଓ ସମସ୍ତଙ୍କୁ ନିଜର ବନ୍ଧୁ ବୋଲି ମନେ କରନ୍ତି, ଏପରି ସମବୁଦ୍ଧି ପରାୟଣ ବ୍ୟକ୍ତିର ଅନିଷ୍ଟ ଯେଉଁମାନେ ଚିନ୍ତା କରନ୍ତି, ସେମାନଙ୍କର ନିଜର ଅନିଷ୍ଟ ହୋଇଥାଏ । ଏଣୁ

ଶ୍ରେୟାର୍ଥୀ ପୁରୁଷଙ୍କ ପ୍ରତି କେହିହେଲେ କେବେ ମନରେ ଅନିଷ୍ଟ ଚିନ୍ତାକରିବା ଉଚିତ୍ ନୁହେଁ ।

ସୂତ କହିଲେ—"ମୁନିଗଣ ! ଆପଣମାନଙ୍କ ପଗ୍ଚରିବା ଅନୁସାରେ ମୁଁ ପ୍ରମତି ପୁତ୍ର ଖନିତ୍ରଙ୍କ ଚରିତ ବର୍ତ୍ତମାନ ଆପଣମାନଙ୍କ ଆଗରେ ଉପସ୍ଥାପିତ କରୁଛି ।

ଖନିତ୍ର ପ୍ରମତିଙ୍କର ଜ୍ୟେଷ୍ଠପୁତ୍ର ଓ ଶୌରି, ଉଦାବସୁ, ସୁନୟ ଏବଂ ମହାରଥ ଏମାନେ କନିଷ୍ଠପୁତ୍ର ଥିଲେ । ଜ୍ୟେଷ୍ଠପୁତ୍ର ହୋଇଥିବାରୁ ଖନିତ୍ର ସମ୍ରାଟ ହୋଇଥିଲେ ଓ ଅନ୍ୟ ଗ୍ଚରିଭାଇ ତାଙ୍କ ଅଧୀନରେ ମଣ୍ଡଳେଶ୍ୱର ଭୂମିପତି ହୋଇଥିଲେ । ଶୌରିଙ୍କର ଜଣେ ଅତ୍ୟନ୍ତ କୁଟିଳ ସ୍ୱଭାବ ବିଶିଷ୍ଟ କୂଟନୀତିଜ୍ଞ ମନ୍ତ୍ରୀ ଥିଲେ । ତାଙ୍କର ନାମ ବିଶ୍ୱବେଦୀ । ଦିନେ ସେ ଏକାନ୍ତରେ ଶୌରିଙ୍କୁ କହିଲେ—"ରାଜନ୍ ! ଆପଣ ରାଜପୁତ୍ର ହୋଇ ଖନିତ୍ରଙ୍କ ଅଧୀନରେ ରହିବା କଣ ଉଚିତ ?"

ଶୌରି କହିଲେ—"ମନ୍ତ୍ରୀବର ! ଏହା ଚିରକାଳ ସଦାଗ୍ଚର ରୂପେ ଗୃହୀତ ହୋଇଆସୁଛି ଯେ ବଡ଼ଭାଇ ସମ୍ରାଟ ହେବେ ଓ ଅନ୍ୟ ସବୁ ଭାଇ ତାଙ୍କ ଅଧୀନରେ ରହିବେ । ଖନିତ୍ର ଆମ୍ଭମାନଙ୍କର ଜ୍ୟେଷ୍ଠଭ୍ରାତା ଅଟନ୍ତି । ଆମ୍ଭେମାନେ ତାଙ୍କ ଅଧୀନରେ ରହିବା ହିଁ ବିଧେୟ ।"

ବିଶ୍ୱବେଦୀ କହିଲେ—"ଦେଖନ୍ତୁ ମହାରାଜ ! ଯେତେବେଳେ ଆପଣଙ୍କଠାରେ ବଳ ଅଛି, ସେତେବେଳେ ସବୁ ଅଧିକାରର କ୍ଷମତା ମଧ ରହିଛି । ଯାହାଙ୍କ ଅଧୀନରେ ଧନ ସମ୍ପତ୍ତି ତଥା ରାଜ୍ୟ ଅଛି, ତାଙ୍କୁ ସାନ ବଡ଼ ସମସ୍ତେ ଆଦର କରନ୍ତି । ତେଣୁ ଆପଣ ନିଜ ପୌରୁଷ ଓ ଶକ୍ତିରେ ସମଗ୍ର ବିଶ୍ୱର ଶାସକ ହୁଅନ୍ତୁ । କାହା ଅଧୀନରେ ରହିବା ଅପେକ୍ଷା ମୃତ୍ୟୁ ଶତଗୁଣେ ଶ୍ରେଷ୍ଠ । ପରାଧୀନତା, ଦାସତ୍ୱ ଓ ପରତନ୍ତ୍ରତା ଠାରୁ ବଳି ଅଭିଶପ୍ତ ଜୀବନ ଆଉ ନାହିଁ । ଏଣୁ ଆପଣ ପରାଧୀନତାର ଶୃଙ୍ଖଳକୁ କାଟି ତହିଁରୁ ମୁକ୍ତ ହୋଇ ସ୍ୱାଧୀନ ସମ୍ରାଟ ହୁଅନ୍ତୁ ।"

ଏହା ଶୁଣି ଶୌରି କହିଲେ—"ବଡ଼ ଭାଇ ହେଉଛନ୍ତି ପିତାଙ୍କ ସମାନ । ମହାରାଜ ଖନିତ୍ର ଆମ୍ଭମାନଙ୍କୁ ପୁତ୍ର ସମାନ ସ୍ନେହ କରନ୍ତି । ବ୍ୟବହାରରେ ତାଙ୍କର କୌଣସି ଭେଦଭାବ ନାହିଁ । ତାଙ୍କ ସହିତ ଯୁଦ୍ଧ କରିବା ଓ ତାଙ୍କଠାରୁ ରାଜ୍ୟ ଉଚ୍ଛେଦ କରି ନିଜେ ସମ୍ରାଟ ହେବା ତ ନ୍ୟାୟ ଓ ସଦାଗ୍ଚର ବିରୁଦ୍ଧ ।"

ବିଶ୍ୱବେଦୀ କହିଲେ—"ରାଜନ୍ ! ନ୍ୟାୟ ଓ ଧର୍ମର ଦୁହାଇ ଦେବା ତ ଦୁର୍ବଳ ପୁରୁଷର ଲକ୍ଷଣ । କାରଣ ତା ଠାରେ ଶକ୍ତି ନ ଥାଏ । କେହି ତା ପ୍ରତି ଯଦି ଅନ୍ୟାୟ

ଆଚରଣ କରେ, ତେବେ ସେ ତାହାର ପ୍ରତିକାର କରିବାକୁ ସମର୍ଥ ନ ହୋଇ କେବଳ ଚିତ୍କାର କରେ ଯେ, ମୋ ପ୍ରତି ଅନ୍ୟାୟ ଆଚରଣ କରାଯାଉଛି । ଏହା ଅନ୍ୟାୟ, ପାପ ଇତ୍ୟାଦି ।" ଏପରି ଦୁର୍ବଳ ଲୋକଙ୍କ କଥା କେତେଜଣ ଶୁଣନ୍ତି ? ଯେ ନିଜକୁ ନିଜେ ରକ୍ଷାକରି ନ ପାରନ୍ତି, ପରମାତ୍ମା ମଧ୍ୟ ତାଙ୍କୁ ରକ୍ଷାକରି ପାରନ୍ତି ନାହିଁ । ଏଣୁ ହେ ରାଜନ୍ ! ଏ ପ୍ରକାର ନ୍ୟାୟ ଧର୍ମର କୁ ପରାମର୍ଶକୁ ପରିତ୍ୟାଗ କରନ୍ତୁ । ରାଜ୍ୟରେ, ଅଧିକାରରେ, ଧନ ସମ୍ପତ୍ତିରେ ବଡ଼ ସାନର ବିଚାର ନାହିଁ । ଏ ବସୁନ୍ଧରା ବୀରଭୋଜ୍ୟା ଯାହା ବାହୁରେ ବଳ ଅଛି, ସେ ଶାସକ, ସେହି ହିଁ ରାଜା । ଯାହା ହାତରେ ଠେଙ୍ଗା ଅଛି, ତାହାର ମଇଁଷି । ତେଣୁ ହେ ରାଜନ୍ ! ମୋ ବୁଦ୍ଧିରେ ପରିଚାଳିତ ହୋଇ ନିଜର ଲାଭ ଉଠାନ୍ତୁ । ଆପଣ ସମ୍ରାଟ ହୋଇ ଇହ ଲୋକରେ ଆନନ୍ଦରେ ଅବସ୍ଥାନ କରନ୍ତୁ ଓ ଧର୍ମରେ ବଡ଼ ବଡ଼ ଯଜ୍ଞ କରି ଧର୍ମ ମଧ୍ୟ କରନ୍ତୁ । ଇହଲୋକରେ ଦିବ୍ୟ ସୁଖ ଭୋଗ କରନ୍ତୁ । ଦେଖନ୍ତୁ ଯଦି ଭାଇଙ୍କର ସେବା କରିବାର କଥା, ତେବେ ଯେତେବେଳେ ଧନ ବୃଦ୍ଧିପାଇବ, ସେତେବେଳେ ଯଥେଷ୍ଟ ଧନ ପ୍ରଦାନ କରି ଭାଇର ସେବା କରନ୍ତୁ ।"

ସୂତ କହିଲେ—"ମୁନିଗଣ ! ଲୋଭ ଅତ୍ୟନ୍ତ ନିନ୍ଦନୀୟ ବସ୍ତୁ । ଧନ ସମ୍ପତ୍ତି ତଥା ଅଧିକାର ଆଦିର ତୃଷ୍ଣା ମନୁଷ୍ୟର ବିବେକକୁ ଗ୍ରାସ କରିଥାଏ । ସ୍ୱାର୍ଥ ଧର୍ମବୁଦ୍ଧିକୁ ବିନାଶ କରେ । ଶୌଚି ନିଜ କୁର ମନ୍ତ୍ରୀର କୁଟ ଚକ୍ରାନ୍ତରେ ପଡ଼ିଗଲେ । ସେ ନିଜ ବଡ଼ ଭାଇଙ୍କ ରାଜ୍ୟ ଅଧିକାର କରିବା ପାଇଁ ବିଶ୍ୱଦେବୀଙ୍କ ପ୍ରରୋଚନାରେ କାର୍ଯ୍ୟ କରିବାକୁ ଲାଗିଲେ ଓ ତାଙ୍କ ସଙ୍କେତ ଅନୁସାରେ ତାଳେ ତାଳେ ପାଦ ପକାଇଲେ ।"

ଯେତେବେଳେ ଶୌଚିଙ୍କୁ ନିଜର ହାତମୁଠାକୁ ଘେନିଆସିଲେ, ସେତେବେଳେ ଅନ୍ୟ ସାନ ଭାଇଙ୍କୁ ମଧ୍ୟ କୁମନ୍ତ୍ରଣା ଦେବାକୁ ଆରମ୍ଭ କଲେ । ସେମାନଙ୍କୁ ମଧ୍ୟ ଖନିନେତ୍ରଙ୍କ ବିରୁଦ୍ଧରେ ମତାଇଲେ । ମହାରାଜ ଖନିନେତ୍ର ଏତେ ପ୍ରତାପୀ ଥିଲେ ଯେ ତାଙ୍କ ସମ୍ମୁଖୀନ ହୋଇ ଯୁଦ୍ଧ କରିବାକୁ କେହି ହେଲେ ସାହସ କରୁ ନଥିଲେ । ବିଶ୍ୱବେଦୀ ତନ୍ତ୍ର, ମନ୍ତ୍ର, ଅଭିଚାର ଓ ପୁରଶ୍ଚରଣ ଆଦିର ଆଶ୍ରୟ ନେଲେ । ସେ ଚାରି କୁମାରଙ୍କର ପୁରୋହିତମାନଙ୍କ ଦ୍ୱାରା ପୁରଶ୍ଚରଣ କରାଇଲେ । ସେ ଚାରିଜଣ ପୃଥକ୍ ପୃଥକ୍ ମାରଣ ପ୍ରୟୋଗ କରିବାକୁ ଲାଗିଲେ । ସେମାନଙ୍କର ଅଭିଚାରିକ କୃତ୍ୟ ଦ୍ୱାରା ତୀକ୍ଷ୍ଣ ଦାଢ଼ି ବିଶିଷ୍ଟ ଚାରୋଟି ଭୟଙ୍କର କୃତ୍ୟା ଉତ୍ପନ୍ନ ହେଲେ । ସେମାନେ ପୁରୋହିତଙ୍କୁ ପଚାରିଲେ—"ଆମକୁ ବର୍ତ୍ତମାନ କଣ କରିବାକୁ ହେବ କହନ୍ତୁ ?"

ପୁରୋହିତ କହିଲେ—"ତୁମେ ଯାଇ ମହାରାଜ ଖନିନେତ୍ରଙ୍କୁ ମାରିଦିଅ ।" ଏହାଶୁଣି ସେମାନେ ଖନିନେତ୍ରଙ୍କୁ ମାରିବାକୁ ଭିନ୍ନ ଭିନ୍ନ ଦିଗରେ ଚାଲିଲେ । ମହାରାଜ ଧର୍ମାତ୍ମା ଥିଲେ,

ସମଦର୍ଶୀ ଥିଲେ ଓ ବିଷ୍ଣୁଭକ୍ତ ଥିଲେ । ତେଣୁ ତାଙ୍କୁ ଆକ୍ରମଣ କରିବା ପାଇଁ କୃତ୍ୟାମାନେ ସାହସ କଲେ ନାହିଁ । ଅଭିଚାରିକ ପ୍ରୟୋଗର ଏପରି ନିୟମ ଅଛି ଯେ, ଯାହାଙ୍କ ଉପରକୁ କୃତ୍ୟା ପେଷାଯାଏ, ଯଦି ସେ କୌଣସି କାରଣରୁ ତାଙ୍କ ପାଖରେ ପହଞ୍ଚି ନପାରେ, ତେବେ ସେ ପ୍ରେରଣକାରୀଙ୍କୁ ଓଲଟି ମାରିଦିଏ । ଏ କୃତ୍ୟାମାନେ ଯେତେବେଳେ ରାଜାଙ୍କ ସମ୍ମୁଖକୁ ଯିବାକୁ ସାହସ କଲେ ନାହିଁ, ଯେତେବେଳେ ଲେଉଟି ଆସି ପୁରୋହିତମାନଙ୍କୁ ଓ ପୁରଶ୍ଚରଣ କରାଉଥିବା ଶୌରିଙ୍କ ମନ୍ତ୍ରୀ ବିଶ୍ୱ-ଦେବୀଙ୍କୁ ମାରିଦେଲେ ।

ମହାରାଜ ଖନନ୍ଦ ଯେତେବେଳେ ଶୁଣିଲେ ଯେ ଏକ ସମୟରେ ଭିନ୍ନ ଭିନ୍ନ ସ୍ଥାନରେ ଗୁରୁ ପୁରୋହିତ ଓ ଶୌରିଙ୍କ ମନ୍ତ୍ରୀ ବିଶ୍ୱଦେବୀ ମୃତ୍ୟୁବରଣ କରିଛନ୍ତି ସେତେବେଳେ ସେ ଅତ୍ୟନ୍ତ ବିସ୍ମିତ ହେଲେ । ଦୈବଯୋଗକୁ ଠିକ୍ ସେହିକ-ବେଳେ ତାଙ୍କ କୁଳପୁରୋହିତ ଭଗବାନ୍ ବଶିଷ୍ଠ ସେଠାରେ ଆସି ପହଞ୍ଚି ଥାଆନ୍ତି । ମହାରାଜ ଖନନ୍ଦ ପଚାରିଲେ—“ଭଗବାନ୍ ! ମୋର ଗୁରୁଭାଇଙ୍କ ପୁରୋହିତ ଓ ଶୌରିର ମନ୍ତ୍ରୀ ବିଶ୍ୱଦେବୀ ହଠାତ୍ ବସିଥିବା ଅବସ୍ଥାରେ ଏକ ସମୟରେ କିପରି ମୃତ୍ୟୁ ବରଣ କଲେ ? ଏହାତ ଅତି ଅଦ୍ଭୁତ ଘଟଣା ?”

ଏହାଶୁଣି ବଶିଷ୍ଠ କହିଲେ—“ରାଜନ୍, ଆପଣ ତ ସାଧୁ ପ୍ରକୃତିର ଲୋକ । ଆପଣ ତ ଅଜାତଶତ୍ରୁ ଅଟନ୍ତି । ସଂସାରରେ ଆପଣ କାହାକୁ ହେଲେ ନିଜର ଶତ୍ରୁ ବୋଲି ମନେ କରନ୍ତି ନାହିଁ । କିନ୍ତୁ ମହାରାଜ ! ଦୁଷ୍ଟ ଲୋକମାନେ ସାଧୁ ପୁରୁଷ—ମାନଙ୍କୁ ବିନା କାରଣରେ ଦ୍ୱେଷ କରି ଥାଆନ୍ତି । ତାଙ୍କର ଐଶ୍ୱର୍ଯ୍ୟ ଓ ପ୍ରଭାବକୁ ଦେଖି ସେମାନଙ୍କର ସର୍ବଦା ଗାତ୍ରଦାହ ହେଉ ଥାଏ । ନିଜେ ସେପରି କେବେ ହୋଇ-ପାରନ୍ତି ନାହିଁ କି ସେ ପଦବୀ ପାଇପାରନ୍ତିନାହିଁ । କିନ୍ତୁ ଈର୍ଷାବଶ ହୋଇ ସେମାନଙ୍କର ଅନିଷ୍ଟ ସର୍ବଦା ଚିନ୍ତା କରୁଥାଆନ୍ତି । ଶୌରିଙ୍କ ମନ୍ତ୍ରୀ ଶିଶୁଦେବୀଙ୍କ ପ୍ରରୋଚନାରେ ଗୁରୁ ପୁରୋହିତ ଆପଣଙ୍କ ଉଦ୍ଦେଶ୍ୟରେ ମାରଣ ପ୍ରୟୋଗ କରୁଥିଲେ । ସେଥିରୁ କୃତ୍ୟାମାନେ ଉତ୍ପନ୍ନହୋଇ ଆପଣଙ୍କୁ ମାରିବାକୁ ଆସିଲେ କିନ୍ତୁ ଆପଣ ଧର୍ମାତ୍ମା, ସମଦର୍ଶୀ ହୋଇଥିବାରୁ ସେହି ତମୋଗୁଣୀ କୃତ୍ୟାମାନେ ଆପଣଙ୍କ ସମ୍ମୁଖକୁ ଯିବାକୁ ସାହସ କଲେ ନାହିଁ । ତେଣୁ ସେମାନେ ଲେଉଟି ଆସି ଏହି ପାଞ୍ଚଜଣଙ୍କୁ ମାରିଦେଲେ ।”

ମହାରାଜ ଖନନ୍ଦ ଏକଥା ଶୁଣିବା ମାତ୍ରେ ମୂର୍ଚ୍ଛିତ ହୋଇଗଲେ । ମୂର୍ଚ୍ଛା ଭଙ୍ଗ ପରେ ବାରମ୍ବାର କହିବାକୁ ଲାଗିଲେ—“ମୁଁ ଅତି ଅଧମ, ମହାପାପୀ, ମୋ ଯୋଗୁଁ ବ୍ରାହ୍ମଣମାନେ ମୃତ୍ୟୁବରଣ କଲେ ।”

ଭଗବାନ ବଶିଷ୍ଠ କହିଲେ—"ରାଜନ୍ ! ଏଥିରେ ଆପଣଙ୍କର କଣ ଅପରାଧ ? ସେମାନେ ଯେପରି ପାପକର୍ମ କଲେ, ସେପରି ଫଳ ଭୋଗିଲେ ।"

ରାଜା କହିଲେ—"ବ୍ରହ୍ମନ୍ ! ପୁରୋହିତମାନେତ ନିଜ ନିଜ ପ୍ରଭୁଙ୍କର ହିତ କାମନା କରୁଥିଲେ, ଏଣୁ ସେମାନେ କିପରି ପାପୀ ହୋଇପାରିବେ । ମୁଁ ପାପୀ ମୋ ଯୋଗୁଁ ବ୍ରାହ୍ମଣ ଗୃହିଣି ପ୍ରାଣବଳି ଦେଇଥିବାରୁ ମୋ ରାଜାପଣିଆକୁ ମୁଁ ଶତଧିକ୍କାର କରୁଛି । ମୋ ସମ୍ପତ୍ତି ଓ ରାଜ୍ୟ ଶାସନକୁ ଧିକ୍କାର କରୁଛି । ମୁଁ ଆଜି ଏ ରାଜସିଂହାସନରେ ବସିବି ନାହିଁ ।" ଏପରି କହି ରାଜା ନିଜର ପୁତ୍ର ଋଷୁଣଙ୍କୁ ତାଙ୍କ ରାଜସିଂହାସନରେ ଅଭିଷିକ୍ତ କଲେ ଓ ନିଜେ ରାଣୀମାନଙ୍କ ସହିତ ବନକୁ ଯାଇ ଘୋର ତପସ୍ୟା କରିବାକୁ ଲାଗିଲେ । ଶହ ଶହ ବର୍ଷ ତପସ୍ୟା କରି ସେ ନିଜର ଶରୀରକୁ କ୍ଷୀଣ କରିଦେଲେ ଓ ଶେଷରେ ଶରୀର ତ୍ୟାଗ କରି ଅକ୍ଷୟ ଲୋକକୁ ଗଲେ । ତାଙ୍କର ପତ୍ନୀମାନେ ମଧ୍ୟ ତାଙ୍କର ଅନୁସରଣ କଲେ ଏବଂ ସେମାନେ ମଧ୍ୟ ନିଜର ପତିଲୋକକୁ ପ୍ରାପ୍ତ ହେଲେ ।

ମହାରାଜ ଋଷୁପ ଅତ୍ୟନ୍ତ ଧର୍ମାତ୍ମା ଥିଲେ । ତାଙ୍କର ପୁତ୍ର ନାମ ବିବିଂଶତି । ସେହି ବିବିଂଶତି ଅତ୍ୟନ୍ତ ପରାକ୍ରମୀ, ବୀର, ଦାନୀ ଓ ବ୍ରାହ୍ମଣ ଭକ୍ତଥିଲେ । ସେ ଯେତେବେଳେ ରାଜସିଂହାସନ ଆରୋହଣ କଲେ, ସେତେବେଳେ ପ୍ରଜାମାନେ ଅତ୍ୟନ୍ତ ପ୍ରସନ୍ନ ହେଲେ । ତାଙ୍କ ପୁତ୍ରର ନାମ ରମ୍ଭ ଓ ରମ୍ଭଙ୍କ ପୁତ୍ରର ନାମ ଖନିନେତ୍ର । ଏହି ଖନିନେତ୍ର ଏତେ ଧର୍ମାତ୍ମା ଓ ଯଜ୍ଞଶୀଳ ଥିଲେ ଯେ ସେ ନିରନ୍ତର ଯଜ୍ଞ କର୍ମରେ ଲିପ୍ତ ରହିଲେ । କିମ୍ବଦନ୍ତୀ ଅଛି ଯେ ସେ ୭୭ ହଜାର ୭୭ ଶହ ୭୭ଟି ଯଜ୍ଞ ଅନୁଷ୍ଠାନ କରିଥିଲେ । ଅପୁତ୍ରିକ ଥିବାରୁ ଏହି ଧର୍ମାତ୍ମା ରାଜା ଗୌତମୀ ତଟରେ ପୁତ୍ର କାମନାରେ ଘୋର ତପସ୍ୟା କରି ଶତକ୍ରତୁ ଦେବଙ୍କୁ ସ୍ତୁତିକଲେ । ଏହାଦ୍ୱାରା ଶତକ୍ରତୁ ପ୍ରସନ୍ନ ହୋଇ ଅତ୍ୟନ୍ତ ତେଜସ୍ୱୀ ଧର୍ମପ୍ରାଣ ପୁତ୍ର ହେବାପାଇଁ ତାଙ୍କୁ ଆଶୀର୍ବାଦ କଲେ ଓ ସେହି ପୁତ୍ର କରନ୍ଧମ ନାମରେ ବିଶ୍ୱରେ ପ୍ରସିଦ୍ଧି ଲାଭ କରିଥିଲେ ।

ଶୌନକ କହିଲେ—"ହେ ସୂତ ! ଆପଣତ ଶୀଘ୍ର ଶୀଘ୍ର କହି ଯାଉଛନ୍ତି । ମହାରାଜ ଖନିନେତ୍ର ତଥା ତାଙ୍କ ପୁତ୍ର କରନ୍ଧମଙ୍କ ଚରିତ ଆମ୍ଭମାନଙ୍କୁ ଭଲଭାବେ ବୁଝାଇ କୁହନ୍ତୁ ।"

ସୂତ କହିଲେ—"ମୁନିଗଣ ! ଯଦି ମୁଁ ଏହିପରି ପ୍ରତ୍ୟେକ ରାଜାଙ୍କର ଚରିତ ଆପଣ ମାନଙ୍କୁ ଶୁଣାଇବି, ତାହାହେଲେ ଏ ରାଜବଂଶ ଚରିତ ଶେଷ ହୋଇପାରିବ ନାହିଁ । ତେଣୁ ମୁଁ ଏମାନଙ୍କ ଚରିତ ସଂକ୍ଷେପରେ କହି ଅବତାର ପ୍ରସଙ୍ଗ ଶୁଣାଇବି ।"

## ଛପ୍ପୟ

ନିରଖି ନୃପତି ଅତି ତେଜ ଡରୀ କୃତ୍ୟା, ଘବରାଇ
ନୃପ ତନୁ ପରସେ୍ୟା ନାହିଁ ଲୌଟି ତିନହୀଂପେ ଆଇ”
ସହିତ ପୁରହିତ ଗୃହ ବିଶ୍ୱବେଦ ହୂ ମାରେ୍ୟା ।
ସୁନି ଖନିତ୍ର ସବ ବୃତ୍ତ ରାଜ ତଜି ବନହିଁ ସିଧାରେ୍ୟା ”
କ୍ଷୁପ ପୁତ୍ର ଖନିତ୍ର କେ, କ୍ଷୁପ କେ ସୁତ ବିବିଶତି ।
ରମ୍ଭ ବିବିଶତି କେ ଭୟେ, ଜନି ଖନିନେତ୍ରହୁ ଭୂମିପତି ”



# ଖନିନେତ୍ର ଓ କରନ୍ଧମ ଚରିତ

**ବିବିଂଶତେ ସୁତୋ ରମ୍ଭଃ ଖନିନେତ୍ରୋଽସ୍ୟ ଧାର୍ମିକଃ ।**
**କରନ୍ଧମୋ ମହାରାଜ ତସ୍ୟାସୀଦାତ୍ମଜୋ ନୃପ ।**

(ଶ୍ରୀ: ଭା: ୯ ସ୍କ: ୨ ଅ: ୨୫ ଶ୍ଳୋକ)

## ଛପ୍ପୟ

କୌନ ନୃପତି ଖନିନେତ୍ର ସଦୃଶ ମଖ କରୈ କରିବୈ ।
କୌନ ଇନ୍ଦ୍ର କରି ତୁଷ୍ଟ କରନ୍ଧମ ସମ ସୁତ ପାବୈ ।।
ଶତ୍ରୁ ସୈନ କରି ଦାହ କରନ୍ଧମ ଭୂପ କହାୟେ ।
ବୀର୍ଯ୍ୟଚନ୍ଦ୍ର ନୃପ ସୁତା ସ୍ୱୟମ୍ବରତେଁ ବର ଲୟେ ।।
ପୁତ୍ର ଅବୀକ୍ଷିତ ତାସୁତେ, ଗର୍ଭ ମାହିଁ ପୈଦା ହୁୟେ ।
ସୂର୍ଯ୍ୟବଂଶମହଁ ଏକ ତେଁ, ଏକ ଖ୍ୟାତ ନୃପ ହ୍ୱୈ ଗୟେ ।।

ଏ ଶରୀର ନଶ୍ୱର, ଏହା ଉତ୍ପନ୍ନ ହୁଏ ଓ ନାଶ ହୋଇଯାଏ । ୮୪ ଲକ୍ଷ ଯୋନି ସର୍ବଦା ଭ୍ରମଣ କରୁଥାଏ । ଏହିପରି ପ୍ରତିଦିନ ପ୍ରତ୍ୟେକ ଯୋନିରେ କେତେ ଯେ ପ୍ରାଣୀ ଜନ୍ମ ହୁଅନ୍ତି ଓ ମରନ୍ତି ତାହାର କୌଣସି ହିସାବ ନାହିଁ । ଯେଉଁ ଶରୀର ସୃଷ୍ଟି ହୁଏ, ତାହାର ବିନାଶ ଅବଶ୍ୟମ୍ଭାବୀ । କିନ୍ତୁ ଶରୀର ନାଶ ହୋଇଗଲେ ମଧ୍ୟ କୀର୍ତ୍ତିକୁ ସଂସାରରେ ସମସ୍ତେ ଗାନ କରନ୍ତି । ଏହିପରି ପୁଣ୍ୟଶ୍ଳୋକମାନଙ୍କର ଚରିତ ଆମ୍ଭେମାନେ ପ୍ରେମପୂର୍ବକ ପାଠ କରିଥାଉଁ । ସେହିମାନେହିଁ ଧନ୍ୟ, ସେହିମାନେହିଁ ମୂଲ୍ୟବାନ୍ । ସୁଯଶ ହିଁ ସେମାନଙ୍କୁ ଚିରଦିନ ବଞ୍ଚାଇରଖେ । ସେମାନେ ସର୍ବଦା ଅଜର ଅମର ରହନ୍ତି । ଯେଉଁ ଧନ ଧର୍ମକାର୍ଯ୍ୟରେ ବ୍ୟୟ ହୁଏ, ତାହା ଯଥାର୍ଥ ଧନ । ତାହାହିଁ ଯଶ ରକ୍ଷାକରେ । ଏହା ବ୍ୟତୀତ ଯେତେ ସୁବର୍ଣ୍ଣ ସଂଗ୍ରହ କର, ଯେତେ ରୌପ୍ୟ ଏକତ୍ରିତ କର, ଯେତେ ଭବନ ନିର୍ମାଣକର, ଏ ସମସ୍ତ ଯଥା ସ୍ଥାନରେ ପଡ଼ି ରହେ । ମାଟି ମାଟିରେ ମିଶିଯାଏ । ସେହି କୃପଣଙ୍କୁ କେହି ଖାତିରକରନ୍ତି ନାହିଁ ଓ କେହି ମଧ୍ୟ ଜାଣନ୍ତି ନାହିଁ, ଯାହାଙ୍କ ଚରିତ ଆଜ ଆମେ ପାଠକରୁଥାଉଁ, ପାଠକର ଅଶ୍ରୁ

ବିସର୍ଜନ କରୁଥାଉଁ, ଆନନ୍ଦିତ ହେଉଥାଉଁ, ଉତ୍ସାହିତ ହେଉଥାଉଁ ତନ୍ମଧ୍ୟରୁ ଗୋଟିଏ ମାତ୍ର ଗୁଣ ଯଦି ଆମ ଜୀବନରେ ପ୍ରଭାବ ପକାଏ, ତେବେ ଆମର ଚରିତ ପାଠକରିବା ସାର୍ଥକ ହୁଏ ଓ ଜୀବନ ଧନ୍ୟହୁଏ । ଅନ୍ୟଥା ଏହା କେବଳ ବ୍ୟସନରେ ପରିଣତହୁଏ ।

ସୂତ କହିଲେ—"ମୁନିଗଣ ! ଆପଣମାନେ ମୋତେ ବିବିଂଶଙ୍କ ପୌତ୍ର ଖନନେତ୍ରଙ୍କ ଚରିତ ସମ୍ବନ୍ଧରେ କହିବାକୁ କହିଥିଲେ । ଏହି ରାଜା ନିଜ ଯଶରେ ଏପରି ବିଖ୍ୟାତ ହୋଇପାରିଥିଲେ ଯେ, ତାଙ୍କ ରାଜତ୍ୱକାଳରେ ରାଜସଭାକୁ ସ୍ୱର୍ଗରୁ ଗନ୍ଧର୍ବଗଣ ଆସି ତାଙ୍କର ଯଶଗାନ କରୁଥିଲେ । ପ୍ରତେକ ପୁରୁଷ ସଭାମାନଙ୍କରେ ତାଙ୍କ ଚରିତ ଗାଥା ପ୍ରସିଦ୍ଧିଲାଭ କରିଥିଲା । ମହାରାଜ ଖନନେତ୍ରଙ୍କ ପରି ଅନ୍ୟ କୌଣସି ରାଜା ଏ ପୃଥିବୀ ପୃଷ୍ଠରେ ଆଉ ଜନ୍ମ ହେବେନାହିଁ, କାରଣ ସେ ଦଶସହସ୍ର ଯଜ୍ଞ ପୂର୍ତ୍ତି କରି ଏହି ସମଗ୍ର ବସୁନ୍ଧରାକୁ ଦାନ ଦେଇଥିଲେ । ପରେ ତପସ୍ୟା ବଳରେ ଦ୍ରବ୍ୟ ଏକତ୍ରିତ କରି ଏହାର ମୂଲ୍ୟ ସ୍ୱରୂପ ପ୍ରଦାନକରି ପୁନରାୟ ତାହା ଛଡ଼ାଇଥିଲେ । ମୁଁ ପ୍ରଥମରୁ କହିଛି ଯେ ସେ ୬୭ ହଜାର ୬୭ ସହ ୬୭ ଯଜ୍ଞ କରିଥିଲେ । ଯେଉଁ ଯଜ୍ଞରେ କି ସେ ଧନପ୍ରତି ଲୋଭନକରି ବ୍ରାହ୍ମଣ ତଥା ଅନ୍ୟାନ୍ୟ ଯାଚକମାନଙ୍କୁ ଇଚ୍ଛାନୁସାରେ ଯଥେଷ୍ଟ ଦ୍ରବ୍ୟ ଦାନ ଦେଇଥିଲେ । ଏଥିପାଇଁ ସଂସାରରେ ତାଙ୍କର କୀର୍ତ୍ତି ଆଜି ପର୍ଯ୍ୟନ୍ତ ଅଜର ଅମରହୋଇ ରହିଅଛି । ଏହି ଯଶ-ଶରୀରରେ ଏ ପର୍ଯ୍ୟନ୍ତ ସେ ପୂର୍ବପରି ଜୀବିତ ରହିଛନ୍ତି ।

ମହାରାଜ ଖନନେତ୍ରଙ୍କର କୌଣସି ସନ୍ତାନ ନଥିଲେ । ଏଥିପାଇଁ ସେ ଚିନ୍ତିତ ଥିଲେ ଯେ, ତାଙ୍କ ଅନ୍ତେ ପିତୃପିଣ୍ଡ ତର୍ପଣ କିଏ କରିବ । ଶେଷରେ ପୁତ୍ରପ୍ରାପ୍ତି ପାଇଁ ସେ ତପ କରିବାପାଇଁ ସ୍ଥିରକଲେ । ପାପନାଶିନୀ ଗଙ୍ଗାତୀରକୁ ଯାଇ ସେ ପୁତ୍ର କାମନାରେ ଇନ୍ଦ୍ରଙ୍କୁ ସ୍ତୁତି କରିବାକୁ ଲାଗିଲେ ।

ତାଙ୍କର ତପସ୍ୟା ଓ ସ୍ତୁତିରେ ସନ୍ତୁଷ୍ଟ ହୋଇ ସୁରେଶ୍ୱର ଶତକ୍ରତୁ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ଓ ପ୍ରସନ୍ନ ବଦନରେ ମହାରାଜ ଖନନେତ୍ରଙ୍କୁ କହିଲେ— ରାଜନ୍ ! ମୁଁ ତୁମ ଉପରେ ସନ୍ତୁଷ୍ଟ ହୋଇଅଛି । ତୁମେ ଯେଉଁ ବର ଚାହୁଁଛ ମୋଠାରୁ ମାଗିନିଅ ।"

ଏହାଶୁଣି ମହାରାଜ ଖନନେତ୍ର ନମ୍ରତା ସହକାରେ ନତମସ୍ତକ ହୋଇ ବାରମ୍ବାର ଦେବେନ୍ଦ୍ରଙ୍କୁ ପ୍ରଣାମ କରି କହିଲେ – ହେ ଦେବେନ୍ଦ୍ର ! ଆପଣ ଯଦି ମୋ ଉପରେ ପ୍ରସନ୍ନ ହୋଇଛନ୍ତି, ତେବେ ମୋତେ ଗୋଟିଏ ସର୍ବଗୁଣ ସମ୍ପନ୍ନ ପୁତ୍ର ବର ଦିଅନ୍ତୁ, ଯେ କି ଧର୍ମପରାୟଣ ହେବ ଓ ଧର୍ମରେ ପ୍ରଜା ପାଳନ କରି ପ୍ରଜାମାନଙ୍କୁ ପୁତ୍ର ଭଳି ଦେଖିବ ।"

ଇନ୍ଦ୍ର ଏହା ଶୁଣି କହିଲେ—"ରାଜନ୍ ! ତାହା ହିଁ ହେବ । ଆପଣଙ୍କର ସର୍ବଶାସ୍ତ୍ରଜ୍ଞାନପୂର୍ଣ, ଅକ୍ଷୟ ଐଶ୍ୱର୍ଯ୍ୟଯୁକ୍ତ, ଧର୍ମଜ୍ଞ, ସର୍ବଶ୍ରେଷ୍ଠ ସତ୍ୟବାଦୀ, ଧର୍ମାତ୍ମା ପୁତ୍ରଜାତ ହେବ ।" ଏହା କହି ଶତକ୍ରତୁ ଭଗବାନ୍ ଇନ୍ଦ୍ର ସେଠାରେ ଅନ୍ତର୍ଦ୍ଧାନ ହୋଇଗଲେ । ନିଜର ମନୋରଥ ପୂର୍ଣ୍ଣ ହୋଇଥିବାରୁ ରାଜା ମଧ୍ୟ ନିଜ ରାଜ ପ୍ରାସାଦକୁ ଫେରି ଆସିଲେ । ରାଜା ବନରୁ ଫେରି ଆସିଥିବାରୁ ପ୍ରଜାବର୍ଗ ତାଙ୍କୁ ଆନନ୍ଦ ମନରେ ସ୍ୱାଗତ ସମ୍ବର୍ଦ୍ଧନା କଲେ ଓ ସେ କୃତକାର୍ଯ୍ୟ ହୋଇଥିବା ଜାଣି ଅଭିନନ୍ଦନ କଲେ ।

କିଛିକାଳ ପରେ ଦେବେନ୍ଦ୍ରଙ୍କର କୃପା ଓ ବର ପ୍ରଭାବରେ ସୌଭାଗ୍ୟବତୀ ରାଜମହିଷୀଙ୍କଠାରୁ ଏକ ପୁତ୍ର ଜାତ ହେଲା । ରାଜା ଏ ସମ୍ବାଦ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ବେଦଜ୍ଞ ବ୍ରାହ୍ମଣ ମାନଙ୍କୁ ଡକାଇ ବିଧି ପୂର୍ବକ ପୁତ୍ରର ଜାତକର୍ମ ଆଦି ସମ୍ପାଦନ କରାଇ ତାହାର ନାମ ବଳାଶ୍ୱ ରଖିଲେ । କାଳକ୍ରମେ ମହାରାଜ ଖନିନେତ୍ର ପରଲୋକଗାମୀ ହେଲେ । ଏହାପରେ ପ୍ରଜାବର୍ଗ ରାଜକୁମାର ବଳାଶ୍ୱଙ୍କୁ ରାଜ-ସିଂହାସନରେ ଅଭିଷିକ୍ତ କରାଇଲେ । ସେ ମଧ୍ୟ ନିଜର ପିତା ପିତାମହଙ୍କ ଭଳି ପ୍ରଜାମାନଙ୍କୁ ପୁତ୍ରବତ୍ ପାଳନ କଲେ । ମହାରାଜଙ୍କର ଅଲୌକିକ ତଥା ଅଦ୍ଭୁତ ଶକ୍ତି ଥିବା ଯୋଗେ ତାଙ୍କୁ ବାଲାଶ୍ୱରୁ କରନ୍ଧମ ନାମରେ ନାମିତ କରାଗଲା ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ମହାରାଜ ବଳାଶ୍ୱ ଏପରି କେଉଁ ଅଦ୍ଭୁତ କାର୍ଯ୍ୟ କଲେ ଯେ, ସେଥିପାଇଁ ତାଙ୍କର ନାମ କରନ୍ଧମ ରଖାଗଲା ? ତାହା କୃପାକରି ଆମ୍ଭମାନଙ୍କୁ କହନ୍ତୁ ।"

ସୂତ କହିଲେ—"ମହାରାଜ ! ଖନିନେତ୍ରଙ୍କ ପୁତ୍ର ମହାରାଜ ବଳାଶ୍ୱ ମଧ୍ୟ ନିଜ ପିତାଙ୍କ ଭଳି ଧର୍ମାତ୍ମା ଓ ଦାନୀ ଥିଲେ । ସେ ନିରନ୍ତର ଦାନ ଦେଉଥିଲେ । ଏହି କାରଣରୁ ତାଙ୍କ ରାଜକୋଷ ଶକ୍ତି ପ୍ରାପ୍ତ ହୋଇଯାଇଥିଲା । ସେଥିରେ ଅଧିକ ଧନ ନଥିଲା । କିନ୍ତୁ ତାଙ୍କ ଧର୍ମର କୋଷ ଅକ୍ଷୟ ଥିଲା । ଧନ କମି ଯିବାରୁ ତାଙ୍କ ପାଖରୁ ସୈନ୍ୟ ମଧ୍ୟ କମି ଯାଇଥିଲେ । ଏଥିପାଇଁ ଧନବଳ ତଥା ସୈନିକ ବଳ ଉଭୟବଳ କମିଯାଇଥିଲା ।

ଯେଉଁ ରାଜାମାନଙ୍କୁ ବଳାଶ୍ୱ ନିଜ ବାହୁ ବଳରେ ଜୟ କରିଥିଲେ, ସେମାନେ ଏବେ ବଳଶାଳୀ ହୋଇ ଯାଇଥିଲେ । ପ୍ରତ୍ୟେକଙ୍କ ପାଖରେ ଯୁଦ୍ଧ-ସରଞ୍ଜାମ ଯଥେଷ୍ଟ ପରିମାଣରେ ଥିଲା । ବହୁତ ପରାକ୍ରମୀ ସାଧନ ସମ୍ପନ୍ନ ରାଜା ଏକତ୍ରିତ ହୋଇ ରାଜା ବଳାଶ୍ୱଙ୍କୁ ଦୁର୍ବଳ ଜାଣିପାରି ତାଙ୍କ ଉପରେ ଆକ୍ରମଣ କରିଦେଲେ ଓ ତାଙ୍କ ରାଜଧାନୀକୁ ଚତୁର୍ଦ୍ଦିଗରୁ ଘେରାଉ କରିନେଲେ ଏବେ ରାଜା ବଡ଼ ଚକ୍ରାନ୍ତରେ ପଡ଼ିଗଲେ । ଏ ସମସ୍ତ ରାଜାଙ୍କର ବିଶାଳ ସେନାଙ୍କ ସହିତ ତାଙ୍କର ସ୍ୱଳ୍ପ ସେନା କିପରି ଅବା ଯୁଦ୍ଧ କରିବାକୁ ସାହସ କରନ୍ତେ ? ଯୁଦ୍ଧ ସମ୍ବନ୍ଧୀୟ ସାଧନ ମଧ୍ୟ

ପର୍ଯ୍ୟାପ୍ତ ନଥିଲା । ଶତ୍ରୁ ସେନା ରାଜଧାନୀରେ ପ୍ରବେଶ କରି ତାହା ଲୁଟ୍‌ପାଟ କରିବାକୁ ପ୍ରସ୍ତୁତ ହୋଇ ଯାଇଥିଲେ । ଏହା ଦେଖି ମହାରାଜ ବଳାଶ୍ୱ ଅତ୍ୟନ୍ତ ସଙ୍କଟରେ ପଡ଼ିଗଲେ । ତାଙ୍କୁ ଅନ୍ୟ କୌଣସି ଉପାୟ ଦେଖାଗଲା ନାହିଁ । ସେ ନିଜର ଦୁଇହାତକୁ ମୁଖ ସମ୍ମୁଖରେ ରଖି ଧର୍ମ ସ୍ମରଣ କରି ମୁଖରେ ତାହା ଫୁଙ୍କିବାକୁ ଲାଗିଲେ । ଯେତେବେଳେ ସେହି ବାୟୁ ଅଙ୍ଗୁଳିର ଛିଦ୍ର ମଧ୍ୟ ଦେଇ ବାହାରକୁ ଆସିଲା, ସେତେବେଳେ ତହିଁରୁ ଅନେକ ଅସ୍ତ୍ର-ଶସ୍ତ୍ର ସୁସଜ୍ଜିତ ସୈନ୍ୟ ବାହାରି ପଡ଼ିଲେ । ଅର୍ଥାତ୍ ତାଙ୍କର ଧର୍ମମୟୀ ବାଣୀରେ ଏପରି ଶକ୍ତି ଥିଲା, ଯାହାକି ମୁଖରେ ହାତଦେଇ ସେ କହିବା ମାତ୍ରେ ଶତ୍ରୁ ପକ୍ଷର କେତେକ ସୈନ୍ୟ ନିଜପକ୍ଷକୁ ଚାଲିଆସିଲେ । ଏବେ ରାଜା ଅତି ଉତ୍ସାହର ସହିତ ଯୁଦ୍ଧ କରିବାକୁ ଲାଗିଲେ । ସେ ଅଳ୍ପ ସମୟ ମଧ୍ୟରେ ସମସ୍ତ ଶତ୍ରୁ ସୈନ୍ୟଙ୍କୁ ମାରି ଘଉଡ଼ାଇ ଦେଲେ ଓ ସମରରେ ବିଜୟୀ ହେଲେ ।

ସଂସାରରେ ଏହି ଲୋକୋକ୍ତିର ପ୍ରସିଦ୍ଧି ଅଛି ଯେ ଯେଉଁମାନେ ସାବଧାନତା ସହକାରେ ଧର୍ମରକ୍ଷା କରନ୍ତି, ସମୟ ଆସିଲେ ସ୍ୱୟଂ ଧର୍ମ ମଧ୍ୟ ସେମାନଙ୍କୁ ରକ୍ଷା କରେ । ଏହି ବିପତ୍ତି କାଳରେ ଧର୍ମହିଁ ତାଙ୍କୁ ସୈନ୍ୟବଳ ପ୍ରଦାନ କରିଥିଲେ । ନିଜ ହାତକୁ ଫୁଙ୍କି ଏ ଅଦ୍ଭୁତ ଅଲୌକିକ ଶକ୍ତିର ପରିଚୟ ଦେଇଥିବାରୁ ମହାରାଜଙ୍କୁ (କର = ହାତ + ଧମନ୍ = ଫୁଙ୍କିବା) 'କରନ୍ଧମ' ନାମରେ ନାମିତ କରାଯାଇଥିଲା ।

ମହାରାଜ କରନ୍ଧମ ଯେପରି ବୀର, ଦାନୀ ଓ ଧର୍ମାତ୍ମା ଥିଲେ, ସେହିପରି ସୁନ୍ଦର ମଧ୍ୟ ଥିଲେ । ସୌନ୍ଦର୍ଯ୍ୟ ରୂପ ଯୋଗେ ସେ ସର୍ବତ୍ର ବିଖ୍ୟାତ ମଧ୍ୟ ଥିଲେ । ସେହି ସମୟରେ **'ବୀର୍ଯ୍ୟଚନ୍ଦ୍ର'** ନାମକ ଜଣେ ଅତି ପ୍ରତାପଶାଳୀ ରାଜା ରାଜତ୍ୱ କରୁଥିଲେ । ତାଙ୍କର ବୀରା ନାମକ ଗୋଟିଏ ସୁନ୍ଦରୀ-କନ୍ୟା ଥିଲା । ସେ ଏତେ ସୁନ୍ଦରୀ ଥିଲା ଯେ, ତା ଅନୁରୂପ ବରପାତ୍ର ଖୋଜି ନ ପାଇବାରୁ ରାଜା ତା ପାଇଁ ସ୍ୱୟମ୍ବର କରିବାକୁ ସ୍ଥିର କରି ଶେଷକୁ ସ୍ୱୟମ୍ବର କଲେ ।

ଦେଶ ବିଦେଶରୁ ସହସ୍ର ସହସ୍ର ରାଜକୁମାର ସେହି ସୁନ୍ଦରୀ ରାଜକୁମାରୀଙ୍କର ରୂପ ଲାବଣ୍ୟର ପ୍ରଶଂସା ଶୁଣି ମହାରାଜ ବୀର୍ଯ୍ୟଚନ୍ଦ୍ରଙ୍କ ରାଜଧାନୀକୁ ଆସିବାକୁ ଲାଗିଲେ । ଯଥା ସମୟରେ ସ୍ୱୟମ୍ବର ସଭାର ଆୟୋଜନ କରାଗଲା । କୁମାରୀ ବୀରା ହାତରେ ଜୟମାଳା ଧରି ନିଜର ସଖୀମାନଙ୍କ ଗହଣରେ ନିଜ ଅନୁରୂପ ପତି ଖୋଜିବାକୁ ବାହାରି ପଡ଼ିଲେ । ସମସ୍ତ ରାଜକୁମାର ମାନଙ୍କ ମଧ୍ୟରୁ ମହାରାଜ କରନ୍ଧମଙ୍କୁ ସେ ନିଜର ଉପଯୁକ୍ତ ପତିରୂପେ ବାଛିଲେ ଓ ନିଜର କମ୍ପିତ କରରେ ତାଙ୍କ ଗଳାରେ ଜୟମାଳା ପିନ୍ଧାଇ ଦେଲେ । ଏହା ଦେଖି ଅନ୍ୟ ସମସ୍ତ ରାଜକୁମାର ହତାଶ ହୋଇ ନିଜ ନିଜ ଘରକୁ ଫେରିଗଲେ ।

ମହାରାଜ କରନ୍ଧମ ସ୍ୱୟମ୍ବର ସଭାରେ ସୁନ୍ଦରୀ ବୀରାଙ୍କୁ ପାଇ ଅତ୍ୟନ୍ତ ପ୍ରସନ୍ନ ହେଲେ । ଶାସ୍ତ୍ରୀୟ ବିଧିରେ ବୀରାଙ୍କ ସହିତ ତାଙ୍କର ବିବାହ ସମ୍ପନ୍ନ ହେଲା । ଏହାପରେ ଉଭୟେ ନିଜ ରାଜଧାନୀକୁ ଫେରିଆସି ଗାର୍ହସ୍ଥ୍ୟଧର୍ମ ପାଳନ କରିବାକୁ ଲାଗିଲେ । ରାଜା ବୀରାଙ୍କ ସହିତ ଅନେକ ଯଜ୍ଞ ଅନୁଷ୍ଠାନ କଲେ, ସମସ୍ତ ବସ୍ତୁ ଦାନ କଲେ ଓ ଯାଚକ ମାନଙ୍କୁ ସେମାନଙ୍କ ଇପ୍‌ସିତ ବସ୍ତୁ ପ୍ରଦାନ କରି ସନ୍ତୁଷ୍ଟ କରାଇଲେ ଏବଂ ପ୍ରଜାମାନଙ୍କୁ ପୁତ୍ରବତ୍ ପାଳନ କଲେ । ବୀରାଙ୍କ ଗର୍ଭରୁ ତାଙ୍କର ଏକ ପୁତ୍ର ଜାତହେଲା । ଏହି ପୁତ୍ରର ନାମ ଅବୀକ୍ଷିତ ।

ଅବୀକ୍ଷିତ ବଡ଼ ଯଶସ୍ୱୀ ଓ ଦୃଢ଼ ପ୍ରତିଜ୍ଞ ଥିଲେ । ସେ ଶତ୍ରୁମାନଙ୍କ ଦ୍ୱାରା ପରାଜିତ ହେବା କାରଣରୁ ବିବାହ ନ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିଲେ, କିନ୍ତୁ ଶେଷରେ ଧର୍ମ ସଙ୍କଟରେ ପଡ଼ିବାରୁ ନିଜର ପ୍ରତିଜ୍ଞା ରକ୍ଷାକରି ପାରିଲେନାହିଁ ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଏତେ ଯଶସ୍ୱୀ ଧର୍ମାତ୍ମା କରନ୍ଧମଙ୍କ ପୁତ୍ର ଅବୀକ୍ଷିତ ଏ ପ୍ରକାର ଘୋର ପ୍ରତିଜ୍ଞା କାହିଁକି କରିଥିଲେ ଓ ଶେଷରେ କେଉଁ କାରଣରୁ ସେ ନିଜର ପ୍ରତିଜ୍ଞା ଭଙ୍ଗ କଲେ; ଏହି କଥା ଆପଣ ଉଚିତ ମନେକଲେ ଆମ୍ଭମାନଙ୍କୁ କହନ୍ତୁ ।

ଏହା ଶୁଣି ସୂତ କହିଲେ—"ଭଗବାନ୍ ! ଏହି କଥା ଅତ୍ୟନ୍ତ ମନୋରଞ୍ଜକ । ଅବୀକ୍ଷିତଙ୍କର ଏହି ଅଦ୍ଭୁତ କାହାଣୀ ମୁଁ ଆପଣ ମାନଙ୍କ ଆଗରେ କହୁଅଛି । ଆପଣମାନେ ମନଯୋଗ ଦେଇ ଏହା ଶ୍ରବଣ କରନ୍ତୁ ।

## ଛପ୍‌ପୟ

ଭୟୋ କରନ୍ଧମ ପୁତ୍ର ନୃପତି ଦୈବଙ୍କ ବୁଲୟେ ।
ସପ୍ତମ ଗୁରୁ ଅରୁ ଶୁକ୍ର ଚନ୍ଦ୍ର ଚୌଥେ ବତଲୟେ ।।
ସୂର୍ଯ୍ୟ ଶନୈଶ୍ଚର ସୌମ ଅବୀକ୍ଷିତ ହୈ ଯହ ବାଲକ୍ ।
ପାରଙ୍ଗତ ପରମାର୍ଥ ପୂର୍ଣ୍ଣ ପୃଥିବୀକୋ ପାଲକ ।।
ଗ୍ରହ ଫଲ ସୁନ ନୃପ ମୁଦିତ ମନ, ବିପ୍ରନକୋ ଆଦର କରେଯା ।
ରବ ଶନ ମଙ୍ଗଲ ତେ ଅଲଖ, ନାମ ଅବୀକ୍ଷିତ ନୃପ ଧରେୟା ।।



# କରନ୍ଧମ ସୁତ ଅବୀକ୍ଷିତଙ୍କ କଥା

**ତସ୍ୟାବୀକ୍ଷିତ୍ ସୁତୋ ଯସ୍ୟ ମରୁତ୍ତଶ୍ଚକ୍ରବର୍ତ୍ତ୍ୟଭୂତ୍ ।**
**ସଂବର୍ତ୍ତୋଽଯାଜୟଦ୍ ଯଂ ବୈ ମହାଯୋଗ୍ୟଙ୍ଗିରଃ ସୁତଃ ।**

(ଶ୍ରୀ : ଭା : ୯ସ୍କ : ୨ଅ : ୨୬ ଶ୍ଳୋକ)

## ଛପ୍‌ପୟ

ଭୟେ ଅବୀକ୍ଷିତ୍ ଯୁବକ କରନ୍ଧମ କେ ସୁତ ପ୍ୟାରେ ।
ବୈଦେଶ ନୃପ କୀ ସୁତା ସ୍ୱୟମ୍ବର ମାଁହ ସିଧାରେ ।।
କନ୍ୟା ଲୈ ଜୟମାଲ କୁମର କେ ଢ଼ିଂଗ ଜବ ଆଇ ।
ବଲ-ପୂର୍ବକ ସୋ ପକଡ଼ ଅବୀକ୍ଷିତ ରଥ ବୈଠାଇ ।।
ସବ ନୃପ ମିଲ ପକଡ଼େ କୁମର, ଆଇ ଛଡ଼ାୟେ ପିତା ଜବ ।
କନ୍ୟା ଦୟୀ ବିଶାଲ ଜବ, ନହିଁ ସ୍ୱୀକାରୀ କୁମର ତବ ।।

ଏ ମାନବ ଜୀବନ ଏକ ପ୍ରକାର ସତତ ସଂଗ୍ରାମମୟ ଜୀବନ । ଏ ଜୀବନ ସଂଗ୍ରାମରେ କେତେବେଳେ ଜୟ ହୁଏତ କେତେବେଳେ ପରାଜୟ ହୁଏ । ଯେ ଘୋଡ଼ା ସବାର ହୁଏ, ସେ ଘୋଡ଼ା ଉପରୁ ମଧ୍ୟ ପଡ଼େ । ଯେ କେବେହେଲେ ଘୋଡ଼ା ଉପରେ ଚଢ଼େ ନାହିଁ, ତାହାର ପଡ଼ିବାର ପ୍ରଶ୍ନ ନଥାଏ । ଯେ ଭୂମିଠାରୁ ଉଚ୍ଚରେ ପଲଙ୍କ ବା ତକ୍ତପୋଷ ଉପରେ ଶୁଏ, ତାହାର ଭୂପତିତ ହେବାର ଆଶଙ୍କା ଥାଏ, କିନ୍ତୁ ଯେ ଭୂମି ଉପରେ ଶୁଏ, ତାହାର ପଡ଼ିଯିବାର ପ୍ରଶ୍ନ ଉଠେ ନାହିଁ । ଜୀବନରେ ସମୟ ସମୟରେ ଏହିପରି ଧର୍ମ ସଙ୍କଟ ସମୟ ଉପସ୍ଥିତ ହୁଏ ଯେ, ଯେଉଁ କାର୍ଯ୍ୟ କରିବା ପାଇଁ ଆମର ଆଦୌ ଇଚ୍ଛା ନଥାଏ, ତାହା ପ୍ରାରବ୍ଧବଶତଃ ଆମ୍ଭ-ମାନଙ୍କୁ ଅତି ଆଗ୍ରହପୂର୍ବକ କରିବାକୁ ପଡ଼ିଥାଏ । ଏହା ଯେ ବିଧିର ବିଡ଼ମ୍ବନା, ଏଥିରେ ତିଳେହେଲେ ସନ୍ଦେହ ନାହିଁ । ଯେଉଁଠାରେ ସମାନ୍ତରାଳ ଭାବରେ ଦୁଇଟି ବିରୋଧୀ ଧର୍ମ ସମସ୍ୟା ଆସି ପହଞ୍ଚେ ଓ ତନ୍ମଧ୍ୟରୁ କେଉଁ କାର୍ଯ୍ୟ କରିବାଦ୍ୱାରା ଆମେ ଧର୍ମଚ୍ୟୁତ ନ ହେବା, ତାହା ନିର୍ଣ୍ଣୟ କରିବାକୁ ଅକ୍ଷମ ହେଉ, ଏହିପରି ଅବସ୍ଥା ବା

ଅବସ୍ଥାକୁ ଧର୍ମ ସଙ୍କଟ ବୋଲି କୁହାଯାଏ । ଦୁଇଟି ପ୍ରତିକୂଳ ପ୍ରବୃତ୍ତି ମଧ୍ୟରେ ଟଣା ଓଟରା ଏହି ଧର୍ମସଙ୍କଟରେ ଦେଖାଯାଇଥାଏ । କର୍ତ୍ତବ୍ୟ ବୁଦ୍ଧିରେ କେଉଁଟି କରିବା ଦ୍ୱାରା ଅଧିକ ଧର୍ମ ସୁରକ୍ଷିତ ହୋଇ ପାରିବ ତାହା ଦେଖିବାକୁ ପଡ଼ିବ । ନିକଟତର ଯେଉଁ ପାଖରେ ଫଳ ଖରାପ ହୁଏ, ତାହା ନମିତ ହୁଏ, ଏହାକୁ ସ୍ୱୀକାର କରିବାକୁ ପଡ଼ିଥାଏ । ସେହିପରି ସମୟ ସମୟରେ ଆମ୍ଭମାନଙ୍କୁ ଧର୍ମର ପରୀକ୍ଷା ଦେବାକୁ ପଡ଼ିଥାଏ ।

ସୁତ କହିଲେ—"ମୁନିଗଣ ! ଚକ୍ରବର୍ତ୍ତୀ ମହାରାଜ କରନ୍ଧମଙ୍କ ପୁତ୍ର ଅବୀକ୍ଷିତ ଅତ୍ୟନ୍ତ ବୀର, ପରାକ୍ରମୀ, ବେଦ ବେଦାଙ୍ଗରେ ପାରଙ୍ଗମ ତଥା ଦୃଢ଼ ପ୍ରତିଜ୍ଞ ଥିଲେ । ସେ କଣ୍ୱମୁନିଙ୍କ ପୁତ୍ରଙ୍କ ଠାରୁ ଧନୁର୍ବିଦ୍ୟା ଶିକ୍ଷା କରିଥିଲେ । ତାଙ୍କର ସଦ୍‌ଗୁଣ ଓ ଅନୁପମ ସୌନ୍ଦର୍ଯ୍ୟର ଖ୍ୟାତି ସର୍ବତ୍ର ବ୍ୟାପିଥିଲା । ସେ ବିନୟୀ, ଶୂର, ବ୍ରାହ୍ମଣ ଭକ୍ତ ଓ ସଦାଚାରୀ ଥିଲେ । ମହାରାଜ କରନ୍ଧମ ଏପରି ପୁତ୍ର ପାଇ ଅତ୍ୟନ୍ତ ଆନନ୍ଦିତ ହେଉଥିଲେ । ସେ ବର୍ତ୍ତମାନ ପୁତ୍ରବଧୂଙ୍କ ସହିତ ନିଜର ପୁତ୍ରକୁ ଦେଖିବା ପାଇଁ ସମୁତ୍ସୁକ ଥିଲେ । ଅନେକ ରାଜା ନିଜ-ନିଜର କନ୍ୟାଙ୍କୁ କୁମାର ଅବୀକ୍ଷିତଙ୍କ ସହିତ ବିବାହ ଦେବାକୁ ଇଚ୍ଛା କରୁଥିଲେ, କିନ୍ତୁ କୁମାର ଏଥିରେ ରାଜି ହୋଇ ନଥିଲେ ।

ସେହି ସମୟରେ ବୈଦିଶର ରାଜା ବିଶାଳଙ୍କର କନ୍ୟା ବୈଶାଳିନୀର ସ୍ୱୟମ୍ବର ହେଉଥାଏ । ବୈଶାଳିନୀଙ୍କ ସୌନ୍ଦର୍ଯ୍ୟ କଥା ସର୍ବତ୍ର ଖ୍ୟାତ ହୋଇଥାଏ । ସେ ସମୟରେ ପ୍ରାୟ ଏହିପରି ସ୍ୱୟମ୍ବର ପ୍ରଥା ପ୍ରଚଳିତ ଥାଏ ଯେ ଯେଉଁ କନ୍ୟା ଅନୁପମ ରୂପବତୀ ବୋଲି ବିବେଚନା କରାଯାଏ, ତାହାର ସ୍ୱୟମ୍ବର ହୁଏ । ଅବୀକ୍ଷିତଙ୍କର ବୀରତ୍ୱ ଦୃଢ଼ତା ଓ ପରାକ୍ରମ ସମ୍ବନ୍ଧରେ କୁମାରୀ ବୈଶାଳିନୀ ବହୁ ପୂର୍ବରୁ ଶୁଣି ଥାଆନ୍ତି । ତାଙ୍କର ଗୁଣାବଳୀ ଶୁଣି ଶୁଣି ତାଙ୍କ ମନ ମଧ୍ୟରେ ଅବୀକ୍ଷିତଙ୍କ ପ୍ରତି ଅତ୍ୟନ୍ତ ଅନୁରାଗ ଜାତ ହୋଇଥାଏ । ଏଣେ ଅବୀକ୍ଷିତ ମଧ୍ୟ ବୈଶାଳିନୀଙ୍କୁ ବିବାହ କରିବା ପାଇଁ ଇଚ୍ଛା କରୁଥାଆନ୍ତି । ସ୍ୱୟମ୍ବର ହେବା କଥା ଶୁଣି କୁମାର ଅବୀକ୍ଷିତ ସଜବାଜ ହୋଇ ତାଙ୍କୁ ଲାଭ କରିବା ଆଶାରେ ମହାରାଜ ବିଶାଳଙ୍କ ନଗରୀରେ ପହଞ୍ଚିଲେ ଓ ଆଗତ ସମସ୍ତ ରାଜକୁମାରଙ୍କୁ ଅତ୍ୟନ୍ତ ସମ୍ମାନ ସହକାରେ ମହାରାଜ ସ୍ୱାଗତ ସମ୍ବର୍ଦ୍ଧନା କଲେ !

ଯେଉଁଦିନ ସ୍ୱୟମ୍ବର ହେବା ପାଇଁ ସ୍ଥିର ହୋଇଥିଲା, ସେ ଦିନ ରାଜଧାନୀ ଗହଳି ଚହଳିରେ ମୁଖରିତ ହୋଇ ଉଠିଲା । ବଡ଼ ବଡ଼ ରାଜକୁମାର ଯୌବନ-ମଦରେ ମତୁଆଲା ହୋଇ ଓ ନାନା ପ୍ରକାର ମୂଲ୍ୟବାନ ବସ୍ତ୍ରାଭୂଷଣରେ ସୁସଜ୍ଜିତ ହୋଇ ସେହି କନ୍ୟାକୁ ଲାଭ କରିବା ଅଭିଳାଷରେ ସେଠାକୁ ଆସିଥିଲେ । କନ୍ୟା ଗୋଟିଏ, ମାତ୍ର ତାଙ୍କୁ ଲାଭ କରିବା ପାଇଁ ବହୁ ଦେଶରୁ ରାଜା ଓ ରାଜକୁମାରମାନେ ଆସିଥିଲେ । ପ୍ରତ୍ୟେକେ ଇଚ୍ଛା କରୁଥିଲେ କନ୍ୟା ମୋତେ ମିଳିଯିବ । ପ୍ରତ୍ୟେକଙ୍କର ଆଶାଥିଲା କନ୍ୟା ମୋ କଣ୍ଠରେ ହିଁ ବରମାଳା ପିନ୍ଧାଇ ଦେବେ ଓ ପତି ରୂପେ ବରଣ

କରିବେ । ଏପରି ଆଶା କରୁ ନ ଥିଲେ ସେମାନେ ଏତେ ଦୂର ସ୍ଥାନମାନଙ୍କରୁ ଆସିଥାନ୍ତେ ବା କାହିଁକି ? କୁମାର ଅବୀକ୍ଷିତଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ବୈଶାଳିନୀ ତାଙ୍କୁ ନିଶ୍ଚିତ ଭାବେ ବରଣ କରିବେ ।

ନିର୍ଦ୍ଧାରିତ ତିଥି ଲଗ୍ନରେ ସ୍ୱୟମ୍ବର ସଭା ଆରମ୍ଭ ହେଲା । ନବବଧୂ ଭଳି କନ୍ୟାଙ୍କୁ ସୁସଜ୍ଜିତ କରାଯାଇଥିଲା । ସହସ୍ର ସୁବର୍ଣ୍ଣମୟ ସିଂହାସନ ସଭାରେ ସଜା ହୋଇ ରହିଥିଲା । ସେହି ସିଂହାସନମାନଙ୍କ ଉପରେ ଆଗତ ରାଜକୁମାରମାନଙ୍କର ନାମ ଅଙ୍କିତ ହୋଇଥିଲା । ପ୍ରତ୍ୟେକ ରାଜକୁମାର ଆସି ନିଜ ନିଜ ଆସନ ଅଳଙ୍କୃତ କରି ବସିଲେ । ସଭାର ଚତୁର୍ଦ୍ଦିଗରେ ସଶସ୍ତ୍ର ପ୍ରହରୀ ପହରା ଦେଉଥିଲେ । ନଗରବାସୀ ଦର୍ଶକଗଣ ଚତୁର୍ଦ୍ଦିଗସ୍ଥ ମଞ୍ଚ ଉପରେ ଅତି ଉତ୍ସୁକତାର ସହିତ ସ୍ୱୟମ୍ବର ଦେଖିବା ପାଇଁ ବସିଥିଲେ । ପୁରନାରୀଗଣ ଅତି କୌତୂହଳରେ କୁମାରୀ କାହାକୁ ବରଣ କରିବେ ଦେଖିବା ପାଇଁ ଅପେକ୍ଷା କରିଥିଲେ । କାହାର ଭାଗ୍ୟ ଆଜି ଉଦୟ ହେବ, କିଏ ଏହି ସ୍ୱୟମ୍ବର ପ୍ରତିଯୋଗିତାରେ ସର୍ବଶ୍ରେଷ୍ଠ ବିଜୟୀ ବୋଲି ଜଣା ପଡ଼ିବ, କାହା ଗଳାରେ କୁମାରୀ କମ୍ପିତ କରରେ କମଳର କମନୀୟ ମାଳା ଲମ୍ବାଇବ, କିଏ ତାଙ୍କୁ ପତ୍ନୀରୂପେ ଲଭି କରି ନିଜର ଭାଗ୍ୟକୁ ଭୂରି ଭୂରି ପ୍ରଶଂସା କରିବ, ଏହା ଦେଖିବା ପାଇଁ ସମସ୍ତେ ଆଜି ବ୍ୟଗ୍ର ।

ଉପସ୍ଥିତ ରାଜକୁମାରଗଣ ନିଜ ନିଜ ଆସନ ଉପରେ ଥାଇ ବାରମ୍ବାର ଅନ୍ତଃପୁର ଆଡ଼େ ଚାହୁଁଥାଆନ୍ତି ଯେ ତ୍ରୈଲୋକ୍ୟ ସୁନ୍ଦରୀ ସୁକୁମାରୀ କେତେବେଳେ ସ୍ୱୟମ୍ବର ସଭାରେ ପଦାର୍ପଣ କରିବ । ଏହି ସମୟରେ ନୂପୁରଧ୍ୱନି ଓ ଚୂଡ଼ିଗୁଚ୍ଛର ଝଙ୍କାରରେ ସମସ୍ତଙ୍କର ଦୃଷ୍ଟି ସେହିଆଡ଼େ ଆକର୍ଷିତ ହେଲା । ପ୍ରତ୍ୟେକ ଉତ୍ସୁକତାର ସହିତ ଦେଖିବାକୁ ଲାଗିଲେ, ହାତରେ ଜୟମାଳା ଧାରଣ କରି ପୂର୍ଣ୍ଣଚନ୍ଦ୍ର ଭଳି ନିଜର ମୁଖଶ୍ରୀରେ ଦଶଦିଗ ଉଜ୍ଜ୍ୱଳିତ କରି ସଖୀଗଣଙ୍କ ଗହଣରେ ରାଜକୁମାରୀ ଆଗମନ କରୁଥାଆନ୍ତି । ସମସ୍ତଙ୍କ ଦୃଷ୍ଟି ସେହିଆଡ଼େ କେନ୍ଦ୍ରୀଭୂତ ହୋଇଗଲା । ରାଜହଂସୀ ଭଳି ନିଜର କୋମଳ ପାଦ ଚାଳନାକରି ସେ ଧୀରେ ଧୀରେ ସଭା ଆଡ଼କୁ ଆସୁଥିଲେ । ସଙ୍ଗରେ ଜଣେ ପରିଚୟ ପ୍ରଦାନକାରିଣୀ ସହଚରୀ ପ୍ରତ୍ୟେକ ରାଜକୁମାରମାନଙ୍କର ନାମ ଗୋତ୍ର ଆଦି ରାଜକୁମାରୀଙ୍କୁ ଶୁଣାଉଥିଲେ । ରାଜକୁମାରୀ ତାହା ଶୁଣୁଥିଲେ, ଥରେ ଥରେ ତାଙ୍କଆଡ଼େ ଚାହୁଁଥିଲେ ଓ ଆଗକୁ ଚାଲୁଥିଲେ । ଯାହାଙ୍କ ପାଖରୁ ସେ ଆଗେଇ ଯାଉଥିଲେ, ତାଙ୍କ ପାଇଁ ସଂସାର ଶୂନ୍ୟ ହୋଇ ଯାଉଥିଲା । ନିରାଶା ଓ ଲଜ୍ଜାବଶତଃ ତାଙ୍କ ମୁଖ ମଳିନ ପଡ଼ିଯାଉଥିଲା । କେହି କେହି ଚୁପହୋଇ ଉଠି ଚାଲି ଯାଉଥିଲେତ କେହି କେହି ନିର୍ଲଜ୍ଜଙ୍କ ଭଳି ଖୁଖିଲା ହସ ହସି ବ୍ୟଙ୍ଗ ବଚନ କହି ପରିଣାମର ପ୍ରତୀକ୍ଷାରେ ବସି ରହିଥିଲେ । ଏହିପରି ଅନେକ ରାଜକୁମାରଙ୍କୁ ନିରାଶ୍ରିତ ତଥା ଅପମାନିତ କରି ସେହି ରାଜକନ୍ୟା କୁମାର ଅବୀକ୍ଷିତଙ୍କ ନିକଟରେ ଯାଇ ପହଞ୍ଚିଲେ ।

ତାଙ୍କର ପରିଚୟ ପାଇ ସେ ଅନୁରାଗଭରା ହୃଦୟରେ ନିର୍ନିମେଷ ନୟନରେ କୁମାରଙ୍କୁ ଚାହିଁଲେ । ହୃଦୟ ସହିତ ହୃଦୟର ପରିଚୟ ହେଲା, କିନ୍ତୁ ପରିଚୟ ଲୋଭରେ ବା କୁମାରଙ୍କର ଉତ୍ସୁକତା ବଢ଼ାଇବା ପାଇଁ ଅଥବା ତାଙ୍କ ବୀରତ୍ୱ ପରୀକ୍ଷା କରିବା ନିମିତ୍ତ କୁମାରୀ ବୈଶାଳିନୀ କୁମାରଙ୍କ କଣ୍ଠରେ ବରଣମାଳା ନଦେଇ ଆଗେଇ ଚାଲିଲେ । କୁମାର ଏହାକୁ ନିଜର ଘୋର ଅପମାନ ବୋଲି ମନେକଲେ । ଏତେବଡ଼ ସଭାରେ ସମସ୍ତଙ୍କ ଆଡ଼କୁ ଦୃଷ୍ଟି ପକାଇ ପ୍ରଥମେ ସେ ନିଜ ସିଂହାସନ ଉପରୁ ଉଠି-ପଡ଼ିଲେ ଓ ଆଗେଇଯାଇ ରାଜକୁମାରୀଙ୍କର ହାତ ଧରିନେଲେ ଏବଂ ସମସ୍ତଙ୍କ ସମ୍ମୁଖରେ ତାଙ୍କୁ ଧରିନେଇ ନିଜ ରଥରେ ବସାଇଲେ । ସେ ସମସ୍ତଙ୍କୁ ଶୁଣାଇ କହିଲେ—"ମୁଁ ନିଜ ପୁରୁଷାର୍ଥ ବଳରେ ଏହି କନ୍ୟାକୁ ହରଣକରି ନେଇ ଯାଉଛି, ଯାହାଙ୍କର ଶକ୍ତିଅଛି, ସେ ଆସି ମୋ ସହିତ ଯୁଦ୍ଧ କରନ୍ତୁ ।" ଏହା କହି ସେ କୁମାରୀ ବୈଶାଳିନୀଙ୍କୁ ନେଇ ଚାଲିଗଲେ ।

ସ୍ୱୟମ୍ବରକୁ ଆସିଥିବା ସମସ୍ତ ରାଜା ଓ ରାଜକୁମାରମାନେ ଏହି ଘଟଣାରେ ନିଜ ନିଜକୁ ଅତ୍ୟନ୍ତ ଅପମାନିତ ବୋଧକଲେ । ସେମାନେ ପରସ୍ପର ମଧ୍ୟରେ ଆଲୋଚନା କଲେ—"ଆମ୍ଭମାନଙ୍କ ପାଇଁ ଏହା ଅତି ଲଜ୍ଜାର କଥା, ଆମେସବୁ ଥାଉ ଥାଉ ଜଣେ ସାଧାରଣ ରାଜକୁମାର ବଳତ୍କାରରେ କନ୍ୟାର ବିନା ଇଚ୍ଛାରେ ତାଙ୍କୁ ହରଣକରି ନେଇଯାଉଛି । ଏହା ଯେ କେବଳ ନାରୀ ଜାତିକୁ ଅପମାନ ତାହା ନୁହେଁ, କ୍ଷତ୍ରିୟମାନଙ୍କୁ ମଧ୍ୟ ଅପମାନ । ଆହତ ଅବସ୍ଥାରୁ, ଦୁଃଖରୁ ଯେ ପ୍ରାଣୀମାନଙ୍କୁ ତ୍ରାଣ କରେ, ତାକୁହିଁ କ୍ଷତ୍ରିୟ କୁହାଯାଏ । ଆମ୍ଭେମାନେ ଏତେ କ୍ଷତ୍ରିୟ ଥାଉ ଥାଉ ଅବୀକ୍ଷିତ ଆମ୍ଭମାନଙ୍କ ମୁଣ୍ଡଉପରେ ପାଦଦେଇ ରାଜକୁମାରୀଙ୍କୁ ନେଇଯାଉଛି, ଏହାତ ଆମ୍ଭମାନଙ୍କପକ୍ଷେ ଆଣ୍ଠୁଲାଏ ପାଣିରେ ବୁଡ଼ି ମରିବା କଥା, ବା ଦୁବ ଘାସରେ ଦଉଡ଼ି ଦେଇ ମରିବା କଥା ।"

ଏହି ପ୍ରକାର ପରସ୍ପର ମଧ୍ୟରେ ପରାମର୍ଶକରି ସେମାନେ ସମସ୍ତେ ଯୁଦ୍ଧମତ୍ତ ହୋଇ ଅବୀକ୍ଷିତଙ୍କୁ ମିଳିତଭାବେ ଆକ୍ରମଣ କଲେ । ଅବୀକ୍ଷିତ ଜଣେ ମାତ୍ର ଏମାନେ ଥିଲେ ସହସ୍ର ସଂଖ୍ୟକ । କରନ୍ଧମ ନନ୍ଦନ କୁମାର ଅବୀକ୍ଷିତ ବୀରତ୍ୱର ସହିତ ସେମାନଙ୍କର ସମ୍ମୁଖୀନ ହୋଇ ସେମାନଙ୍କ ସହିତ ଯୁଦ୍ଧକଲେ । ସେ ପଛଘୁଞ୍ଚା ଦେବାର ପାତ୍ର ନୁହନ୍ତି । ଦିବ୍ୟ ଅସ୍ତ୍ର ଦ୍ୱାରା ସେ ସମସ୍ତଙ୍କର କବଚ ଏକ ସଙ୍ଗେ ଛିଣ୍ଡାଇ ଦେଲେ । ସଙ୍ଗେ ସଙ୍ଗେ କାହାର ଶିରଚ୍ଛେଦ କରିଦେଲେ ତ କାହାର ଧନୁକୁ ଭାଙ୍ଗି ପକାଇଲେ । କାହାର ବାହୁଦ୍ୱୟ ହାଣି ପକାଇଲେ ତ କାହାର ଅଙ୍ଗ ପ୍ରତ୍ୟଙ୍ଗ କାଟି ଖଣ୍ଡ ବିଖଣ୍ଡ କରି ପକାଇଲେ । ରାଜକୁମାର ଏତେ ସଂଖ୍ୟାରେ ଥିଲେ ସୁଦ୍ଧା ଅବୀକ୍ଷିତଙ୍କ ପ୍ରହାରକୁ କେହି ସହ୍ୟକରି ପାରିଲେ ନାହିଁ । ସେମାନେ ରଣ ପରିତ୍ୟାଗକରି ପଳାୟନ କଲେ । ଅବୀକ୍ଷିତ ସେତେବେଳେ ବିଜୟୀ ସିଂହଙ୍କଭଳି ରଣ ହୁଙ୍କାର ଦେଉଥିଲେ ।

ହାରଯିବା ଦ୍ୱାରା ରାଜକୁମାରମାନେ ନିଜ ନିଜକୁ ଆହୁରି ଅଧିକ ଅପମାନିତ ମନେକଲେ । ଜଣେ ରାଜକୁମାର ସେମାନଙ୍କୁ ହରାଇ ଦେଇ କନ୍ୟାକୁ ନେଇ ଚାଲିଗଲା, ଏହାତ ସେମାନଙ୍କପକ୍ଷେ ମୃତ୍ୟୁ ସମାନ ଥିଲା । ସେମାନେ ପୁନଶ୍ଚ ଭାବିଲେ ଆମ୍ଭମାନଙ୍କୁ କ୍ଷତ୍ରୀୟ ବୋଲି କହିବା ନିରର୍ଥକ । ଏହି କଥା ବିଚାର କରି ୭୦୦ ଯୁବକ ରାଜକୁମାର ପ୍ରାଣ ଆଶା ପରିତ୍ୟାଗ କରି ତାଙ୍କ ସହିତ ପୁଣି ଯୁଦ୍ଧ କରିବାକୁ ଗଲେ । ଯେଉଁ ସୈନ୍ୟମାନେ ପଳାଇ ଯାଉଥିଲେ, ସେମାନଙ୍କୁ ଆଉ ଅଟକାଇଲେ ନାହିଁ । ଏଥର ସେମାନେ ପ୍ରତିଜ୍ଞାବଦ୍ଧ ହେଲେ ଯେ ଆମ୍ଭେମାନେ ମୃତ୍ୟୁବରଣ କରିବା ନତୁବା କନ୍ୟାକୁ ଛଡ଼ାଇ ଆଣି ଅବୀକ୍ଷିତଙ୍କୁ ବନ୍ଦୀ କରିବା । ଯେପର୍ଯ୍ୟନ୍ତ ଜଣେ ହେଲେ ଜୀବିତ ଥିବା, ସେପର୍ଯ୍ୟନ୍ତ ନିରନ୍ତର ଯୁଦ୍ଧ କରୁଥିବା । ଏହା ନିଶ୍ଚିତ କରି ସେମାନେ ଅତି ଉତ୍ସାହରେ ପ୍ରାଣପଣେ ଲଢ଼ିବାକୁ ଲାଗିଲେ । ଦୁଇପକ୍ଷ ମଧ୍ୟରେ ଘୋର ଯୁଦ୍ଧ ହେବାକୁ ଲାଗିଲା । ଉଭୟ ପକ୍ଷରୁ ଦିବ୍ୟ ଅସ୍ତ୍ର-ଶସ୍ତ୍ର ପ୍ରୟୋଗ ହେବାକୁ ଲାଗିଲା । ଉଭୟ ପକ୍ଷରୁ ମାର, ହାଣ କାଟ, ଧରିନିଅ, କାହାରିକୁ ଛାଡ଼ନାହିଁ ଇତ୍ୟାଦି, ଶବ୍ଦରେ ରଣ ଭୂମି ମୁଖରିତ ହେବାକୁ ଲାଗିଲା । ଘୋର ଲଢ଼େଇ ଚାଲିଲା, ଏହା ଏକ ଅଭୂତପୂର୍ବ ସମର । କୁମାର ଅବୀକ୍ଷିତଧର୍ମ ପୂର୍ବକ ଯୁଦ୍ଧ କରିବାକୁ ଲାଗିଲେ । କିନ୍ତୁ ୭୦୦ ରାଜକୁମାର ଧର୍ମର ବିଚାର ନକରି ଯୁଦ୍ଧ କରୁଥାଆନ୍ତି । କାରଣ ସେମାନଙ୍କର ଲକ୍ଷ୍ୟଥାଏ ଯେ ସେମାନେ କୌଣସି ପ୍ରକାରେ ଅବୀକ୍ଷିତଙ୍କୁ ଧରିନେବେ । ତେଣୁ ସମସ୍ତେ ଏକ ସଙ୍ଗେ ମିଳି ଅବୀକ୍ଷୀତଙ୍କୁ ଅନ୍ୟାୟ ପୂର୍ବକ ପ୍ରହାର କଲେ । ସେ ୭୦୦ ବୀରଙ୍କର ପ୍ରହାରକୁ କିପରି ଅବା ସହ୍ୟକରି ପାରିଥାଆନ୍ତେ ? କିଛି ସମୟ ପର୍ଯ୍ୟନ୍ତ ତ ବୀରଭଳି ଲଢ଼ିଲେ, ଶେଷରେ କ୍ଷତ ବିକ୍ଷତ ହୋଇ ଭୂମି ଉପରେ ପଡ଼ିଗଲେ । ତାଙ୍କୁ ପଡ଼ି ଯିବାର ଦେଖି ସର୍ବତ୍ର କୋଳାହଳରେ ଉଚ୍ଛୁଳି ଉଠିଲା । ଦୁଇ ଚାରିଜଣ ରାଜକୁମାର ଯାଇ ତାଙ୍କୁ ଧରିଆଣି ତାଙ୍କୁ ଧର୍ମ ପୂର୍ବକ ବାନ୍ଧିପକାଇ ବନ୍ଦୀକଲେ ଓ କନ୍ୟାଙ୍କୁ ସଙ୍ଗରେ ନେଇ ବୈଦିଶ ନଗରର ମହାରାଜ ବିଶାଳଙ୍କୁ ଏ ଦୁହିଁଙ୍କୁ ସମର୍ପଣ କଲେ ।

ସେବକମାନେ ଏହି ସମାଚାର ମହାରାଜ କରନ୍ଧମଙ୍କୁ ଶୀଘ୍ର ଯାଇ ଜଣାଇ ଦେଲେ । ଏହା ଶୁଣି ସୈନିକ, ମନ୍ତ୍ରୀ ଓ ସଚୀବ ସମସ୍ତେ ଉତ୍ତେଜିତ ହୋଇଉଠିଲେ । କେହି କେହି କହିଲେ—"ଏହା ଆମ ବଂଶର ଘୋର ଅପମାନ ।" କେହି କହିଲେ, "ସେହି ସାତଶହ ରାଜକୁମାରଙ୍କୁ ଶୀଘ୍ର ବାନ୍ଧିଆଣ । କେହି କହିଲେ—"ବିଶାଳ ରାଜାଙ୍କ ଉପରେ ଚଢ଼ାଉ କରିଦିଅ ।" ସମସ୍ତଙ୍କ କଥାଶୁଣି କରନ୍ଧମ କହିଲେ—"ଭାଇମାନେ ! କେବଳ କଥା କହିଦେଲେ ହେବନାହିଁ । କୁମାର ତ କୌଣସି ଖରାପ କାର୍ଯ୍ୟ କରି-ନାହାନ୍ତି, ସେ ତ କ୍ଷତ୍ରିୟୋଚିତ କାର୍ଯ୍ୟ କରିଛନ୍ତି । ଶତ୍ରୁମାନଙ୍କୁ ଯୁଦ୍ଧରେ ମଧ୍ୟ ମାରିଛନ୍ତି । କିନ୍ତୁ ଯେତେବେଳେ ୭୦୦ ବୀର ଏକ ସଙ୍ଗେ ଯୁଦ୍ଧ କରିବାକୁ ଲାଗିଲେ, ସେ କ୍ଷେତ୍ରରେ ଏକାହୋଇ ସେ ଅବା କେତେ ଲଢ଼ନ୍ତେ ? ଏବେ ଆମ୍ଭମାନଙ୍କର କର୍ତ୍ତବ୍ୟ

ହେଉଛି, କୁମାରଙ୍କୁ ଯଥାଶୀଘ୍ର ଉଦ୍ଧାର କରିବା । ଆଉ ବିଳମ୍ବ କରି କିଛି ଲାଭ ନାହିଁ, ତୁରନ୍ତ ସୈନ୍ୟମାନଙ୍କୁ ଏକତ୍ରିତ କର, ରଣଭେରୀ ବଜାଅ, ସୈନିକମାନଙ୍କୁ ବୈଦିଶ ନଗର ଅଭିମୁଖେ ଆଗେଇ ନିଅ । ମୋ ରଥକୁ ମଧ୍ୟ ଅବିଳମ୍ବେ ସୁସଜ୍ଜିତ କର, ମୁଁ ମଧ୍ୟ ଯୁଦ୍ଧ କରିବାକୁ ଯିବି ।"

ରାଜାଙ୍କ ଆଦେଶ ପାଇ ସୈନ୍ୟମାନେ ଯୁଦ୍ଧ ଯାତ୍ରା ପାଇଁ ପ୍ରସ୍ତୁତ ହୋଇଗଲେ । ବୀରମାନଙ୍କ ହୃଦୟରେ ବୀରତ୍ୱର ଲହରୀ ଉଠିବାକୁ ଲାଗିଲା । ସେମାନେ ଜୟ ଜୟକାର ଧ୍ୱନି ଦେଇ ଯାତ୍ରା ଆରମ୍ଭ କଲେ । ଅସ୍ତ୍ରଶସ୍ତ୍ର ଘୁରାଇ ଆନନ୍ଦରେ ଆଗକୁ ପଦଚାଳନା କଲେ । କେତେକ ସୈନ୍ୟ ଅଶ୍ୱ ପୃଷ୍ଠରେ ଆରୋହଣ କରି ସେମାନଙ୍କୁ ନଚାଇ ନଚାଇ ଚାଲିଲେ । ଅଳ୍ପ ସମୟ ମଧ୍ୟରେ ଚତୁରଙ୍ଗ ସେନା ସୁ-ସଜ୍ଜିତ ହୋଇ ରଣକ୍ଷେତ୍ରକୁ ଆଗେଇ ଚାଲିଲେ । ମହାରାଜ ବିଶାଳ କରନ୍ଧମଙ୍କ ସେନା ଆସୁଥିବାର ଖବର ପାଇବାକ୍ଷଣି ତାଙ୍କ ଧମନୀରେ ବୀର ରକ୍ତ ପ୍ରବାହିତ ହେବାକୁ ଲାଗିଲା । ସେ ଆଗତ ସମସ୍ତ ରାଜକୁମାର ଓ ରାଜାମାନଙ୍କର ସାହାଯ୍ୟ ଲୋଡ଼ିଲେ । ସମସ୍ତେ ମହାରାଜା ବିଶାଳଙ୍କ ପକ୍ଷରୁ ଲଢ଼ିବା ପାଇଁ ପ୍ରସ୍ତୁତ ହୋଇଗଲେ । ଉଭୟପକ୍ଷ ମଧ୍ୟରେ ଘମାଘୋଟ ଲଢ଼େଇ ଆରମ୍ଭ ହୋଇଗଲା । ତିନି ଦିନ ପର୍ଯ୍ୟନ୍ତ ଉଭୟ ପକ୍ଷ ସେନାଙ୍କ ମଧ୍ୟରେ ନିରନ୍ତର ଯୁଦ୍ଧ ଚାଲିଲା । ମହାରାଜ ବିଶାଳ ଦେଖିଲେ ତାଙ୍କ ସେନା ଥକି ଗଲେଣି । ତାଙ୍କ ସାଥୀମାନେ ମଧ୍ୟ ହତୋତ୍ସାହ ହୋଇ ପଡ଼ିଲେଣି । ସେ ଆଉ କୌଣସି ପ୍ରକାରେ ମହାରାଜା କରନ୍ଧମଙ୍କୁ ଜୟ କରି ପାରିବେ ନାହିଁ । ତାଙ୍କଠାରେ ମାନବୀ ଶକ୍ତି କାମ କରୁନାହିଁ, ଦୈବୀ ଶକ୍ତିରେ ସେ ଲଢ଼ୁଛନ୍ତି । ସେ ସ୍ଥିରକଲେ ଆଉ କରନ୍ଧମଙ୍କ ସହିତ ଯୁଦ୍ଧ କରିବା ଉଚିତ୍ ନୁହେଁ । ଏହି କଥା ଚିନ୍ତାକରି ସେ ସନ୍ଧିକରିବା ପାଇଁ ଧ୍ୱଜା ଉତ୍ତୋଳନ କଲେ । ସଙ୍ଗେ ସଙ୍ଗେ ଉଭୟ ପକ୍ଷର ସୈନ୍ୟ ଅସ୍ତ୍ର ଶସ୍ତ୍ର ରଖିଦେଲେ । ଯୁଦ୍ଧ ବନ୍ଦ ହୋଇଗଲା । ମହାରାଜ ବିଶାଳ ଅର୍ଘ୍ୟ ନେଇ ମହାରାଜ କରନ୍ଧମଙ୍କ ନିକଟକୁ ଗଲେ । ବସ୍ତ୍ର ଭୂଷଣ ଆଦି ଦ୍ୱାରା ତାଙ୍କୁ ବିଧିବଦ୍ଧ ପୂଜା କରି କହିଲେ—"ମହାରାଜ ! ଆପଣଙ୍କର ପୁତ୍ର ଅତ୍ୟନ୍ତ ବୀରତ୍ୱ ପ୍ରଦର୍ଶନ କରିଛନ୍ତି । ଏକା ଏକା ଅସଂଖ୍ୟ ସୈନ୍ୟଙ୍କୁ ଯୁଦ୍ଧରେ ମାରି ଯଶସ୍ୱୀ ହୋଇ ପାରିଛନ୍ତି । ଆପଣ ମଧ୍ୟ କ୍ଷତ୍ରିୟ ଧର୍ମ ପାଳନ କରି ଅଛନ୍ତି । ବିନା ଯୁଦ୍ଧରେ ମୁଁ ଯଦି କନ୍ୟାଦାନ କରିଥାଆନ୍ତି, ତେବେ ଏଥିରେ ମୋର ଦାନ କରିବାର ମୂଲ୍ୟ ରହି ନଥାନ୍ତା କିମ୍ବା ଆପଣ ନେବାର ମୂଲ୍ୟ ରହି ନଥାନ୍ତା । ଆପଣ ଏବେ ଯୁଦ୍ଧରେ ମୋତେ ହରାଇଛନ୍ତି, ଏଥିପାଇଁ ଆପଣ ଆପଣଙ୍କ ପୁତ୍ର ସହିତ ମୋର କନ୍ୟାକୁ ପୁତ୍ରବଧୂ ରୂପେ ଗ୍ରହଣ କରନ୍ତୁ ।"

ମହାରାଜ ବିଶାଳଙ୍କ କଥାଗୁଡ଼ିକୁ ରାଜରାଜେଶ୍ୱର କରନ୍ଧମ ଅଭିନନ୍ଦନ କଲେ ଓ ତାଙ୍କ ଆତିଥ୍ୟ ସ୍ୱୀକାର କରି ଏକରାତି ତାଙ୍କ ରାଜ ଉଆସରେ ସୁଖରେ ଅବସ୍ଥାନ କଲେ ।

ପରନ୍ଧନ ରାଜା ବିଶାଳ ନିଜର କନ୍ୟାକୁ ବସ୍ତ୍ର ଭୂଷାଣାଦିରେ ସୁସଜ୍ଜିତ କରାଇ ମହାରାଜ କରନ୍ଧମଙ୍କ ସମୀପକୁ ଆଣିଲେ ଓ ତାଙ୍କୁ କହିଲେ—"ପ୍ରଭୋ ! ମୋର ଏହି ସର୍ବ ସୁଲକ୍ଷଣ ସମ୍ପନ୍ନା କନ୍ୟାକୁ ଆପଣଙ୍କ ସର୍ବସମର୍ଥ ଗୁଣବାନ ପୁତ୍ର ଉପଯୋଗୀ ପୁତ୍ରବଧୂରୂପେ ସ୍ୱୀକାର କରନ୍ତୁ ।"

କନ୍ୟାକୁ ଦେଖି ମହାରାଜ କରନ୍ଧମ ଅତ୍ୟନ୍ତ ପ୍ରୀତ ହେଲେ ଓ କହିଲେ— "ରାଜନ୍ ! ଏହି ସମ୍ବନ୍ଧ ଆମ ଉଭୟଙ୍କ ପାଇଁ ଅନୁକୂଳ । ମହାରାଜ ମୁଖରୁ ଏହିକଥା ନ ସରୁଣୁ ମଝିରେ କୁମାର ଅବୀକ୍ଷିତ କହି ଉଠିଲେ—"ପିତା ! ମୁଁ ଏହି କନ୍ୟାଙ୍କୁ ବିବାହ କରିବି ନାହିଁ, କେବଳ ଏହାଙ୍କ ସହିତ ନୁହେଁ ଆଉ କାହାରି ସହିତ ମୋର ବିବାହ ମଧ୍ୟ ହେବ ନାହିଁ । ମୁଁ ସାରାଜୀବନ ଅବିବାହିତ ରହିବି ।"

ପିତା କହିଲେ, "ବତ୍ସ ! ଏପରି କାହିଁକି କହୁଛ ?" ଅବୀକ୍ଷିତ କହିଲେ— "ବାପା ! ମୁଁ ନିଜକୁ କ୍ଷତ୍ରିୟ ବୋଲି କହିବାର ଉପଯୁକ୍ତ ପାତ୍ର ନୁହେଁ । ଏ ରାଜକୁମାରୀ ଉପଯୁକ୍ତ, ବୀର ଓ ସର୍ବଶ୍ରେଷ୍ଠ ବର ବରଣ କରିବାକୁ ଚାହୁଁଥିଲେ । ମୋର ବୀରତ୍ୱ ନାହିଁ, କାରଣ ଶତ୍ରୁମାନେ ମୋତେ ପରାସ୍ତ କରି ବନ୍ଦୀକରି ଆଣିଛନ୍ତି, ଏପରି ଦୁର୍ବଳ ବ୍ୟକ୍ତିର ପତ୍ନୀ ହୋଇ ସେ କଣ କେବେ ସୁଖୀ ହୋଇ ପାରିବେ ? ତାଙ୍କ ସମ୍ମୁଖରେ ହିଁ ଶତ୍ରୁମାନେ ଶସ୍ତ୍ର ପ୍ରହାର କରି ମୋତେ ଭୂଲୁଣ୍ଠିତ କଲେ, ତେବେ ମୁଁ ତାଙ୍କୁ କିପରି ମୁଖ ଦେଖାଇବି ? ତେଣୁ ମୁଁ ଏହାଙ୍କର ଯୋଗ୍ୟ ନୁହେଁ କିମ୍ବା ଅନ୍ୟ କୌଣସି କ୍ଷତ୍ରିୟ କନ୍ୟାଙ୍କର ପାଣିଗ୍ରହଣ କରିବି ନାହିଁ । ଏଠାରେ ଏତେ ରାଜକୁମାର ଉପସ୍ଥିତ ଅଛନ୍ତି । କୁମାରୀ ଏବେ ମଧ୍ୟ କନ୍ୟା, ସେ ଯାହାଙ୍କୁ ଚାହାନ୍ତି, ତାଙ୍କୁ ବରଣ କରି ପାରନ୍ତି । ମୁଁ ତାଙ୍କ ସହିତ ବିବାହ କରି ପାରିବି ନାହିଁ । ଏହା ମୋର ଦୃଢ଼ ପ୍ରତିଜ୍ଞା ।"

ଏହା ଶୁଣି ବିଶାଳ ନିଜର ଯୁବତୀ କନ୍ୟା ଆଡ଼କୁ ଚାହିଁ କହିଲେ— "ମା ! ରାଜକୁମାରଙ୍କ କଥା ତ ତୁ ଶୁଣି ପାରିଲୁ । ସେ ମହାତ୍ମା ତାଙ୍କ ବଚନକୁ ବଦଳାଇ ପାରିବେ ନାହିଁ । ଏଥିପାଇଁ ତୁ ଏଠାରେ ଉପସ୍ଥିତ ଥିବା ଅନ୍ୟ କୌଣସି ରାଜକୁମାରଙ୍କୁ ବରଣ କରିପାରୁ । ତୁ ତ ଏହାଙ୍କୁ ସ୍ୱେଚ୍ଛାରେ ବରଣ କରିନଥିଲୁ, ସେ ତୋତେ ବଳତ୍କାରରେ ନେଇ ଯାଇଥିଲେ । ଏବେ ତୁ ସ୍ୱାଧୀନ, ତେଣୁ ଏହାଙ୍କୁ ଛାଡ଼ି ଅନ୍ୟ କୌଣସି ରାଜକୁମାରଙ୍କ ଗଳାରେ ବରଣ ମାଳା ପିନ୍ଧାଇ ଦେ । ଅଥବା ତୁ ଯଦି ଏପରି କରିବାକୁ ଏବେ ସଙ୍କୋଚ ବୋଧ କରୁ, ତେବେ ମୁଁ ଏମାନଙ୍କ ମଧ୍ୟରୁ କୌଣସି ଏକ ରାଜକୁମାରଙ୍କ ସହିତ ବିଧି ପୂର୍ବକ ତୋର ବିବାହ କାର୍ଯ୍ୟ ସମ୍ପାଦନ କରିବି । ଏହି କଥାରେ ତୁ ମୋତେ ସ୍ୱୀକୃତି ପ୍ରଦାନ କର ।"

ପିତାଙ୍କ ମୁହଁରୁ ଏପରି କଥା ଶୁଣି ଅତ୍ୟନ୍ତ ଲଜ୍ଜିତା ହୋଇ ତଳକୁ ଚାହିଁ କୁମାରୀ ଧୀରେ ଧୀରେ କହିଲା, "ପିତଃ ! ଆପଣ ମୋତେ ଗୁରୁଜନମାନଙ୍କ ସମ୍ମୁଖରେ ଏପରି କଥା କହି ଆଉ ଲଜ୍ଜା ଦିଅନ୍ତୁ ନାହିଁ ; ପରିସ୍ଥିତି କିନ୍ତୁ ମୋତେ କିଛି କହିବାକୁ ବିବଶ କରି ଦେଇଛି । ପିତଃ ! ଏହି କୁମାରଙ୍କର ଧୈର୍ଯ୍ୟ, ବୀରତ୍ୱ, ବଳ-ବୀର୍ଯ୍ୟ, ପରାକ୍ରମ ଓ ସାହସ ସମ୍ବନ୍ଧରେ ମୁଁ ବହୁ ପୂର୍ବରୁ ଶୁଣିଥିଲି । ଏହାଙ୍କର ଅଦ୍ୱିତୀୟ ରୂପ ଲାବଣ୍ୟ ମଧ୍ୟ ସର୍ବଜନ ସୁବିଦିତ । ତାଙ୍କର ବୀରତ୍ୱ ତ ମୁଁ ନିଜେ ଏବେ ସ୍ୱଚକ୍ଷୁରେ ଦେଖିଲି । ହଜାର ସଂଖ୍ୟକ ରାଜକୁମାର ଓ ସୈନ୍ୟ ଅଧର୍ମ ପୂର୍ବକ ତାଙ୍କୁ ଆକ୍ରମଣ କଲେ, କିନ୍ତୁ ସେ ଏକା ହୋଇ ସିଂହଙ୍କ ଭଳି ଧର୍ମ ପୂର୍ବକ ଯୁଦ୍ଧ କରୁଥିଲେ । ଯୁଦ୍ଧରେ ତାଙ୍କର ବୀରତ୍ୱ ଦେଖି ମୁଁ ତାଙ୍କୁ ନିଜର ସର୍ବସ୍ୱ ସମର୍ପଣ କରି ଦେଇଛି । ମୁଁ ଯେ କେବଳ ତାଙ୍କର ଅଦ୍ୱିତୀୟ ରୂପଲାବଣ୍ୟ, ସୌନ୍ଦର୍ଯ୍ୟ ତଥା ଯୁବାବସ୍ଥା ଉପରେ ଅନୁରକ୍ତ ତାହା ନୁହେଁ; ବରଂ ତାଙ୍କର ବୀରତ୍ୱ ହିଁ ତାଙ୍କୁ ବରରୂପେ ବରଣ କରିବା ପାଇଁ ମୋତେ ବାଧ୍ୟ କଲା । ପିତଃ ! କ୍ଷତ୍ରୀୟ କନ୍ୟା ଥରେ ମାତ୍ର ପତି ବରଣ କରେ । ମନରେ ସେ ଯାହାଙ୍କୁ ଆତ୍ମସମର୍ପଣ କରିଥାଏ, ସେହି ହିଁ ତା'ର ଜୀବନ ମରଣ ସାଥୀ ହୋଇ-ଥାଏ । ଏହି ରାଜକୁମାର ମୋର ହାତ ଧରି ରଥରେ ବସାଇ ଥିଲେ । ମୁଁ ମଧ୍ୟ ନିଜ ହାତକୁ ତାଙ୍କ ହାତ ଆଡ଼େ ସ୍ୱେଚ୍ଛାରେ ବଢ଼ାଇ ଦେଇଥିଲି । ସେ ଏକ ପ୍ରକାର ମୋର ପାଣି ଗ୍ରହଣ କରି ଅଛନ୍ତି । ଏବେ ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ଅନ୍ୟ କୌଣସି ପୁରୁଷଙ୍କ ଆଡ଼କୁ ମୁଣ୍ଡ ଉଠାଇ ଚାହିଁ ପାରିବି ନାହିଁ । ଯୁଦ୍ଧରେ ତାଙ୍କର ଯଶ ଓ ପରାକ୍ରମର ନିଶ୍ଚିତ ଭାବେ ବ୍ୟାଘାତ ଘଟିଛି । ତାଙ୍କୁ ବନ୍ଦୀକରି ଆଣିବା ତାଙ୍କ ପାଇଁ ଅବଶ୍ୟ ଲଜ୍ଜାର ବିଷୟ, କିନ୍ତୁ ସେ ପ୍ରକୃତରେ ପରାଜିତ ନୁହନ୍ତି । ଅଧର୍ମ ଯୁଦ୍ଧରେ ରାଜାଗଣ ତାଙ୍କୁ ଧରି ଆଣିଛନ୍ତି । ସେ ତ ମୋର ପତି, ତାଙ୍କ ବ୍ୟତୀତ ଅନ୍ୟ କୌଣସି ରାଜକୁମାର ମୋର ପାଣି ଗ୍ରହଣ କରି ନ ପାରନ୍ତି ।"

କନ୍ୟା ମୁହଁରୁ ଏପରି ବୀରୋଚିତ ଦୃଢ଼ ବଚନ ଶୁଣି ବିଶାଳ ଅତ୍ୟନ୍ତ ପ୍ରସନ୍ନ ହୋଇ କୁମାର ଅବୀକ୍ଷିତଙ୍କୁ ବିନମ୍ରର ସହିତ କହିଲେ—"ରାଜକୁମାର ! ମୋର କନ୍ୟା ଧର୍ମ ମାର୍ଗରେ ତାର ବକ୍ତବ୍ୟ ପ୍ରକାଶ କରିଛି । ଆପଣ ବୀରତ୍ୱ ଓ ଶୁରତା ପାଇଁ ଏ ପୃଥିବୀରେ ସର୍ବତ୍ର ପ୍ରସିଦ୍ଧ ଅଟନ୍ତି । ମୋର କନ୍ୟା ସର୍ବଥା ନିର୍ଦ୍ଦୋଷ । ଆପଣ ମୋ ଉପରେ ଅନୁଗ୍ରହ କରି କନ୍ୟାର ପାଣି ଗ୍ରହଣ କରନ୍ତୁ । ମୋତେ କୃତାର୍ଥ କରନ୍ତୁ ଓ ମୋ କୁଳର କୀର୍ତ୍ତିକୁ ଉଜ୍ଜ୍ୱଳ କରନ୍ତୁ । ମୋର ଚିନ୍ତା ଦୂର କରି ମୋ ମୁଣ୍ଡ ଉପରେ ଥିବା ବୋଝକୁ ହାଲୁକା କରନ୍ତୁ ଓ ଏହି କନ୍ୟାର ମନୋରଥ ପୂର୍ଣ୍ଣ କରନ୍ତୁ ।"

ମହାରାଜ ବିଶାଳଙ୍କର ଏହି କଥା ଶୁଣି କୁମାର ନୀରବ ରହିଲେ । ସେ କୌଣସି ଉତ୍ତର ନ ଦେଇ ନିଜର ଦେହି ମହାରାଜ କରନ୍ଧମ ନିଜର ପୁତ୍ରକୁ

କହିଲେ—"ବତ୍ସ ! ଦେଖ, ଏ ରାଜା କେତେ ଧର୍ମାତ୍ମା ଓ ବିନୟୀ ଅଟନ୍ତି । ପୁନଶ୍ଚ ଏହି କନ୍ୟା କେତେ ସୁଶୀଳା, ଗୁଣବତୀ ଓ ରୂପବତୀ । ତୁମ ପ୍ରତି ତାର କେତେ ସୁଦୃଢ଼ ଅନୁରାଗ । ରାଜା ମଧ୍ୟ ତୁମ ସହିତ ତାହାର ବିବାହ କରିବା ପାଇଁ ଆଗ୍ରହୀ । ଆମ ସମସ୍ତଙ୍କର ଇଚ୍ଛା, ତୁମକୁ ପୁତ୍ରବଧୂ ସହିତ ଦେଖି ଖୁସିହେବୁ । ଏଣୁ ତୁମେ ଏହାଙ୍କ ପ୍ରସ୍ତାବକୁ ସ୍ୱୀକାର କରିନଅ ଓ ଏହି ନିର୍ଦ୍ଦୋଷ ନିରୀହ କନ୍ୟାକୁ ଗ୍ରହଣ କର ।"

ପିତାଙ୍କ କଥା ଶୁଣି କୁମାର ଲାଜ ଲାଜ ହୋଇ କହିଲେ—"ପିତଃ ! ମୁଁ ଜାଣେ, ଏ ମହାରାଜ ଉଚ୍ଚ ବଂଶର କୁଳୀନ ନରପତି ଅଟନ୍ତି । ମୋତେ ଏହା ମଧ୍ୟ ବିଦିତ ଅଛି ଯେ ଏହି କନ୍ୟା ସର୍ବଗୁଣ ସମ୍ପନ୍ନା, ସୁନ୍ଦରୀ ତଥା ସୁଶୀଳା ଅଟେ । ମୁଁ ଯଦି ନିଜର ଯୋଗ୍ୟତା ଅନୁସାରେ ତାଙ୍କୁ ପତ୍ନୀରୂପେ ପାଇ ପାରେ ତେବେ ମୁଁ ଅତ୍ୟନ୍ତ ପ୍ରସନ୍ନ ହେବି । ଆପଣଙ୍କର ଆଜ୍ଞାକୁ ମୁଁ ସର୍ବଥା ସବୁ ସମୟରେ ବିନା ବିଚାରରେ ମାନି ଆସିଛି, କେବେ ଆପଣଙ୍କ ଆଜ୍ଞା ଲଙ୍ଘନ କରିଥିବା କଥା ମୋର ମନେ ପଡ଼ୁନାହିଁ । କିନ୍ତୁ ମୁଁ ମୋର ଅଯୋଗ୍ୟତା କାରଣରୁ ସର୍ବଥା ଏହି କନ୍ୟାର ପତି ହେବା ପାଇଁ ଅନୁପଯୁକ୍ତ । ଆପଣ ମୋହବଶ ହୋଇ ମୋତେ ଏପରି ଆଜ୍ଞା ନ ଦିଅନ୍ତୁ, ଯାହାକି ପାଳନ କରିବାରେ ମୁଁ ଅସମର୍ଥ ହେବି । ଯାହା ହେବାର ହେଉ ପଛକେ, ମୁଁ ଏବେ ବିବାହ କରିବି ନାହିଁ ।"

କୁମାରଙ୍କର ଏପରି ଦୃଢ଼ ବଚନ ଶୁଣି ପ୍ରତ୍ୟେକଙ୍କ ମୁଖମଣ୍ଡଳରେ ହତାଶର ଛାୟା ଖେଳିଗଲା । ମହାରାଜ ବିଶାଳ ନିରାଶାର ସ୍ୱରରେ ନିଜର କନ୍ୟା ବୈଶାଳିନୀକୁ କହିଲେ—"ମା ! କୁମାର ନିଜର ପ୍ରତିଜ୍ଞାରେ ଅଟଳ । ସେ ନିଜ ପ୍ରତିଜ୍ଞାରୁ ବିଚ୍ୟୁତ ହୋଇ ପାରିବେ ନାହିଁ । ଏଣୁ ଏବେ ତୁ ତୋର ମନ ତାଙ୍କଠାରୁ ହଟାଇ ଆଣ । ଭାଗ୍ୟକୁ କିଏ ବା ବଦଳାଇବାରେ ସକ୍ଷମ ହୋଇ ପାରିବ ? କୁମାରୀ କନ୍ୟାମାନଙ୍କ ମନରେ ଅନେକ ଇଚ୍ଛା ଜାଗ୍ରତ ହୋଇଥାଏ, ସେମାନେ ଅନେକ ଆଡ଼େ ମନ ବଳାଇ ଥାଆନ୍ତି, ଶେଷରେ ଯାହାଙ୍କ ସହିତ ତାଙ୍କର ଭାଗ୍ୟକୁ ବିବାହ ହୋଇ ଯାଏ, ସେହି ତାଙ୍କର ପତି ହୁଅନ୍ତି । ପୁନଶ୍ଚ ଅନ୍ୟମାନେ ସେମାନଙ୍କ ପାଇଁ ପରପୁରୁଷ ହୋଇ ଯାଆନ୍ତି । ତୁ ଏବେ କନ୍ୟା, ଆଉ ବାତୁଳଙ୍କ ପରି ହୁଅ ନା । ଆଗତ ରାଜକୁମାରମାନଙ୍କ ମଧ୍ୟରୁ କୌଣସି ରାଜକୁମାରଙ୍କୁ ନିଜର ପତି ରୂପେ ବରଣ କରି ନେ ।"

କୁମାରୀ କହିଲା—"ପିତା ! ଆପଣ ମୋତେ ଆଉ ଅଧିକ କିଛି କୁହନ୍ତୁ ନାହିଁ । ଏହି ତ ମୋର ପତି ଅଟନ୍ତି । ଯଦି ସେ ମୋତେ ପତ୍ନୀରୂପେ ଗ୍ରହଣ କରିବାକୁ ନ ଚାହୁଁଛନ୍ତି, ଗ୍ରହଣ ନ କରନ୍ତୁ । ମୁଁ ବନକୁ ଯାଇ ଘୋର ତପସ୍ୟା କରିବି, ତାଙ୍କର

ନାମମାଳା ଜପ କରିବ । ଏ ଜନ୍ମରେ ନ ହେଉ ପଛେ, ପରବର୍ତ୍ତୀ ଜନ୍ମରେ ମୁଁ ତାଙ୍କୁ ଅବଶ୍ୟ ପତିରୂପେ ବରଣ କରିବ । କୁଳବତୀ କନ୍ୟାଙ୍କର ହୃଦୟ ଏକ । ସେମାନେ ଯାହାଙ୍କୁ ହୃଦୟରେ ସ୍ଥାନ ଦେଇ ଥାଆନ୍ତି, ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କୁ ହିଁ ହୃଦୟରୁ ଅନ୍ତର କରି ପାରନ୍ତି ନାହିଁ । ଏକକୁ ଛାଡ଼ି ଅନ୍ୟକୁ ବରଣ କରିବା ହେଉଛି କୁଳଟା ମାନଙ୍କର କାର୍ଯ୍ୟ । ଏ ଜନ୍ମରେ କାହିଁକି ଜନ୍ମ ଜନ୍ମାନ୍ତରେ ମଧ୍ୟ ମୋର ଅନ୍ୟ କେହି ପତି ହୋଇ ନ ପାରନ୍ତି । ଆପଣ ଏ ସମ୍ବନ୍ଧରେ ମୋତେ ଆଉ ଅଧିକ କିଛି କହିବାକୁ ଆଗ୍ରହ ପ୍ରକାଶ କରନ୍ତୁ ନାହିଁ ।"

ସୂତ କହିଲେ—ମୁନିଗଣ ! ଉଭୟ ରାଜା କୁମାର ଓ କୁମାରୀଙ୍କର ଏ ପ୍ରକାର ପ୍ରତିଜ୍ଞାରେ ଅତ୍ୟନ୍ତ ଦୁଃଖିତ ହେଲେ । କିନ୍ତୁ ଯୁବାବସ୍ଥା ସମ୍ପନ୍ନ ସନ୍ତାନ ମାନଙ୍କୁ ସେମାନେ ଆଉ କଣ ଅବା କହି ପାରିଥାନ୍ତେ ? ଉଭୟେ ନିରାଶ ହୋଇଗଲେ । ରାଜା ବିଶାଳଙ୍କର ପ୍ରସନ୍ନତା ପାଇଁ ମହାରାଜ କରନ୍ଧମ ତିନଦିନ ପର୍ଯ୍ୟନ୍ତ ତାଙ୍କର ଆତିଥ୍ୟ ଗ୍ରହଣ କଲେ ଓ ଶେଷରେ ନିଜ ନଗରକୁ ଫେରି ଆସିଲେ ।

ଏଣେ ରାଜକୁମାରୀ ବୈଶାଳିନୀ ନିଜର ପୂଜ୍ୟ ପିତାମାତାଙ୍କଠାରୁ ଅନୁମତି ନେଇ ତପସ୍ୟା କରିବାକୁ ବନ ମଧ୍ୟକୁ ଚାଲିଗଲେ । ପରମ ସୁକୁମାରୀ ସୁନ୍ଦରୀ ଯୁବତୀ କନ୍ୟାକୁ ଘୋର ବନ ମଧ୍ୟରେ କଠୋର ତପସ୍ୟା କରିବା ପାଇଁ ଯାଉଥିବାର ଦେଖି ପିତା ମାତାଙ୍କର ହୃଦୟ ବିଦୀର୍ଣ୍ଣ ହେବାକୁ ଲାଗିଲା । ସେମାନଙ୍କ ଅଶ୍ରୁରେ କନ୍ୟାର କେଶଗୁଚ୍ଛ ସମ୍ପୂର୍ଣ୍ଣରୂପେ ଭିଜିଗଲା । କିନ୍ତୁ କୁମାରୀ ତ ଦୃଢ଼ ପ୍ରତିଜ୍ଞ ଥିଲେ । ସେ ପିତାମାତାଙ୍କ ପାଦ ସ୍ପର୍ଶକରି ଘୋର ବନ ମଧ୍ୟକୁ ଚାଲିଗଲେ ଓ ସେଠାକୁ ଯାଇ ନିରାହାର ରହି କଠୋର ତପକରିବାକୁ ଲାଗିଲେ । ସେ ତିନମାସ ପର୍ଯ୍ୟନ୍ତ କିଛି ଖାଇଲେ ନାହିଁ । ଏହା ଦ୍ୱାରା ତାଙ୍କର ସମସ୍ତ ରକ୍ତ ମାଂସ ଶୁଖିଗଲା । ଶରୀର କେବଳ ଅସ୍ଥିମୟ ଦେଖାଗଲା । ତାଙ୍କର ମୁଖ ନିଷ୍ପ୍ରଭ ହୋଇ ଯାଇଥିଲା, ଚକ୍ଷୁ କୋଟରଗତ ହୋଇ ଯାଇଥିଲା, ଦୂରରୁ ତାଙ୍କୁ ଦେଖିଲେ ସେ ଅସ୍ଥି କଙ୍କାଳ ସାର ଦେଖା ଯାଉଥିଲେ ।

ଏକେ ତ ସେ ରାଜକନ୍ୟା ଥିଲେ, ଦ୍ୱିତୀୟରେ ଅତ୍ୟନ୍ତ ସୁକୁମାରୀ ଓ ମାତାଙ୍କର ଅତ୍ୟନ୍ତ ଗେହ୍ଲା ଝିଅ ଥିଲେ । ଏ ପର୍ଯ୍ୟନ୍ତ ସେ କେବେ ହେଲେ ବି ଉପବାସ କରି ନ ଥିଲେ । ମୁକ୍ତ ପ୍ରାନ୍ତରରେ ସେ କେବେ ହେଲେ ପାଦ ପକାଇ ନଥିଲେ । ନିଜ ହାତରେ କୌଣସି କାର୍ଯ୍ୟ କେବେ କରି ନଥିଲେ । ଏବେ ତାଙ୍କୁ ସମସ୍ତ କାର୍ଯ୍ୟ କରିବାକୁ ପଡ଼ୁଥିଲା । ତିନମାସ କିଛି ନ ଖାଇବାରୁ ତାଙ୍କୁ ଅତ୍ୟନ୍ତ କଷ୍ଟ ବୋଧ ହେବାକୁ ଲାଗିଲା । କ୍ଷୁଧା ଯୋଗେ ତାଙ୍କର ଉତ୍ସାହ ହ୍ରାସ ପାଇବାକୁ ଲାଗିଲା ।

ତାଙ୍କର ଜୀବନ ଦୁର୍ବହ ପ୍ରତୀତ ହେବାକୁ ଲାଗିଲା । ଏବେ ସେ ଅତ୍ୟନ୍ତ ଦୁଃଖିତ ହୋଇ ଏହା ନିଶ୍ଚିତ କରନେଲେ ଯେ ମୁଁ ଆତ୍ମହତ୍ୟା କରିବି ।

ସୂତ କହିଲେ—"ମୁନିଗଣ ! ଏ ମାନବଜୀବନ ଏକ ରହସ୍ୟମୟ ଜୀବନ । ନିର୍ଦ୍ଧନ ମନେକରେ ଧନୀ ସୁଖୀ, କିନ୍ତୁ ଧନୀମାନଙ୍କ ପାଇଁ ଧନ ଅଭିଶାପରେ ପରିଣତ ହୁଏ, କାରଣ ସେମାନଙ୍କର ଲାଳସା ଅତି ଅଧିକ ମାତ୍ରାରେ ବୃଦ୍ଧିପାଏ । ଅସୁନ୍ଦରୀ କନ୍ୟାମାନେ ମନେ କରନ୍ତି, ସୁନ୍ଦରୀ କନ୍ୟାମାନେ ପରମ ସୁଖୀ, କିନ୍ତୁ ସମୟ ସମୟରେ ସୁନ୍ଦରତା ଅଭିଶାପ ରୂପରେ ଦୁଃଖ ଦାୟକ ହୋଇଥାଏ । ସୁନ୍ଦରୀ କନ୍ୟାଙ୍କୁ ନିଜ ଅନୁରୂପ ପତି ନ ମିଳିଲେ ଏକେତ ଦୁଃଖ, ଦ୍ୱିତୀୟରେ ସେ ଯାହାଙ୍କୁ ପତିରୂପେ ବରଣ କରିବାକୁ ଚାହୁଁଥିବେ, ସେ ଯଦି ନ ଚାହାନ୍ତି ତେବେ ତାହା ମଧ୍ୟ ଏହାଠାରୁ ବଳି ଦୁଃଖ । ଏହିପରି ସଂସାରରେ ସୁଖ ନାହିଁ । ଚିନ୍ତା, ଗ୍ଲାନି, ଦୁଃଖ ଇତ୍ୟାଦିରେ ମାନବଜୀବନ ସର୍ବଦା ପରିପୂର୍ଣ୍ଣ । ଏ ସମସ୍ତ ସର୍ବଦା ତାକୁ ଘେରି ରହିଛନ୍ତି । ବୈଶାଳିନୀ ପରମ ରୂପବତୀ ଥିଲେ । ସମସ୍ତ ରାଜକୁମାରୀ ତାଙ୍କ ସୌନ୍ଦର୍ଯ୍ୟକୁ ଈର୍ଷା କରୁଥିଲେ । ହଜାର ହଜାର ରାଜକୁମାରଙ୍କର ଆଖି ତାଙ୍କ ଉପରେ ଏକ ସମୟରେ ଲାଗିରହୁଥିଲା । ଆଜି ସେ ମଉଳି ଯାଇଥିବା ବନମାଳତୀ ଭଳି ଶୂନ୍ୟ ଅରଣ୍ୟରେ ପଡ଼ି ଶୁଖି ଶୁଖି ଯାଉଛନ୍ତି । ତାଙ୍କ ମୁହଁକୁ ଚାହିଁବାକୁ ଏଠାରେ କେହି ନାହିଁ, ଏହା ଭାଗ୍ୟର ବିଡ଼ମ୍ବନା ନୁହେଁତ ଆଉ କଣ ?"

ବୈଶାଳିନୀ କ୍ଷୁଧାକାରଣରୁ ଦୁଃଖୀ ଥିଲେ । ତାଙ୍କର ଚିତ୍ତ ଅବୀକ୍ଷିତଙ୍କ ରୂପରେ ନିବିଷ୍ଟ ହୋଇଥିଲା । ତାଙ୍କୁ ପାଇବାର ଆଉ କୌଣସି ଆଶା ନ ଥିଲା । ତାଙ୍କୁ ପାରାପାର ଶୂନ୍ୟ ଦେଖାଯାଉଥିଲା । ମନୁଷ୍ୟଜୀବନ କେବଳ ଆଶା ଉପରେ ହିଁ ତିଷ୍ଠିରହେ । ନିରାଶାରେ ଜୀବନ ଶୂନ୍ୟ, ଜୀବନର ଗତି ରୁଦ୍ଧ, ସଂଚଳନରୁଦ୍ଧ, ଜୀବନ ନିର୍ବିର୍ଯ୍ୟ ଓ ବିକାଶ ବିହୀନ । କୁମାରୀ ସ୍ଥିର କଲେ ଏ ଶରୀରକୁ ଅନ୍ତ କରିଦେବି । ଏହା ଚିନ୍ତା କରି ସମ୍ମୁଖରେ ବହିଯାଉଥିବା ନଦୀକୁ ଦେଖି ସେ ଚିନ୍ତା କରିବାକୁ ଲାଗିଲେ— "ଏହି ନଦୀର ଗର୍ଭରେ କେତେ ଉତ୍ସାହ ଭରି ରହିଛି, କେତେ ଆଶା ଆକାଙ୍କ୍ଷା ନେଇ ପ୍ରସନ୍ନଚିତ୍ତ୍ୱକ ସେ ଆଗେଇ ଚାଲିଛି । ମୋର ପତି ଲାଭ ହେବାର ଆଶା ନାହିଁ । ପ୍ରାଣ ବଲ୍ଲଭଙ୍କ କଣ୍ଠରେ ବାହୁଛନ୍ଦି ତାଙ୍କର ମନୋହର ମୁଖ ଓ ରୂପଲାବଣ୍ୟ ଦର୍ଶନ କରିବାର ଆଶା ପୂର୍ଣ୍ଣ ହେବାର କୌଣସି ସମ୍ଭାବନା ନାହିଁ । ମୋର ଜୀବନରେ ଉତ୍ସାହ ନାହିଁ, ହୃଦୟରେ ଉଦ୍ଦୀପନା ନାହିଁ, ପୁନଶ୍ଚ ଏ ଜୀବନର ଭାର ବହନ କରିବା ବ୍ୟର୍ଥ । ଏହି ନଦୀ ଏକ ସ୍ତ୍ରୀ ସ୍ୱରୂପା, ନାରୀ ଜାତିର ଅଭିଳାଷ ତାଙ୍କୁ ଉତ୍ତମ ରୂପେ ଜଣା । ନାରୀ ମାନଙ୍କର କଷ୍ଟକୁ ଏ ନିଷ୍ଠୁର ପୁରୁଷ ଜାତି କଣ ସହଜରେ ଅନୁଭବ କରିପାରନ୍ତି ? ମୁଁ ଏହି ନଦୀକୁ ହିଁ ମୋର ଶରୀର ସମର୍ପିତ କରିଦେବି । ସେ ଦିନେ ନା ଦିନେ ମୋତେ ମୋର ପ୍ରାଣବଲ୍ଲଭଙ୍କ ସହିତ ମିଳନ କରାଇଦେବ ।" ଏହା ସ୍ଥିରକରି

ଉଚ୍ଚ ପାଷାଣ ଚଟାଣ ଉପରେ ଆରୋହଣ କରି ସେଠାରୁ ଡେଇଁ ପ୍ରାଣ ବିସର୍ଜନ କରିବା ପାଇଁ ଉଦ୍ୟତ ହେବାକ୍ଷଣି, ତାଙ୍କୁ ଆକାଶ ମାର୍ଗରେ ଏକ ଦେବଦୂତ ଦର୍ଶନ ଦେଲେ । ସେ ହାତ ହଲାଇ କହୁଥିଲେ "ଦେବି ! ତୁମେ ଏପରି ଦୁଃସାହସ କରନାହିଁ, ମୋ କଥା ଶୁଣ ।"

ଦେବଦୂତଙ୍କ ମୁଖରୁ ଏ କଥା ଶୁଣି ବୈଶାଳିନୀ ଚମକି ପଡ଼ିଲେ । ସେ ନଦୀ ଗର୍ଭକୁ ଆଉ ଲମ୍ଫପ୍ରଦାନ କଲେ ନାହିଁ । ସେ ଭୂମିଷ୍ଠ ପ୍ରଣାମ କରି ଶ୍ରଦ୍ଧା ପୂର୍ବକ ଦେବଦୂତଙ୍କୁ କରୁଣ ସ୍ୱରରେ ପଚାରିଲେ – "ହେ ଦେବ ! ଆପଣ କିଏ ? ଏ ଅଭାଗିନୀ ପ୍ରତି ଆପଣ ଅକାରଣ ଏତେ କରୁଣ ପ୍ରଦର୍ଶନ କାହିଁକି କରୁଛନ୍ତି । ମୁଁ ମୋର ଏଇ ଭାର ସ୍ୱରୂପ ଜୀବନକୁ ରଖି ଲାଭ କଣ ? କେଉଁ ଆଶା ନେଇ ମୁଁ ବଞ୍ଚିରହିବି ? ଆପଣ ମୋତେ ମରିବାକୁ କାହିଁକି ଦେଉ ନାହାନ୍ତି ? ମୋତେ କାହିଁକି ଅଟକାଉଛନ୍ତି ?"

ଦେବଦୂତ କହିଲେ—"ଦେବି ! ମୁଁ ଜଣେ ଦେବଦୂତ । ଦେବତାମାନେ ମୋତେ ପଠାଇଛନ୍ତି । ଦେଖ ତୁମେ ଏପରି ଦୁଃସାହସ ଆଉ କରନାହିଁ । ମାନବ ଜୀବନ ଅମୂଲ୍ୟ । ଏହା ଏପରି ନାଶ କରିଦେବା ଉଚିତ ନୁହେଁ । ମନୁଷ୍ୟ ଯଦି ବଞ୍ଚିରହେ ତେବେ ଅସଂଖ୍ୟ କଲ୍ୟାଣପ୍ରଦ କାର୍ଯ୍ୟ କରିପାରେ । ଦିନେ ନା ଦିନେ ତାର ଭାଗ୍ୟରେ ପରିବର୍ତ୍ତନ ଘଟେ ।"

କୁମାରୀ କହିଲେ – "ଆଉ ଏବେ ମୋର କି ଭାଗ୍ୟ ବଦଳିବ ଦେବଦୂତ ! ମୁଁ କେଉଁ ଆଶା ନେଇ ଜୀବନ ଧାରଣ କରିବି ? ମୋର ଆଶାର ଦୀପ ତ ଲିଭି ଯାଇଛି । ଯାହାଙ୍କ ମୁଖ ଦେଖି ବଞ୍ଚିରହି ପାରିଥାଆନ୍ତି, ତାଙ୍କୁ ତ ମୋ ଭାଗ୍ୟ ନିଷ୍ଠୁର କରି ଦେଲା । ତୁମେ ଦେବଦୂତ ହୋଇପାର, ମୁଁ ତାହା ଅବିଶ୍ୱାସ କରୁନାହିଁ, ତୁମର ପାଦ ଭୂମି ସ୍ପର୍ଶ କରୁନାହିଁ, ତୁମେ ଆକାଶରେ ଶୂନ୍ୟରେ ଅବସ୍ଥାନ କରି ମୋ ସହିତ ବାର୍ତ୍ତାଳାପ କରୁଛ, ଏଥିରୁ ମୁଁ ଅନୁମାନ କରୁଛି, ତୁମେ ନିଶ୍ଚୟ ଦେବଦୂତ ଅଟ । ତେବେ ଦେବତାମାନେ ମୋ ପାଇଁ କି ସନ୍ଦେଶ ପଠାଇଛନ୍ତି କୁହନ୍ତୁ ।"

ଦେବଦୂତ କହିଲେ—"କୁମାରୀ ! ତୁମେ ସାଧାରଣ ସ୍ତ୍ରୀ ନାହିଁ । ଦେବତା-ମାନେ କହୁଛନ୍ତି ତୁମେ ଆତ୍ମହତ୍ୟା କରନାହିଁ । ତୁମେ ବୀର ପ୍ରସବିନୀ ଜନନୀ ହେବ ! ତୁମ ଗର୍ଭରୁ ଏକ ଅତ୍ୟନ୍ତ ତେଜସ୍ୱୀ ଚକ୍ରବର୍ତ୍ତୀ ରାଜା ଜନ୍ମ ଗ୍ରହଣ କରିବେ । ଏ ସମଗ୍ର ବିଶ୍ୱକୁ ସେ ଶାସନ କରିବେ । ଦୁଷ୍ଟ ମ୍ଳେଚ୍ଛମାନଙ୍କୁ ସେ ମାରି ନିର୍ମୂଳ କରି-ଦେବେ ଓ ଧର୍ମ ଏବଂ ସତ୍ୟର ପ୍ରହରୀ ହେବେ । ତାଙ୍କପରି ଶୂରବୀର, ଯଶସ୍ୱୀ ଅନ୍ୟ କୌଣସି ରାଜା ହେବେ ନାହିଁ ।"

ବୈଶାଳିନୀ କହିଲେ—"ଦେବଦୂତ ! ତୁମେ କି ଆଶ୍ଚର୍ଯ୍ୟ କଥା କହୁଅଛ ? ମୋର ତ ଏ ପର୍ଯ୍ୟନ୍ତ ବିବାହ ହୋଇନାହିଁ । ଯାହାଙ୍କୁ ମୁଁ ମନରେ ବରଣ କରିଅଛି, ସେତ ଆଜନ୍ମ ଅବିବାହିତ ରହିବା ପାଇଁ ଦୃଢ଼ ପ୍ରତିଜ୍ଞ । ସେ କେବେ ହେଲେ ନିଜ ପ୍ରତିଜ୍ଞାରୁ ବିଚଳିତ ହୋଇ ପାରିବେ ନାହିଁ । ମୁଁ ତାଙ୍କ ବ୍ୟତୀତ ଅନ୍ୟ କାହାରିକୁ ସ୍ୱପ୍ନରେ ମଧ୍ୟ ପତି ରୂପେ ବରଣ କରି ପାରିବି ନାହିଁ । ଏପରି ସ୍ଥଳେ ବିନା ପତିରେ ମୋ ଗର୍ଭରୁ ଚକ୍ରବର୍ତ୍ତୀ ପୁତ୍ର କିପରି ଜାତ ହେବ ? ପୁନଶ୍ଚ ମୁଁ ଦେବତାମାନଙ୍କ କଥାକୁ ଅବିଶ୍ୱାସ ମଧ୍ୟ କରି ପାରୁ ନାହିଁ । ସେମାନେ ସର୍ବଜ୍ଞ, ଭୂତ, ଭବିଷ୍ୟତ ଓ ବର୍ତ୍ତମାନର ସବୁ କଥା ଜାଣନ୍ତି । କିନ୍ତୁ ଏପରି ଅସମ୍ଭବ କଥା ଶୁଣି ମୁଁ ବଡ଼ ଆଶ୍ଚର୍ଯ୍ୟ ହେଉଛି ।"

ଦେବଦୂତ କହିଲେ—"ଦେବି ! ଭାଗ୍ୟକୁ ଟାଳିଦେବା ଶକ୍ତି, କାହାରି ନାହିଁ । ଭାଗ୍ୟ ସମ୍ମୁଖରେ ସମସ୍ତଙ୍କର ପ୍ରତିଜ୍ଞା ବ୍ୟର୍ଥ ହୋଇଯାଏ । ଏବେ ମୁଁ ଅଧିକ କିଛି କହୁ ନାହିଁ । ମୁଁ ତୁମକୁ କେବଳ ଏତିକି ମାତ୍ର କହିବାକୁ ଆସିଛି ଯେ, ତୁମେ ଆତ୍ମହତ୍ୟା ଚିନ୍ତା ପରିତ୍ୟାଗ କରି ସେହି ଶୁଭ ସମୟକୁ ଅପେକ୍ଷା କର । ସମୟ ଆସିଲେ ସବୁ କଥା ଅନୁକୂଳ ହୋଇଯିବ । ତୁମେ ନିଜ ଶରୀରର ଯତ୍ନ ନିଅ ଓ ଭଗବାନଙ୍କୁ ସ୍ମରଣ କର । ତପସ୍ୟାରେ ମଜ୍ଜି ରହିଲେ ତୁମର ନିଶ୍ଚୟ ମଙ୍ଗଳ ହେବ ।"

ଏହା କହୁ କହୁ ଦେବ ଦୂତ ସଙ୍ଗେ ସଙ୍ଗେ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ବୈଶାଳିନୀ ମଧ୍ୟ ଆତ୍ମହତ୍ୟା କରିବାର ଚିନ୍ତା ପରିତ୍ୟାଗ କଲେ । ଏବେ ସେ ଅରଣ୍ୟର ଗହଳ ଶାଖାଯୁକ୍ତ ବୃକ୍ଷତଳେ ପର୍ଣ୍ଣକୁଟୀର କରି ସେଠାରେ ଅବସ୍ଥାନ କଲେ । ସେଠାରେ ସେ ପଥର ଖଣ୍ଡମାନ ଆଣି ଗୋଟିଏ ପ୍ଲେଟ ଘେରି ନିର୍ମାଣ କରି ତା ଉପରେ କାଠ ସଜାଇ ରଖି ଘାସ କୁଟାରେ ତାହା ଛପର କରି ତହିଁରେ ବାସ କରିବାକୁ ଲାଗିଲେ । ଅରଣ୍ୟର କଅଁଳ, ପାଚିଲା, କଷା, ମିଠା ଫଳ ସଂଗ୍ରହ କରି ଖାଇ କୌଣସି ପ୍ରକାର ଜୀବନ ନିର୍ବାହ କଲେ । ଯାହା ଯେତେବେଳେ ମିଳିଲା ତାହା ଆହାର କରି ଶରୀରକୁ ସୁସ୍ଥ ରଖିଲେ ।

ତାଙ୍କ ମନରେ ଅବୀକ୍ଷିତଙ୍କର ସୁନ୍ଦର ମୂର୍ତ୍ତି ପ୍ରତିଭାତ ହେଉଥିଲା । ସମସ୍ତ ସମୟରେ ସେ ଚିନ୍ତା କରୁଥିଲେ—"ଏ ପୁରୁଷ ଜାତି କେଡ଼େ ନିଷ୍ଠୁର । ନାରୀ ହୃଦୟର ପୀଡ଼ାକୁ ଏମାନେ ଅନୁଭବ କରି ପାରନ୍ତି ନାହିଁ । ଯାହାଙ୍କ ଜୀବନ ସେମାନଙ୍କ କୃପା ଉପରେ ଆଧାରିତ, ତାହାଙ୍କୁ ସେମାନେ କେଡ଼େ ନିଷ୍ଠୁର ହୋଇ ଉପେକ୍ଷା କରି ପାରନ୍ତି ।" ପୁନଶ୍ଚ ସେ ଚିନ୍ତା କରୁଥିଲେ—"ତାଙ୍କର ଅବା ଦୋଷ କଣ ? ସେ ତ ଅତି ସ୍ନେହରେ ମୋ ହାତ ଧରି ନେଇଥିଲେ । ଭାଗ୍ୟ ତାଙ୍କର ପ୍ରତିକୂଳ ହେଲା । ଆତ୍ମ ଗୌରବୀ ମନୁଷ୍ୟକୁ ସଦୟ ଓ ନିର୍ଦ୍ଦୟ କରିଥାଏ । ସ୍ତ୍ରୀ ପୁରୁଷ କେହିହେଲେ ନିଷ୍ଠୁର

ନୁହନ୍ତି । ଦୈବ ହିଁ ନାମୂର । ଆତ୍ମ ଗୌରବ ପାଇଁ ସବୁ କିଛି କରିବାକୁ ପଡେ । ଏପରି ନ ହେଉଥିଲେ ମୋର କଣ କ୍ଷତି ହେଉଥିଲା । ସେଠାରେ ତ ଏକାଧିକ ରାଜ କୁମାର ଥିଲେ । କାହାରି ସହିତ ହେଲେ ତ ମୋର ବିବାହ ହୋଇ ପାରି ଥାଆନ୍ତା । କିନ୍ତୁ ତାହା ମୋର ଆତ୍ମ ଗୌରବର ପ୍ରତିକୂଳ ଥିଲା । ଯେପରି ମୁଁ ମୋର ଗୌରବକୁ ରକ୍ଷା କଲି ସେହିପରି ସେ ମଧ୍ୟ ନିଜର ଆତ୍ମ ଗୌରବକୁ ରକ୍ଷାକଲେ । ଭାଗ୍ୟ ଆମକୁ ଠକି ଦେଲା । ପରିସ୍ଥିତି ମେପରି ହୁଏ ତାହା ପ୍ରାଣୀମାନଙ୍କୁ ମେପରି କରିଦିଏ । ତା ନ ହେଉଥିଲେ ପୁରୁଷ ସ୍ତ୍ରୀକୁ ହୁଏ, ସ୍ତ୍ରୀ ପୁରୁଷକୁ, ଉଭୟଙ୍କ ହୃଦୟରେ ସ୍ନେହ ମମତା ରହିଛି, ଅନୁରାଗ ରହିଛି । ମିଳନର ଉତ୍କଣ୍ଠ ଇଚ୍ଛାହୁଏ, କିନ୍ତୁ ଭାଗ୍ୟ ତାହା କରାଇ ଦିଏ ନାହିଁ । ନିର୍ଦ୍ଦିଷ୍ଟ ସମୟ ନ ଆସିବା ପୂର୍ବରୁ କାହାରି ମିଳନ ହୋଇ ପାରେନାହିଁ । ତେଣୁ ମୁଁ ଏଠାରେ ବସି ବସି ସେହି ଶୁଭ ମୁହୂର୍ତ୍ତର ପ୍ରତୀକ୍ଷା କରିବି । ଯେତେବେଳେ ମୋର ତାଙ୍କ ସହିତ ମିଳନ ହେବାର ସମୟ ଆସିବ, ସେତେବେଳେ ଅବଶ୍ୟ ମିଳନ ହେବ । ଏହାକୁ କେହି ଅଟକାଇ ପାରିବେ ନାହିଁ । ଏହିପରି ଭାବରେ ସେ ଅବୀକ୍ଷିତଙ୍କର ରୂପ ଚିନ୍ତାକରି କାଳ କଟାଇବାକୁ ଲାଗିଲେ ।"

ଏଣେ କୁମାର ଅବୀକ୍ଷିତଙ୍କ ପିତା କରନ୍ଧମ ଓ ଧୀର ପ୍ରମବାନ୍ ମାତା ବୀରା ଏବେ ନିଜର ଏକମାତ୍ର ପୁତ୍ରକୁ ଅବିବାହିତ ଅବସ୍ଥାରେ ଦେଖି ଅତ୍ୟନ୍ତ ଦୁଃଖିତ ହେଲେ । ମା ମାନଙ୍କର ଏହାଠାରୁ ବଳି ଆଉ ଅଧିକ ଦୁଃଖ ଦାୟକ ଘଟଣା ନାହିଁ । ସେମାନଙ୍କ ସମ୍ମୁଖରେ ନିଜର ପୁତ୍ର ଅବିବାହିତ ରହିବା ଅତ୍ୟନ୍ତ ଦୁଃଖର କଥା । ପୁତ୍ରବଧୂ ସହିତ ପୁତ୍ରକୁ ଦେଖି ଅତ୍ୟନ୍ତ ଆନନ୍ଦିତ ଓ ପ୍ରଫୁଲ୍ଲିତ ହୁଅନ୍ତି । ପିତା ଚାହୁଁ ଥିଲେ ତାଙ୍କ ପୁତ୍ର ବିବାହ କରିବ, କିନ୍ତୁ ସେ ଜାଣୁଥିଲେ ଯେ ସେ ବଡ଼ ଜିଦ୍‌ଖୋର ଓ ପ୍ରତିଜ୍ଞାବଦ୍ଧ । କୌଣସି ପ୍ରତିଜ୍ଞା ଥରେ କରିନେଲେ ବ୍ରହ୍ମା ବି ତାକୁ ବିଚଳିତ କରି ପାରିବେ ନାହିଁ । ତେଣୁ ସେ ତା ଇଚ୍ଛା ବିରୁଦ୍ଧରେ ଆଉ ବିବାହ ପ୍ରସ୍ତାବ ରଖିଲେ ନାହିଁ ।

ଦିନେ ତାଙ୍କୁ ମା କହିଲେ—"ପୁତ୍ର ! ତୋ ସକାଶେ ମୋତେ ସମସ୍ତେ ଧୀର ପ୍ରସବିନୀ ବୋଲି କହନ୍ତି । ମୋର ଇଚ୍ଛା ମୁଁ ଗୋଟିଏ ବ୍ରତ ଆଚରଣ କରିବି । ତାହା ତୋ ସହାୟତାରେ ହିଁ ପୂରଣ ହୋଇ ପାରିବ ।"

ଅବୀକ୍ଷିତ କହିଲେ---"ମା ! ଏହାଠାରୁ ବଳି ସୌଭାଗ୍ୟର ବିଷୟ ମୋ ପାଇଁ ଆଉ କଣ ଥାଇପାରେ । ମୁଁ ନିଜର ପ୍ରାଣବାଜି ଦେଇ ତୁମର ବ୍ରତ ପୂରଣ କରିବି । ତୁମେ କି ବ୍ରତ ଆଚରଣ କରିବ କୁହ ।"

ମା କହିଲେ—"ଦେଖ, ମୁଁ କିମିଚ୍ଛିକ ବ୍ରତ ପାଳନ କରିବାକୁ ଇଚ୍ଛା କରିଛି । ଏଥିରେ ମୋତେ ଧନବାନ ଧନାଢ୍ୟ କୁବେରଙ୍କର, ସମସ୍ତ

ନିଧିମାନଙ୍କର, ନିଧିପାଳଙ୍କର ଓ ଲକ୍ଷ୍ମୀଙ୍କର ପୂଜା କରିବି । ଉପବାସର ଶେଷରେ ଯେଉଁ ଯାଚକ ଆସି ମୋତେ ଯାହା ମାଗିବେ, ତାଙ୍କର ସେହି ଯାଚଜ୍ଞା ପୂର୍ଣ୍ଣ କରିବାକୁ ପଡ଼ିବ ।"

ଅବୀକ୍ଷିତ ପ୍ରସନ୍ନ ହୋଇ କହିଲେ—"ମା ! ତୁମେ ଏହି "କିମିଚ୍ଛକ" ବ୍ରତ ପାଳନ କର । ପିତା ଯଦି ଏହି ବ୍ରତ ପାଳନ କରିବା ପାଇଁ ଆଜ୍ଞା ପ୍ରଦାନ କରିଛନ୍ତି, ତେବେ ତୁମେ ବିଳମ୍ବ ନକରି ତାହା କର । ଆମର ଏଠାରେ କୌଣସି ଦ୍ରବ୍ୟର ଅଭାବ ନାହିଁ । ତୁମ ଆଶୀର୍ବାଦରୁ କୌଣସି ଯାଚକ ମଧ୍ୟ ଏଠାରୁ ନିରାଶ ହୋଇ ଫେରିବେ ନାହିଁ । ସମସ୍ତଙ୍କ ଆଶା ପୂର୍ଣ୍ଣ କରାଯିବ ।"

ମା' କହିଲେ—"ବାବୁ ! ତୁ ଆଧିଷ୍ଠାନ ହୁଅ । ସାବଧାନତା ସହକାରେ ଯାଚକମାନଙ୍କର ଆଶା ପୂରଣ କରିବାକୁ ହେବ । ମୁଁ ତ ଅନ୍ତଃପୁରରେ ରହିଥିବି, ବାହାରେ ଦ୍ୱାରଦେଶକୁ ଯେ କେହି ଆସନ୍ତୁ ନା କାହିଁକି, ତାଙ୍କୁ ତାଙ୍କର ଇପ୍ସିତ ବସ୍ତୁ ଦେବାକୁ ହେବ ।"

ପୁତ୍ର ହାତଯୋଡ଼ି କହିଲେ "ମା ! ତାହା ହିଁ ହେବ ।" ପୁତ୍ରଠାରୁ ନିର୍ଭର ପ୍ରତିଶ୍ରୁତି ପାଇ କରନ୍ଧମଙ୍କର ସୌଭାଗ୍ୟବତୀ ପତ୍ନୀ ବୀର ପ୍ରସବିନୀ ବୀରା ଶାସ୍ତ୍ରୀୟ ବିଧି ଅନୁସାରେ "କିମିଚ୍ଛକ" ବ୍ରତ ପାଳନ କରିବାକୁ ଲାଗିଲେ । ସେ ଉପବାସ ରହି କୁବେର ଆଦି ଦେବତାଙ୍କୁ ପୁରୋହିତଙ୍କ ଦ୍ୱାରା ପୂଜା କରାଇ ନିୟମ ଅନୁସାରେ ସଂଯମ ପୂର୍ବକ ଉପାସନା କଲେ । ପ୍ରତ୍ୟହ ଦ୍ୱାର ଦେଶକୁ ଆସୁଥିବା ଭିକ୍ଷୁକମାନଙ୍କୁ ଧନଧାନ୍ୟ ବସ୍ତ୍ର-ଭୂଷଣ ବିତରଣ କରାଗଲା ।

ଥରେ ରାଜା ରାଜସଭାରେ ବସିଥିବା ସମୟରେ ତାଙ୍କର ବୃଦ୍ଧ ମନ୍ତ୍ରୀଗଣ ଉଦାସ ହୋଇ ତାଙ୍କ ସମ୍ମୁଖରେ ଆସି ଉପସ୍ଥିତ ହେଲେ । ରାଜା ସେମାନଙ୍କୁ ତାଙ୍କ ଦୁଃଖର କାରଣ ପଚାରିଲେ । ଏହାଶୁଣି ଜଣେ ବୃଦ୍ଧମନ୍ତ୍ରୀ କହିଲେ—"ପ୍ରଭୋ ! ଆପଣଙ୍କର ଏତେବଡ଼ ରାଜ୍ୟ । ଆପଣଙ୍କର ଏକମାତ୍ର ପୁତ୍ର । ସେ ମଧ୍ୟ ବିବାହ ନ କରିବା ପାଇଁ ପ୍ରତିଜ୍ଞାବଦ୍ଧ । ଏବେ ଏହିବଂଶ ଲୋପ ହେବାକୁ ବସିଲାଣି, ତେଣୁ ପିତୃପିତାମହଙ୍କୁ ଜଳ ତଥା ପିଣ୍ଡଦାନ କିଏ କରିବ ? ଆମ୍ଭେମାନେ ତାହା ହିଁ ଚିନ୍ତା କରୁଅଛୁ ।"

ରାଜା କହିଲେ—"ମନ୍ତ୍ରୀ ମହାଶୟ ! ମଙ୍ଗଳମୟ ଭଗବାନ ସମସ୍ତ ମଙ୍ଗଳ କରିବେ । ମୋର ଏହି ପୁତ୍ରକୁ ମୁଁ ଭଗବତ୍ ଆରାଧନା କରି ଲାଭ କରିଥିଲି । ଆମବଂଶ ଲୋପ ହେବା ଯଦି ଭଗବାନଙ୍କର ଇଚ୍ଛା, ତେବେ ତାହା ଅନ୍ୟଥା କରିବାର ସାମର୍ଥ୍ୟ କାହାର ?"

ମନ୍ତ୍ରୀଗଣ ସଭାରେ ବସି ରାଜାଙ୍କ ସହିତ ଆଲୋଚନା କରୁଥିବା ସମୟରେ ରାଜଦ୍ୱାର ଆଡ଼ୁ ଏକ ଶବ୍ଦ ଶୁଣାଗଲା । ତାଙ୍କର ପୁରୋହିତ ଦ୍ୱାର ଦେଶରେ ଠିଆହୋଇ ଭିକ୍ଷୁକଙ୍କୁ ସମ୍ବୋଧନ କରି କହୁଥିଲେ - "ମହାରାଜାଧିରାଜ କରନ୍ଧମଙ୍କର ଆରପ୍ରସବିନୀ ପତ୍ନୀ ପରମ ସୌଭାଗ୍ୟବତୀ ଆଜି "କନିଷ୍ଠକ" ବ୍ରତ ଅନୁଷ୍ଠାନ କରୁ ଅଛନ୍ତି । କାହାର କେଉଁ ବସ୍ତୁ ଦରକାର ? କିଏ କଣ ଚାହାନ୍ତି ? ଆଜି ସମସ୍ତଙ୍କର ଇଚ୍ଛା ପୂର୍ଣ୍ଣ କରାଯିବ । ଆଜି ଯେଉଁ ଯାଚକ ଯେଉଁ ବସ୍ତୁ ଯାଚନ୍ତା କରିବେ ତାଙ୍କୁ ତାହା ଦିଆ ଯିବ ।" ପୁରୋହିତ ଏତିକି କହି ନୀରବ ରହିଲେ । ପୁନଶ୍ଚ ରାଜକୁମାର ମଧ୍ୟ ମେଘ ଗମ୍ଭୀର ବାଣୀରେ ଭିକ୍ଷୁକମାନଙ୍କୁ ସମ୍ବୋଧନ କରି କହିଲେ - "ଭିକ୍ଷୁକଗଣ ! ତୁମ୍ଭମାନଙ୍କର ଯାହା ଆବଶ୍ୟକ ଆଜି ତାହା ମାଗିନିଅ । ମୁଁ ଆଜି ମୋର ସୌଭାଗ୍ୟବତୀ ମା'ଙ୍କର ପରମ ପ୍ରିୟ କାର୍ଯ୍ୟ କରିବାକୁ ଚାହୁଁଛି । ମୁଁ ପ୍ରତିଜ୍ଞା କରି କହୁଛି, ମୋଦ୍ୱାରା ଯେଉଁ ଯାଚକଙ୍କର ଯେଉଁ କାର୍ଯ୍ୟ ସିଦ୍ଧ ହେବ, ତାହା ମୁଁ ଅବିଳମ୍ବେ କରିବି । ଏଣୁ ଆପଣମାନେ କେହି ସଙ୍କୋଚ କରନ୍ତୁ ନାହିଁ । ମାତାଙ୍କୁ ପ୍ରସନ୍ନ କରିବା ପାଇଁ ମୁଁ ଆପଣମାନଙ୍କୁ ଆଜି ଇପ୍‌ସିତ ବସ୍ତୁ ପ୍ରଦାନ କରିବି । କେହି ହେଲେ ଆଜି ନିରାଶ ହୋଇ ଫେରିବେ ନାହିଁ ।"

କୁମାର ଦେଖି ଆଶ୍ଚର୍ଯ୍ୟ ହେଲେ ଯେ ଭିକ୍ଷୁକଙ୍କ ଭିଡ଼ ମଧ୍ୟରେ ମୁଣ୍ଡରୁ ମୁକୁଟ କାଢ଼ି ତାଙ୍କର ଚକ୍ରବର୍ତ୍ତୀ ପିତା କରନ୍ଧମ ଭିକ୍ଷାପାଇଁ ଠିଆ ହୋଇଛନ୍ତି । ସେ ପାଟିକରି କହୁଛନ୍ତି - "କୁମାରଙ୍କର ଜୟ ହେଉ, ମୁଁ ବି ଆଜି ଭିକ୍ଷୁକ, ମୋର ମଧ୍ୟ ଇଚ୍ଛା ପୂରଣ କରାଯାଉ ।"

ଏ କଥା ଶୁଣି କୁମାର ଲଜ୍ଜିତ ହେଲେ । ସେ ସଙ୍ଗେ ସଙ୍ଗେ ଖାଲି ଗୋଡ଼ରେ ପାହାଚରେ ତଳକୁ ଓହ୍ଲାଇ ଆସିଲେ ଓ ପିତାଙ୍କ ପାଦସ୍ପର୍ଶ କରି କହିଲେ — "ପିତଃ ! ଆଜ୍ଞା କରନ୍ତୁ ମୁଁ ଆପଣଙ୍କର କେଉଁ ଇଚ୍ଛା ପୂର୍ଣ୍ଣ କରିବି ? ମୁଁ ମା'ଙ୍କର ବ୍ରତ ସାଙ୍ଗୋପାଙ୍ଗ ପୂର୍ଣ୍ଣ କରିବା ପାଇଁ ଆପଣ ଯାହା ମାଗିବେ, ତାହା ନିଶ୍ଚୟ ଦେବି ।"

ରାଜା କହିଲେ - "ବେଟା, ଯଦି ତୁମେ ସତ୍ୟପ୍ରତିଜ୍ଞ ହୋଇଥାଅ ଓ ମାତାଙ୍କ ବ୍ରତ ଯଥାର୍ଥରେ ପୂର୍ଣ୍ଣ ହେବାକୁ ଚାହୁଁଥାଅ, ତେବେ ପ୍ରଥମେ ମୋ ଇଚ୍ଛା ପୂର୍ଣ୍ଣକର । ମୁଁ ମୋ କୋଳରେ ନାତିର ମୁଖ ଦର୍ଶନ କରିବାକୁ ଚାହେଁ । ପ୍ରେମରେ ମୋ ନାତି ମୁଖରେ ଚୁମ୍ବନ ଦେବାକୁ ଚାହେଁ ।"

ଏକଥା ଶୁଣି କୁମାର ସ୍ତମ୍ଭୀଭୂତ ହୋଇଗଲେ ଓ କିଛି ସମୟ ଚିନ୍ତାକରି କହିଲେ — "ପିତଃ ! ଆପଣ ଏ କି ଅସମ୍ଭବ ଯାଚଜ୍ଞା କରୁଛନ୍ତି ? ମୋ ବ୍ୟତୀତ ଆପଣଙ୍କର ଅନ୍ୟ ପୁତ୍ର ନାହାନ୍ତି, ମୁଁ ବିବାହ କରିବି ନାହିଁ ବୋଲି ପ୍ରତିଜ୍ଞା କରି ସାରିଛି, ତେଣୁ ଆପଣଙ୍କୁ ମୁଁ ନାତିମୁଖ କିପରି ଦର୍ଶନ କରାଇ ପାରିବି ?"

ପିତା କହିଲେ –"ଯଦି ତୁମ୍ଭେ ସତ୍ୟ ପ୍ରତିଜ୍ଞ ହୋଇଥାଅ, ତେବେ ଯେ କୌଣସି ପ୍ରକାରେ ମୋର ଇଚ୍ଛା ପୂର୍ଣ୍ଣ କରିବ । ଯଦି ତାହା ନକର ତେବେ ଦୁଇଟି ପାପରେ ତୁମ୍ଭେ ଭାଗୀ ହେବ । ଏକେତ ତୁମ୍ଭେ ମାତାଙ୍କ ସାମନାରେ ପ୍ରତିଜ୍ଞା କରିଛ ଯେ 'ମୁଁ ତୁମର ବ୍ରତକୁ ଜୀବନ ଦେଇ ମଧ୍ୟ ପୂର୍ଣ୍ଣ କରିବି, ଓ ଦ୍ୱିତୀୟରେ ଆମ୍ଭ ଯାଚକ-ମାନଙ୍କ ଆଗରେ ପ୍ରତିଜ୍ଞା କରିଛ ଯେ, "ତୁମ୍ଭମାନଙ୍କୁ ଇପ୍‌ସିତ ବସ୍ତୁ ପ୍ରଦାନ କରିବି ।" ବିବାହ କରିବାରେ ତ ତୁମର ଗୋଟିଏ ମାତ୍ର ପ୍ରତିଜ୍ଞା ଭଗ୍ନ ହେବ ଓ ବିବାହ ନ କଲେ ଦୁଇଟି ପାପ ତୁମକୁ ଲାଗିବ । ଏଣୁ ବିବାହ ନ କରିବାର ବୃଥା ପ୍ରତିଜ୍ଞାକୁ ଭଗ୍ନ କର । ବିବାହ କରି ନିଜ ମାତାଙ୍କର ପ୍ରିୟ କାର୍ଯ୍ୟ କର ଓ ମୋର ଇଚ୍ଛା ପୂର୍ଣ୍ଣ କର ।"

ଏହା ଶୁଣି କୁମାର ହତବୁଦ୍ଧି ହୋଇଗଲେ । ସେ କହିଲେ – "ଠିକ୍ ଅଛି ପିତା ! ମୁଁ ନିଶ୍ଚୟ ବିବାହ କରିବି । ଆପଣ ନାତି ମୁଖ ଦର୍ଶନ କରିବେ ଓ ମୋର ପ୍ରତିଜ୍ଞା ପାଳନ ହେବ । କିନ୍ତୁ ବିବାହ କରିବା ପାଇଁ ମୋତେ କିଛିଦିନ ସମୟ ଦିଅନ୍ତୁ ।"

ପିତା ପ୍ରସନ୍ନ ହୋଇ କହିଲେ – "ତୁମର ଯେପରି ଇଚ୍ଛା ସେପରି କର । ଯେଉଁଦିନ ଚାହୁଁଛ ସେଦିନ ବିବାହ କର, ମୋର ସେଥିରେ କୌଣସି ଆପତ୍ତି ନାହିଁ । ମୋର ନାତି ମୁଖ ଦର୍ଶନ କାମ୍ୟ ।" ଏହା କହି ରାଜା ରାଜସଭାକୁ ଚାଲିଗଲେ । କୁମାର ପ୍ରତ୍ୟେକ ଯାଚକଙ୍କୁ ସେମାନଙ୍କର ଇଚ୍ଛା ମୁତାବକ ଦାନ କରି ସନ୍ତୁଷ୍ଟ କରାଇଲେ । ସେଠାରୁ ଆସି ମାତାଙ୍କୁ କହିଲେ – "ମା ! ମୁଁ ତୁମର ବ୍ରତ ପୂର୍ଣ୍ଣକରି ଦେଇଛି । ତୁମ ନିକଟରେ ଯେଉଁ ପ୍ରତିଜ୍ଞା କରିଥିଲି, ତାହା ପାଳନ କରିଛି, କିନ୍ତୁ ଏବେ ମୋତେ ମୋ ନିଜ ପ୍ରତିଜ୍ଞା ଭଙ୍ଗ କରିବାକୁ ହେବ ।"

ମାତା ଖୁସିହୋଇ କହିଲେ—"ପୁତ୍ର ! ଯୌବନାବସ୍ଥାରେ ପ୍ରତ୍ୟେକ ବିବାହ ନକରିବାକୁ ପ୍ରଥମେ ପ୍ରତିଜ୍ଞା କରନ୍ତି, ଅଭିମାନ କରନ୍ତି, ଓ ଅନିଚ୍ଛା ପ୍ରକାଶ ମଧ୍ୟ କରିଥାନ୍ତି, କିନ୍ତୁ ବିବାହ କଲେ ଏହାକୁ ପ୍ରତିଜ୍ଞା ଚ୍ୟୁତ ବୋଲି କୁହାଯାଏ ନାହିଁ । ତାହା ତୋର ଭ୍ରମ ଧାରଣା । ତୁ ଗୋଟିଏ ସୁନ୍ଦରୀ ବୋହୂ ଆଣି ମୋତେ ଦେ । ତେବେ ଏହାହିଁ ହେବ ମୋର "କିମିଚ୍ଛକ" ବ୍ରତର ସବୁଠାରୁ ଶ୍ରେଷ୍ଠଫଳ । ପୁନଶ୍ଚ ମୋର ଇଚ୍ଛା ପୂର୍ଣ୍ଣକରିବା ତ ତୋର କର୍ତ୍ତବ୍ୟ । ମୁଁ ଏକା ହୋଇ ଏବେ କାର୍ଯ୍ୟ କରିବାକୁ ଅକ୍ଷମ, ବୋହୂ ଆସି ପାଖରେ ରହିଲେ ମୋତେ ଅନେକ ସାହାଯ୍ୟକରିବ । ତେଣୁ ମୋର ବୋହୂଟିଏ ଆବଶ୍ୟକ ।"

ଅବୀକ୍ଷିତ ହସି ହସି କହିଲେ—"ତୁମେ ତାହାହେଲେ କେବଳ ବୋହୂଟିଏ ପାଇଁ ହିଁ ଏହି ବ୍ରତ ଉପବାସ କରୁଅଛ, ଆଚ୍ଛା ଠିକଅଛି, ମୁଁ ତୁମକୁ ଅତି ସୁନ୍ଦରୀ ବୋହୂଟିଏ ଆଣି ଦେବି ।" ଏହିକଥା ଶୁଣି ମାତା ବାରି ଅତ୍ୟନ୍ତ ପ୍ରସନ୍ନ ହେଲେ ।

ସୂତ କହିଲେ—"ମୁନିଗଣ ! ଯେ ପର୍ଯ୍ୟନ୍ତ ମନୁଷ୍ୟ ପ୍ରତିଜ୍ଞା ରକ୍ଷା କରିଥାଏ, ସେ ପର୍ଯ୍ୟନ୍ତ ପ୍ରତିଜ୍ଞା ବନ୍ଧନରେ ଆବଦ୍ଧହୋଇ ଧୈର୍ଯ୍ୟଧାରଣ କରିଥାଏ । ଯେତେବେଳେ ପ୍ରତିଜ୍ଞା ଶିଥିଳ ହୋଇଯାଏ, ସେତେବେଳେ ମନୁଷ୍ୟର ଧୈର୍ଯ୍ୟ ବନ୍ଧନ ତୁଟିଯାଏ । ଏବେ କୁମାରଙ୍କୁ ବୈଶାଲିନୀଙ୍କର ସେହି ମନୋହର ମୂର୍ତ୍ତି ସ୍ମରଣ ହେବାକୁ ଲାଗିଲା । ତାହାର ଚିତ୍ର ତାଙ୍କ ହୃଦୟରେ ଅଙ୍କିତ ହୋଇଥିଲା, କିନ୍ତୁ ପ୍ରତିଜ୍ଞା ରୂପକ ପରଦାରେ ତାହା ଢାଙ୍କିହୋଇ ରହିଥିଲା । ଏବେ ଯେତେବେଳେ ପ୍ରତିଜ୍ଞା ଶିଥିଳତା ରୂପୀ ବାୟୁ ସେହି ଆବରଣକୁ ଉଡ଼ାଇନେଲା, ସେତେବେଳେ ସେ ଧନପତି ସେହି କୁମାରୀକୁ ଚିନ୍ତା କରିବାକୁ ଲାଗିଲେ । ଏବେ ବିଶାଲରାଜାଙ୍କ ରାଜଧାନୀକୁ ଯିବାପାଇଁ ତାଙ୍କୁ ଲଜ୍ଜାବୋଧ ହେଲା । କେଉଁ ମୁହଁରେ ଆଉ ସେଠାକୁ ଯାଇ ସେ କନ୍ୟାକୁ ଯାଚଜ୍ଞା କରନ୍ତେ ? ସେ ପୁନଶ୍ଚ ଚିନ୍ତା କଲେ, ମୁଁ ମନେକର ସେଠାକୁ ଗଲି, କନ୍ୟା ମୋତେ ଯଦି କହିଦେବ-- "ମୁଁ ତାଙ୍କୁ ବିବାହ କରିବି ନାହିଁ," ତେବେ ତାହା ମୋର ମୃତ୍ୟୁ ସମାନ ହୋଇଯିବ । ମୁଁ ଶୁଣିଥିଲି, ସେହି କନ୍ୟା ଏ ପର୍ଯ୍ୟନ୍ତ ବିବାହ କରିନାହିଁ, ସେ ମୋ ପାଇଁ ସବୁକିଛି ତ୍ୟାଗ ସ୍ୱୀକାର କରି ତପ ଆଚରଣ କରୁଛି । ସେହି ତ୍ୟାଗମୟୀ ଦେବୀଙ୍କୁ ଛାଡ଼ି ମୁଁ ଯଦି ଅନ୍ୟ କୌଣସି ରାଜକନ୍ୟାକୁ ବିବାହ କରେ, ତେବେ ସମସ୍ତେ ମୋତେ କ୍ରୁର ତଥା ପାଷାଣ ହୃଦୟ ବୋଲି କହିବେ ।" ଏହିସବୁକଥା ଚିନ୍ତାକରି କୁମାର ନିଜର କର୍ତ୍ତବ୍ୟ ନିର୍ଣ୍ଣୟ କରି ପାରିଲେ ନାହିଁ । ତାଙ୍କୁ ଏହା ମଧ୍ୟ ଜଣାନଥିଲା ଯେ ରାଜକୁମାରୀ ଏବେ ବନରେ ତପସ୍ୟା କରୁଅଛନ୍ତି କି ନିଜ ଘରକୁ ଫେରି ଆସିଛନ୍ତି ।

ଦିନେ କୁମାର ସଙ୍ଗରେ କେତେକ ସୈନିକଙ୍କୁ ନେଇ ଶିକାର ଉଦ୍ଦେଶ୍ୟରେ ବନକୁ ଗଲେ । ସେଠାରେ ସେ ଅନେକ ହିଂସ୍ରଜନ୍ତୁଙ୍କୁ ମାରିଲେ । ହଠାତ୍ ସେ ସେହି ଅରଣ୍ୟ ମଧ୍ୟରେ କୌଣସି ଏକ ସ୍ତ୍ରୀଲୋକର କରୁଣ ଚିତ୍କାର ଶୁଣିବାକୁ ପାଇଲେ । ଜଣାପଡ଼ୁଥିଲା କୌଣସି ସ୍ତ୍ରୀଲୋକକୁ କୌଣସି ଦୁଷ୍ଟଲୋକ ପୀଡ଼ା ଦେଉଛି । ଭାରତୀୟ କ୍ଷତ୍ରୀୟ ଯୁବକ ଚାହିଁଲେ ସବୁକିଛି ସହ୍ୟ କରିପାରେ, କିନ୍ତୁ ସେ ଅବଳାର ଅପମାନକୁ କେବେହେଲେ ବରଦାସ୍ତ କରିପାରେ ନାହିଁ । ସ୍ତ୍ରୀ ସବୁ କାଳରେ ଅବଧ୍ୟ । ତାଙ୍କୁ ଯେ କୌଣସି ଲୋକ ଅପମାନିତ କରେ, ପୀଡ଼ା ଦିଏ, ସେ ବଧ୍ୟ, ଦଣ୍ଡନୀୟ । ପ୍ରାଣଦେଇ ଯୁବକ ତାହାର ଦୁଃଖ ଦୂରକରେ । କୁମାର ସେହି ସ୍ତ୍ରୀ ଲୋକର ଚିତ୍କାର ଶୁଣି ସେହି ଶବ୍ଦ ଆସୁଥିବା ଦିଗକୁ ଧାଇଁଲେ ! ସେ ଅଶ୍ୱଆରୋହଣ କରି ଦ୍ରୁତ ବେଗରେ ଯାଇ ସେହି ସ୍ତ୍ରୀ ଲୋକଟିର ସମୀପରେ ଉପସ୍ଥିତ ହେଲେ । ଦେଖିଲେ ସେ ଗୋଟିଏ ସୁକୁମାରୀ ଯୁବତୀ ତା ମୁଖମଣ୍ଡଳ ଅଧୁବ ଆଭାରେ ବିକଶିତ ହେଉଛି ଓ ଗୋଟିଏ ଦୁଷ୍ଟ ଦାନବ ଠେଙ୍ଗାଟିଏ ହାତରେ ଧରି ତାଙ୍କୁ ଧମକାଉଛି, ଭୟ ଦେଖାଉଛି ଓ ତା ସହିତ ବଳାତ୍କାର କରିବାକୁ ଉଦ୍ୟତ ହେଉଛି । ଯୁବତୀ ଚକୋରୀ ପକ୍ଷୀ ଭଳି କ୍ରନ୍ଦନ କରିବାରେ

ଲାଗିଛନ୍ତି । ସେ କହୁ ଥାଆନ୍ତି, "କିଏ ଅଛ ମୋତେ ରକ୍ଷାକର, ଏ ଦୁଷ୍ଟ ଦାନବ ମୋତେ ବଳାତ୍କାରରେ ହରଣ କରିନେବାକୁ ବସିଛି । ମୋର ସ୍ୱାମୀ ଥାଇ ମଧ୍ୟ ମୁଁ ଆଜି ହତଭାଗିନୀ ।"

ଏହା ଦେଖି କୁମାର ଗର୍ଜି ଉଠି କହିଲେ—"ରେ ଦୁଷ୍ଟ ! ରହ ତୋତେ ଦେଖୁଛି । ସାବଧାନ ! ଯଦି ଏବେ ଟିକିଏ ଅଗ୍ରସର ହେଉ, ତେବେ ତୋତେ ଯମପୁରକୁ ସଙ୍ଗେ ସଙ୍ଗେ ପଠାଇ ଦେବି ।"

ଅସ୍ତ୍ର-ଶସ୍ତ୍ରରେ ସୁସଜ୍ଜିତ ହୋଇ କୁମାର ନିଜ ଆଡ଼କୁ ଆସୁଥିବାର ଦେଖି ଯୁବତୀ କହିଲେ —"କୁମାର ! ମୋତେ ବଞ୍ଚାଅ । ଏହି ଦୁଷ୍ଟ ମୋତେ ବଳାତ୍କାରରେ ଏଠାରୁ ହରଣ କରି ନେବାକୁ ବସିଛି ।"

କୁମାର କହିଲେ – "ଦେବି ! ତୁମେ ଚିନ୍ତା କର ନାହିଁ, ମୁଁ ଏହି ଦୁଷ୍ଟ ଦୈତ୍ୟକୁ ତାର ଔଦ୍ଧତ୍ୟର ଫଳ ଚଖାଉଛି । ଏବେ ତାକୁ ଯମାଳୟକୁ ପଠାଇ ଦେଉଛି ।"

ସେହି ଦୁଷ୍ଟ ଦନୁପୁତ୍ର ଦୃଢ଼କେତୁ ରାଜପୁତ୍ରଙ୍କୁ ଅସ୍ତ୍ର-ଶସ୍ତ୍ରରେ ସୁସଜ୍ଜିତ ହୋଇ ନିଜ ଆଡ଼କୁ ଆସିବାର ଦେଖି, ସେ ଯୁବତୀକୁ ଛାଡ଼ିଦେଇ ଠେଙ୍ଗାନେଇ କୁମାର ଆଡ଼କୁ ଧାଇଁଲା । କୁମାର ମଧ୍ୟ ପ୍ରସ୍ତୁତ ହୋଇ ରହିଥିଲେ । ସେ ଦିବ୍ୟ ଅସ୍ତ୍ର ଧରି ତାକୁ ଆକ୍ରମଣ କଲେ । ଉଭୟଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଦାନବ ତ ସହଜେ ମାୟାବୀ, ସେ ଅନେକ ଅସ୍ତ୍ର ଦ୍ୱାରା ରାଜକୁମାରଙ୍କୁ ଆଘାତ କରିବାକୁ ବସିଲା । କୁମାର ଧନୁର୍ବେଦ ବିଶାରଦ ଥିଲେ । ସେ ତାହାର ସମସ୍ତ ଅସ୍ତ୍ର ଛିନ୍ନଭିନ୍ନ କରି ପକାଇଲେ । ଯେତେବେଳେ ତାହାର ସମସ୍ତ ଅସ୍ତ୍ର-ଶସ୍ତ୍ର ଶେଷ ହୋଇଗଲା, ସେତେବେଳେ ସେ ବାହାସ୍ଫୋଟ ମାରି କୁମାରଙ୍କ ଆଡ଼କୁ ଧାଇଁଲା । କୁମାର ସଙ୍ଗେ ସଙ୍ଗେ ଏକ ବାଣରେ ତାହାର ଶିରଚ୍ଛେଦ କରିଦେଲେ । ଶିରଚ୍ଛେଦ ହେବାକ୍ଷଣି ସେ ଗଛକାଟିଲା ପରି ଭୂମି ଉପରେ ଢଳି ପଡ଼ିଲା ।

ସେହି ଦୈତ୍ୟ ମରିଯିବାରୁ ସ୍ୱର୍ଗରୁ ଦେବତାମାନେ ନିଜ ନିଜ ବିମାନରେ ବସି ଆସି କୁମାରଙ୍କୁ ଧନ୍ୟବାଦ ଦେଇ କହିବାକୁ ଲାଗିଲେ—"କୁମାର ! ତୁମେ ବଡ଼ ସାହାସିକ କାର୍ଯ୍ୟ କରିଅଛ । ଏହି ଦାନବ ଅତ୍ୟନ୍ତ ଦୁଷ୍ଟ ଥିଲା । ଦେବତାମାନଙ୍କପାଇଁ ମଧ୍ୟ ସେ ଅବାଧ ଥିଲା । ତାକୁ ବଧ କରି ଉପକାର କରିଅଛନ୍ତି । ଆପଣଙ୍କ ବୀରତ୍ୱ ପାଇଁ ଆମ୍ଭେମାନେ ଅତ୍ୟନ୍ତ ସନ୍ତୁଷ୍ଟ । ଆପଣ ଯେଉଁ ବର ଚାହାଁନ୍ତି, ତାହା ଆମ୍ଭମାନଙ୍କଠାରୁ ମାଗି ନିଅନ୍ତୁ ।"

କୁମାର ଅବୀକ୍ଷିତ ନତମସ୍ତକ ହୋଇ ଦେବତାମାନଙ୍କୁ ପ୍ରଣାମ କଲେ ଓ ହାତ ଯୋଡ଼ି କହିଲେ – "ଦେବଗଣ ! ଯଦି ଆପଣମାନେ ମୋ ଉପରେ ପ୍ରସନ୍ନ ହୋଇଛନ୍ତି, ତେବେ ମୋର ମାତାପିତାଙ୍କ ଚରଣରେ ଭକ୍ତି ରହୁ ଓ ପିତାଙ୍କ ଇଚ୍ଛାନୁସାରେ ମୋର ଏକ ପୁତ୍ର ମଧ୍ୟ ହେଉ ।"

ଦେବତାମାନେ କହିଲେ—"କୁମାର ! ତୁମର କଲ୍ୟାଣ ହେଉ । ଏବେ ତୁମେ ଯେଉଁ କନ୍ୟାକୁ ଉଦ୍ଧାର କଲ, ତାହାଠାରୁ ତୁମର ଗୋଟିଏ ଅତ୍ୟନ୍ତ ତେଜସ୍ୱୀ, ଯଶସ୍ୱୀ, ଚକ୍ରବର୍ତ୍ତୀ ପୁତ୍ର ଜାତ ହେବ ।"

କୁମାର କହିଲେ—"ଦେବଗଣ ! ଆପଣ ଧର୍ମର ସାକ୍ଷାତ୍ ସ୍ୱରୂପ ହୋଇ କିପରି ଏ ଅଧର୍ମ କଥା କହୁଛନ୍ତି ? ମୋ ସ୍ତ୍ରୀ ସମ୍ମୁଖରେ ଶତ୍ରୁମାନଙ୍କ ଦ୍ୱାରା ପରାସ୍ତ ହୋଇ ଥିବାରୁ ମୁଁ ବିବାହ ନ କରିବା ପାଇଁ ପ୍ରତିଜ୍ଞା କରିଥିଲି । ପିତାଙ୍କ ଗୌରବ ଯୋଗୁଁ ହିଁ ମୁଁ ବିବାହ କରିବି ନାହିଁ ବୋଲି ପ୍ରତିଜ୍ଞା କରିଥିଲି, କିନ୍ତୁ ଯେଉଁ ବିଶାଳ କନ୍ୟା ମୋ ଯୋଗୁଁ ଏ ପର୍ଯ୍ୟନ୍ତ ବିବାହ କରି ନାହାନ୍ତି, ସେହି ପରମ ତପସ୍ୱିନୀ ଦେବୀଙ୍କୁ ଛାଡ଼ି ଯଦି ମୁଁ ଅନ୍ୟ କୌଣସି ରାଜକୁମାରୀଙ୍କୁ ବିବାହ କରେ, ତେବେ ମୋତେ ନରକରେ ବି ସ୍ଥାନ ମିଳିବ ନାହିଁ । ତେଣୁ ମୁଁ ସେହି ତ୍ୟାଗମୟୀ ଦେବୀଙ୍କୁ ଛାଡ଼ି ଏହାଙ୍କୁ କଦାପି ବିବାହ କରି ପାରିବି ନାହିଁ ।"

ଦେବତାମାନେ କହିଲେ—"ମହାଭାଗ ! ଆପଣ ଚିନ୍ତା କରନ୍ତୁ ନାହିଁ, ଆପଣ ସର୍ବଦା ଯାହାଙ୍କ କଥା ଭାବୁଛନ୍ତି, ଯାହାଙ୍କ ମୂର୍ତ୍ତି ଆପଣଙ୍କ ହୃଦୟରେ ଅଙ୍କିତ, ଏ ସେହି ବିଶାଳ ମହାରାଜଙ୍କ କନ୍ୟା ବୈଶାଳିନୀ ଅଟନ୍ତି । ସେ କେବଳ ତୁମକୁ ପାଇବା ପାଇଁ ଏପରି ତପସ୍ୟା କରୁ ଅଛନ୍ତି । ଆଜି ତାଙ୍କ ତପସ୍ୟା ପୂର୍ଣ୍ଣ ହୋଇଛି ।"

ଏତିକି କହି ଦେବଗଣ ସେଠାରୁ ସଙ୍ଗେ ସଙ୍ଗେ ଅନ୍ତର୍ଦ୍ଧାନ ହୋଇଗଲେ । କୁମାର ଏ ଘଟଣାକୁ ସ୍ୱପ୍ନ ଭଳି ମନେ କଲେ । ତପସ୍ୟା କରିବାଦ୍ୱାରା କୁମାରୀ ବୈଶାଳିନୀ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଥିଲେ । କିନ୍ତୁ ତାଙ୍କ ମୁହଁର ତେଜ ଅତ୍ୟନ୍ତ ବଢ଼ି ଯାଇଥିଲା । କୁମାର ତାଙ୍କୁ ଚିହ୍ନି ପାରିଲେ ନାହିଁ । ଦେବତାଗଣ ଯେତେବେଳେ ତାଙ୍କର ପରିଚୟ କରାଇଲେ, ସେତେବେଳେ କୁମାର ନିଜକୁ ଲଜ୍ଜିତ ମନେକଲେ ଓ ତାଙ୍କ ପାଖକୁ ଯାଇ ଅତି ସ୍ନେହର ସହିତ କହିଲେ –"ପ୍ରିୟେ ! ଏ ହୃଦୟହୀନ ଯୋଗେ ତୁମେ ଅତ୍ୟନ୍ତ କ୍ଳେଶ ଭୋଗକଲ ।"

ବୈଶାଳିନୀ ମଧ୍ୟ ତାଙ୍କୁ ପ୍ରାଣନାଥ ବୋଲି ସମ୍ବୋଧନ କରି ଧାଇଁ ଆସି ତାଙ୍କ ପାଦତଳେ ପଡ଼ି କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲେ । ଏଥିରେ କୁମାର ଧୈର୍ଯ୍ୟହରା ହୋଇ ପଡ଼ିଲେ ଓ ତାଙ୍କ ନେତ୍ରରୁ ପ୍ରେମାଶ୍ରୁ ପ୍ରବାହିତ ହେବାକୁ ଲାଗିଲା ।

କୁମାର ପଚାରିଲେ—"ଦେବି ! ତୁମେ ଏ ଅରଣ୍ୟ ମଧ୍ୟକୁ ଏକା ହୋଇ କିପରି ଆସିଲ ?" ଏହା ଶୁଣି କୁମାରୀ ଆନନ୍ଦାଶ୍ରୁ ଗଡ଼ାଇ କାନ୍ଦି କାନ୍ଦି ସମସ୍ତ ବୃତ୍ତାନ୍ତ କହିଲେ । ସମସ୍ତ କଥା ଶୁଣି କୁମାରଙ୍କ ହୃଦୟ ଉତ୍ଫୁଲ୍ଲିତ ହୋଇ ଉଠିଲା ଓ ସେ କହିଲେ—"ଦେବି ! ତୁମେ ଧନ୍ୟ, ତୁମର ମାତା ପିତା ଧନ୍ୟ, ତୁମର କୁଳ ଧନ୍ୟ, ତୁମର ତପସ୍ୟା ଧନ୍ୟ । ମୋ ଭଳି ପାପୀ ସକାଶେ ତୁମକୁ ବହୁତ କଷ୍ଟ ସହ୍ୟ କରିବାକୁ ପଡ଼ିଲା । ଦେବି ! ମୁଁ ତୁମକୁ କଦାପି ଭୁଲି ପାରିବି ନାହିଁ । ମୁଁ ତୁମକୁ ଇଷ୍ଟଦେବୀଙ୍କ ଭଳି ସର୍ବଦା ଭଲପାଏ । କିନ୍ତୁ ଶତ୍ରୁଙ୍କ ଦ୍ୱାରା ପରାଜିତ ହେବା କାରଣରୁ ମୁଁ ଲଜ୍ଜିତ ହୋଇ ଯାଇଥିଲି । ଏଥିପାଇଁ ମୁଁ ବିବାହ ନ କରିବା ପାଇଁ ସଂକଳ୍ପ କରିଥିଲି । ଏବେ ଜଣା ପଡ଼ିଲା—ସେ ସମସ୍ତ ଦୈବୀ ଇଚ୍ଛା । ମୋର ମାତା ପିତା ମଧ୍ୟ ମୁଁ ବିବାହ କରିବା ପାଇଁ ମୋତେ ପ୍ରତିଜ୍ଞା କରାଇ ନେଲେ । ଦେବତାମାନେ ମଧ୍ୟ ସେହିପରି ବର ପ୍ରଦାନ କରିଗଲେ । ଭଗବାନଙ୍କର ଇଚ୍ଛା ପୂର୍ଣ୍ଣ ହେଉ । ଏହା ତୁମ ତପସ୍ୟାର ହିଁ ପ୍ରଭାବ । ଚାଲ ଏବେ ଆମର ଭବିଷ୍ୟତ କର୍ତ୍ତବ୍ୟ ନିର୍ଣ୍ଣୟ କରିବା ।"

ଏ ଦୁଇଜଣ ଏହିପରି ଅନୁରାଗ ଭରା ହୃଦୟରେ କଥା ବାର୍ତ୍ତା ହେଉଥିବା ସମୟରେ 'ମୟୁ' ନାମକ ଗନ୍ଧର୍ବ ଅନେକ ଅପସରା ଓ ଗନ୍ଧର୍ବଙ୍କୁ ସଙ୍ଗରେ ଧରି ସେଠାରେ ଆସି ଉପସ୍ଥିତ ହେଲେ । ଅରଣ୍ୟ ମଧ୍ୟରେ ଅପ୍ସରାମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇଥିବା ଗନ୍ଧର୍ବରାଜ'ମୟୁ'ଙ୍କୁ ଦେଖି ଉଭୟେ ତାଙ୍କୁ ଅଭିନନ୍ଦନ କଲେ ଓ ସେମାନଙ୍କୁ ବସିବାପାଇଁ ଆସନ ଦେଲେ । ଗନ୍ଧର୍ବ ରାଜ ଉପବେସନ କରିବାରୁ କୁମାର ତାଙ୍କୁ ପଚାରିଲେ—"ହେ ଗନ୍ଧର୍ବ ରାଜ ! ଆପଣ ଏଠାରେ ପଦାର୍ପଣ କରିବାର ଯଦି କୌଣସି ବିଶେଷ କାରଣ ଅଛି, ତେବେ କୁହନ୍ତୁ ।"

ଗନ୍ଧର୍ବରାଜ କହିଲେ—"ରାଜକୁମାର ! ମୁଁ ମୋର କନ୍ୟାକୁ ଆପଣଙ୍କ ସହିତ ବିବାହ କରିବାପାଇଁ ଆସିଅଛି ।"

କୁମାର ଅବୀକ୍ଷିତ ଆଶ୍ଚର୍ଯ୍ୟ ହୋଇ କହିଲେ—"ଆପଣ ହେଉଛନ୍ତି ଗନ୍ଧର୍ବ, ଉପଦେବ । ମୁଁ ମନୁଷ୍ୟ, ଆପଣ ନିଜର କନ୍ୟାକୁ ମୋ ସହିତ କାହିଁକି ବିବାହ ଦେବାକୁ ଚାହୁଁଛନ୍ତି ? ପୁନଶ୍ଚ ମୁଁ ତ ବିଶାଳନନ୍ଦିନୀ ଏହି ରାଜ କୁମାରୀ ବୈଶାଳିନୀଙ୍କୁ ବିବାହ କରିବା ପାଇଁ ପ୍ରତିଜ୍ଞା କରିଛି । ଏହାଙ୍କ ବ୍ୟତୀତ ତ୍ରୈଲୋକ୍ୟ ସୁନ୍ଦରୀ ଦେବ କନ୍ୟାଙ୍କୁ ମଧ୍ୟ ମୁଁ ବିବାହ କରିବାକୁ ଚାହେଁନାହିଁ ।"

ଏହା ଶୁଣି ମୟୁ ଗନ୍ଧର୍ବ କହିଲେ - "କୁମାର ! ସେହି ବୈଶାଳିନୀ ହିଁ ମୋର କନ୍ୟା । ମୁଁ ତାହାର କଥା ହିଁ ଆପଣଙ୍କୁ କହୁଛି ।"

କୁମାର ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ଏ ଆପଣଙ୍କର କନ୍ୟା କିପରି ହେଲା ? ଏ ତ ମାନବୀ କନ୍ୟା ଅଟନ୍ତି, ଏ ହେଉଛନ୍ତି ବୈଦେଶରାଜ ମହାରାଜ ବିଶାଳଙ୍କ ଔରସରୁ ଜାତ । ଆପଣ ଏହାଙ୍କୁ ନିଜ କନ୍ୟା ବୋଲି କିପରି କହୁଛନ୍ତି ?"

ଗନ୍ଧର୍ବ କହିଲେ—"ରାଜନ୍ ! ପୂର୍ବ ଜନ୍ମରେ ସେ ଭାମିନୀ ନାମ ଧାରଣ କରି ମୋର କନ୍ୟା ହୋଇଥିଲା । ଦିନେ ସେ ଖେଳୁଥିବା ସମୟରେ ବାଲ୍ୟଚପଳତା ବଶତଃ ମହର୍ଷି ଅଗସ୍ତ୍ୟଙ୍କୁ କୁପିତ କରାଇ ଦେଇଥିଲା । ତାହାର ଅଶିଷ୍ଟତାରେ ଅସନ୍ତୁଷ୍ଟ ହୋଇ ମହର୍ଷି ତାକୁ ଶାପ ଦେଲେ ଯେ—"ତୁ ମନୁଷ୍ୟ ଯୋନିରେ ଉତ୍ପନ୍ନ ହେବୁ । ଯେତେବେଳେ ମୁଁ ଏ କଥା ଶୁଣିଲି, ସେତେବେଳେ ବିନୀତ ହୋଇ ମୁନିଙ୍କୁ ପ୍ରସନ୍ନ କଲି ଓ ପ୍ରାର୍ଥନା କଲି, ପ୍ରଭୋ ! ସେ ଏବେ ଅବୋଧ ବାଳିକା, ତା ଅପରାଧ ଉପରେ ଆପଣ ଗୁରୁତ୍ୱ ଦିଅନ୍ତୁ ନାହିଁ । ସେତେବେଳେ ମୁନି ପ୍ରସନ୍ନ ହୋଇ କହିଥିଲେ—"ଗ୍ରେଟ ପିଲା ଜାଣି, ମୁଁ ତାକୁ ସାଧାରଣ ଶାପ ପ୍ରଦାନ କରିଛି । ଅସ୍ତୁ, ମୁଁ ଆଦୌ ମିଛ କହେ ନାହିଁ, ତେଣୁ ମୋର ଶାପ କଦାପି ଅନ୍ୟଥା ହେବ ନାହିଁ, ପରନ୍ତୁ ସେ ରାଜରାଣୀ ହେବ ଓ ଚକ୍ରବର୍ତ୍ତୀ ପୁତ୍ର ଉତ୍ପନ୍ନକାରିଣୀ ବୀର ପ୍ରସବିନୀ ହେବ ।" ଏତିକି କହି ମୁନି ସେଠାରୁ ଚାଲିଗଲେ । ମୋର ସେହି କନ୍ୟା ରାଜା ବିଶାଳଙ୍କ ଔରସରୁ ଉତ୍ପନ୍ନ ହୋଇଅଛି । ଗନ୍ଧର୍ବଗଣ ଦେବତାମାନଙ୍କ ମଧ୍ୟରେ ସବୁଠାରୁ ସୁନ୍ଦର ହୋଇଥିବାରୁ ଏହି କନ୍ୟା ମାନବୀ ହୋଇ ମଧ୍ୟ ଏତେ ସୁନ୍ଦରୀ ହୋଇଅଛି । ଏବେ ମୁଁ ତାକୁ ହିଁ ଆପଣଙ୍କ ସହିତ ଧର୍ମାନୁକୂଳ ବିବାହ ଦେବାକୁ ଚାହୁଁଛି ।"

କୁମାର କହିଲେ—"ତେବେ ଠିକ୍ ଅଛି, ମୋର ସେଥିରେ କୌଣସି ଆପତ୍ତି ନାହିଁ ।" ବିବାହ ବାଦ୍ୟ ସ୍ୱର୍ଗୀୟ ସ୍ୱରରେ ବାଜିବାକୁ ଲାଗିଲା । ଉତ୍ସବର ସାଜସଜ୍ଜା ସଙ୍ଗେ ସଙ୍ଗେ ହୋଇଗଲା । ଗନ୍ଧର୍ବଗଣ ଗାନ କରିବାକୁ ଲାଗିଲେ, ଅପ୍ସରାଗଣଙ୍କ ନୃତ୍ୟ ସାଙ୍ଗକୁ ପାଦର ନୂପୁର ଝଙ୍କାରରେ ଚତୁର୍ଦ୍ଦିଗ ମୁଖରିତ ହେବାକୁ ଲାଗିଲା । ମାଙ୍ଗଳିକ ବାଦ୍ୟ ବାଜି ଜଙ୍ଗଲ ମଙ୍ଗଳମୟ ହୋଇ ଉଠିଲା । ଗାନ୍ଧର୍ବ ମତରେ ସେଠାରେ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ମୟୂ ବର କନ୍ୟାଙ୍କୁ ଦିବ୍ୟବସ୍ତ୍ରାଭୂଷଣ ପ୍ରଦାନ କରି କହିଲେ – "କୁମାର ! ତୁମେ କିଛିଦିନ ପାଇଁ ଗନ୍ଧର୍ବ ଲୋକରେ ଚାଲି ରହିବ ।"

କୁମାର କହିଲେ - "ମୁଁ ମନୁଷ୍ୟ ହୋଇ ଆପଣଙ୍କ ଲୋକରେ କିପରି ରହି ପାରିବି ?"

ମୟୂ କହିଲେ—"ଆପଣ ନିଜର ତପ ଓ ପରାକ୍ରମ ପ୍ରଭାବରେ ସବୁଠି ଯାଇ ପାରିବେ, ପୁନଶ୍ଚ ମୁଁ ଆପଣଙ୍କୁ ସେ ବିଦ୍ୟା ମଧ୍ୟ ପ୍ରଦାନ କରିବି ।" ଏହା କହି ନିଜର କନ୍ୟା ଓ ଜାମାତାଙ୍କୁ ସଙ୍ଗରେ ନେଇ ମୟୂ ଗନ୍ଧର୍ବ ଲୋକକୁ ଯାତ୍ରା କଲେ । କୁମାର

ଅବୀକ୍ଷିତ ସେଠାରେ ନିଜର ପତ୍ନୀ ବୈଶାଳିନୀଙ୍କ ସହିତ ଦେବତାମାନଙ୍କର ବନ ଓ ଉପବନରେ ଭ୍ରମଣ କରିବାକୁ ଲାଗିଲେ । ସେମାନେ ଏହିଭଳି ଦୁର୍ଲଭ ସ୍ୱର୍ଗସୁଖ ଭୋଗ କଲେ, ଯାହାକି ଭୋଗ କରିବା ପୃଥିବୀର କୌଣସି ଲୋକ ପକ୍ଷେ ସମ୍ଭବ ନୁହେଁ । ଏ ଦୁହିଁଙ୍କ ମଧ୍ୟରେ ନିବିଡ଼ ସ୍ନେହ ଭାବ ଥିଲା । ସେମାନେ ଏକ ପ୍ରାଣ ଦୁଇ ଶରୀର ଭଳି ଚଳୁଥିଲେ । ଗନ୍ଧର୍ବ ଓ କିନ୍ନରଙ୍କ ସହିତ ସେମାନେ ପର୍ବତ କନ୍ଦରମାନଙ୍କରେ, ରମଣୀୟ ଉପତ୍ୟକାମାନଙ୍କରେ ତଥା ମନୋହର ବନ ଓ ଉପବନମାନଙ୍କରେ ସ୍ୱଚ୍ଛନ୍ଦରେ ବିହାର କରୁଥିଲେ ।

କିଛିଦିନ ପରେ ବୈଶାଳିନୀଙ୍କର ଗୋଟିଏ ପୁତ୍ର ହେଲା । ସେହି ପୁତ୍ରର ଜନ୍ମ ଉପଲକ୍ଷେ ମଧ୍ୟ ଖୁବ୍ ଜାକ୍‌ଜମକରେ ଉତ୍ସବ କଲେ । ଦେବ, ଉପଦେବ, ନାଗ ଓ ସମସ୍ତ ସ୍ୱର୍ଗବାସୀଙ୍କୁ ନିମନ୍ତ୍ରଣ କରାଗଲା । ଦେବତାମାନଙ୍କ ପୁରୋହିତ ବୃହସ୍ପତି ବାରମ୍ବାର ମନ୍ତ୍ର ଉଚ୍ଚାରଣ କଲେ—"ମରୁତ୍ତ୍ଵଦଶିବାୟୁସ୍ତୁ" ଅର୍ଥାତ୍ ମରୁତ ତୁମର କଲ୍ୟାଣ କରନ୍ତୁ । କେତେଥର ମରୁତ୍ତ୍ୱବ, ମରୁତ୍ତ୍ୱବ କହିବା ଦ୍ୱାରା ଦେବତାମାନେ ସେହି ପୁତ୍ରର ନାମ 'ମରୁତ୍ତ' ଦେଲେ । ଏପରି ସୁନ୍ଦର ପୁତ୍ରକୁ ପାଇ ଅବୀକ୍ଷିତ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ନିଜର ପତ୍ନୀ ଓ ପୁତ୍ରଙ୍କୁ ସଙ୍ଗରେ ନେଇ ଗନ୍ଧର୍ବମାନଙ୍କ ସହିତ ନିଜ ପିତାଙ୍କ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ । ସେ ସମୟରେ ମହାରାଜ କରନ୍ଧମ ରାଜ ସଭାରେ ବସିଥିଲେ । କୁମାର ଅବୀକ୍ଷିତ ନିଜର ପତ୍ନୀଙ୍କ ସହିତ ଆସି ମହାରାଜଙ୍କ ଚରଣରେ ପ୍ରଣାମ କଲେ ଓ ତାଙ୍କ କୋଳରେ ପୁତ୍ରକୁ ଦେଇ କହିଲେ—"ପିତା ! ମାତାଙ୍କ କିମିଚ୍ଛକ ବ୍ରତ ସମୟରେ ଯେଉଁ ବସ୍ତୁ ଆପଣଙ୍କୁ ଦେବାକୁ ପ୍ରତିଜ୍ଞା କରିଥିଲି, ତାହା ଆପଣ ଗ୍ରହଣ କରନ୍ତୁ ।"

ଅତି ସୁନ୍ଦର ସେହି ପୁତ୍ରର ମୁଖ ଦର୍ଶନ କରି ରାଜା ଆଶ୍ଚର୍ଯ୍ୟ ହୋଇଗଲେ । ପୁନଶ୍ଚ ତାଙ୍କର ସଂଶୟ ହେଲା ଯେ ମୋର ପୁତ୍ର ଏପରି କେଉଁ ଏକ ବଂଶର କନ୍ୟା ସହିତ ତ ବିବାହ କରି ନ ଥିଲା । ରାଜାଙ୍କ ହାବଭାବରୁ କୁମାର ଆଦିଅନ୍ତ ସମସ୍ତ ଜାଣିପାରି ପୂର୍ବରୁ ଘଟିଥିବା ଘଟଣାମାନ ଆମୂଳଚୂଳ ବର୍ଣ୍ଣନା କଲେ । ପୁତ୍ରଠାରୁ ସମସ୍ତ ଘଟଣା ଶୁଣିବା ମାତ୍ରେ ରାଜାଙ୍କର ଆନନ୍ଦର ସୀମା ରହିଲା ନାହିଁ । ତାଙ୍କ ନେତ୍ର ଆନନ୍ଦାଶ୍ରୁରେ ଛଳଛଳ ହେବାକୁ ଲାଗିଲା । ସେ ବାରମ୍ବାର ନିଜ ନାତି ମୁଖରେ ଚୁମ୍ବନ ଦେବାକୁ ଲାଗିଲେ । ସଙ୍ଗେ ସଙ୍ଗେ ସେ ସେବକଙ୍କୁ ଆଜ୍ଞାଦେଲେ ଯେ, ମୋ ରାଜ୍ୟସାରା ଉତ୍ସବ ପାଳନ କରାଯାଉ । ପୌତ୍ର ପ୍ରାପ୍ତି ଉପଲକ୍ଷ୍ୟେ ନଗର ତମାମ୍ ସାଜସଜା କରାଯାଉ, ଭିକ୍ଷୁକ ଓ ଆଶ୍ରୟ ପ୍ରାର୍ଥୀଙ୍କୁ ଇଚ୍ଛା ଅନୁସାରେ ଦାନ କରାଯାଉ । ରାଣୀ ବୀରା ଏ ସମ୍ବାଦ ଶୁଣିବା କ୍ଷଣି ଆନନ୍ଦରେ ବିଭୋର ହୋଇଗଲେ । ସେ ନିଜର ପୁତ୍ରବଧୂଙ୍କୁ କୋଳରେ ବସାଇ ତାଙ୍କୁ ବାରମ୍ବାର ସ୍ନେହ କରିବାରେ ଲାଗିଲେ । ନାତିକୁ

ଚୁମ୍ବନ ଦେଇ ବାରମ୍ବାର ତା ଶିର ଆଘ୍ରାଣ କଲେ ଓ ତାଙ୍କର ଜୀବନ ଆଜି ସାର୍ଥକ ହୋଇଛି ମନେକଲେ ।

ସୂତ କହିଲେ—"ମୁନିଗଣ ! ମୁଁ ଆପଣମାନଙ୍କୁ ଅତି ସଂକ୍ଷେପରେ କୁମାର ଅବୀକ୍ଷିତ ଓ ବୈଶାଳିନୀଙ୍କ କାହାଣୀ କହିଲି । ବୈଶାଳିନୀ ଯେପରି ଦୁଃଖ ଭୋଗ କରିଥିଲେ, ସେପରି ଦୁଃଖ କୌଣସି ଶତ୍ରୁ ମଧ୍ୟ ଭୋଗ ନ କରନ୍ତୁ । ଏବଂ ଯେପରି ଶୁଭଦିନ ଅବୀକ୍ଷିତ ଓ ବୈଶାଳିନୀଙ୍କ ପାଇଁ ଫେରି ଆସିଲା, ସେହିପରି ପ୍ରତ୍ୟେକଙ୍କ ପାଇଁ ଶୁଭଦିନ ଫେରିଆସୁ ।"

ଏହା ଶୁଣି ଶୌନକ କହିଲେ—"ସୂତ ! ଆପଣ ତ ଅତି ଅଦ୍ଭୁତ କାହାଣୀ ଶୁଣାଇଲେ । ଏବେ ଆମ୍ଭେମାନେ ଅବୀକ୍ଷିତଙ୍କ ପୁତ୍ର ମରୁତ୍ତଙ୍କ ଚରିତ ଶୁଣିବାକୁ ଇଚ୍ଛା କରୁଛୁ । ମହାରାଜ ମରୁତ୍ତ ତ ଅତ୍ୟନ୍ତ ଯଶସ୍ୱୀ ଓ ଧର୍ମାତ୍ମା ଥିଲେ । ଆମ୍ଭେମାନେ ଶୁଣିଛୁ ଯେ, ମରୁତ୍ତଙ୍କ ଭଳି ବୈଭବଶାଳୀ ଯଜ୍ଞ ଏ ପର୍ଯ୍ୟନ୍ତ ଅନ୍ୟ କୌଣସି ରାଜା କରି ନାହାନ୍ତି ।"

ସୂତ କହିଲେ—"ଭଗବାନ୍ ! ଆପଣ ଯାହା କହିଲେ ତାହା ଯଥାର୍ଥ । ଅବୀକ୍ଷିତଙ୍କ ପୁତ୍ର ମହାରାଜ ମରୁତ୍ତ ନିଜର ପୁଣ୍ୟ ପ୍ରଭାବରୁ ସଂସାରରେ ଏ ପର୍ଯ୍ୟନ୍ତ ବିଖ୍ୟାତ ବୋଲି ଘୋଷିତ ହେଉଛନ୍ତି । ତାଙ୍କ ଯଜ୍ଞର ପ୍ରଶଂସା ଏ ପର୍ଯ୍ୟନ୍ତ କରାଯାଉଛି । ମୁଁ ସେହି ମରୁତ୍ତଙ୍କ ପବିତ୍ର ଚରିତ ଏବେ ଆପଣମାନଙ୍କ ଆଗରେ କହିବି, ଆପଣମାନେ ମନଧ୍ୟାନ ଦେଇ ତାହା ଶ୍ରବଣ କରନ୍ତୁ ।"

## ଛପ୍ପୟ

ନହିଁ କନ୍ୟା ବର ବରେ୍ୟା ତପସ୍ୟାମହଁ ରତ ଭୟୋ ।
ଇତ ବ୍ରତ ବୀର ମାତୁ 'କମିଚ୍ଛକ' ସୁତ ହିତକୀୟୋ ।।
ପିତୁ ନେ ମାଁଗୀ ଭୀଖ ପୌତ୍ରକୀ ସୁତ ସ୍ୱୀକାରୀ ।
ତୋଡ଼ ପ୍ରତଜ୍ଞା ବରୀ କୁମର ନେ ରାଜକୁମାରୀ ।।
କୁମର ଔର ବୈଶାଳିନୀ, ଧର୍ମ ସୁତ୍ରମହଁ ବାଁଧି ଗୟେ ।
ଗୟେ ଲୋକ ଗନ୍ଧର୍ବ ମହଁ, ସୁତ ମରୁତ୍ତ ଜନକେ ଭୟେ ।।



# ମରୁତ୍ତ ଚରିତ

ମରୁତ୍ତସ୍ୟ ଯଥା ଯଜ୍ଞୋ ନ ତଥାନ୍ୟସ୍ୟ କଶ୍ଚନ ।
ସର୍ବଂ ହିରଣ୍ମୟଂ ତ୍ୱାସୀଦ୍ ଯତ୍କିଂଚାସ୍ୟ ଶୋଭନମ୍ ॥
ଅମାଦ୍ୟଦିନ୍ଦ୍ରଃ ସୋମେନ ଦକ୍ଷିଣାଭି ର୍ଦ୍ୱିଜାତୟଃ ।
ମରୁତଃ ପରିବେଷ୍ଟାରୋ ବିଶ୍ୱେଦେବାଃ ସଭାସଦଃ ॥

(ଶ୍ରୀ:ଭା: ୯ମ ସ୍କନ୍ଦ ୨ୟ: ଅ: ୨୭।୨୮ ଶ୍ଳୋକ)

## ଛପ୍‌ପୟ

ଦଇଥିଲା କରନ୍ଧମ ରାଜ ଅବୀକ୍ଷିତ ନାହିଁ ସ୍ୱୀକାରିଥିଲା ।
ରାଜ୍ୟ କରିବି ନାହିଁ କେବେହିଁ ସମର ଶତ୍ରୁଙ୍କଠାରେ ହାରିଥିଲା ॥
ରାଜା କରେ ମରୁତ୍ତ କରନ୍ଧମ ବନହିଁ ସିଧାରେ ।
ନାରୀନ ମୁନି ଗନ ଉପରେ ମରୁତନେ ଶସ୍ତ୍ର ସମ୍ହାରେ ॥
ନାରୀ ଅବୀକ୍ଷିତ ଶରନମହିଁ, ଗଏଥେ ଅଭୟ ତିନକୁଁ ଦଇ
ସୁତ ପିତୁମହିଁ ଅହି ବିଷୟଚପେ, ତନାତନୀ ଖରୀ ଭଇ ॥

ଆର୍ଯ୍ୟଶାସ୍ତ୍ରମାନଙ୍କରେ କର୍ତ୍ତବ୍ୟ ପାଳନକୁ ଅତ୍ୟନ୍ତ ଗୁରୁତ୍ୱ ଦିଆ ଯାଇଛି । କର୍ତ୍ତବ୍ୟ ଆଗରେ ମାତା, ପିତା, ସ୍ୱଜନ, ବନ୍ଧୁ, ବାନ୍ଧବ ତଥା ସୁହୃଦ୍‌ଙ୍କର ସ୍ଥାନ ନାହିଁ । ଯେ ଆମ୍ଭମାନଙ୍କୁ କର୍ତ୍ତବ୍ୟ ପଥରୁ ପରାଙ୍ମୁଖ କରନ୍ତି, ସେଭଳି ବନ୍ଧୁ ତ୍ୟାଜ୍ୟ ଓ ଯେଉଁମାନେ ଆମ୍ଭମାନଙ୍କୁ କର୍ତ୍ତବ୍ୟ ପଥ ବତାଇ ଦିଅନ୍ତି ସେ ଯଦି ଶତ୍ରୁ ହୋଇ ଥାଆନ୍ତି ତଥାପି ପୂଜନୀୟ । ଶୁକ୍ରାଚାର୍ଯ୍ୟ ବଳିଙ୍କୁ କର୍ତ୍ତବ୍ୟ ପଥରୁ ବିଚ୍ୟୁତ ହେବା ପାଇଁ ପରାମର୍ଶ ଦେଇଥିଲେ, ସେ ମିଛ କହିବାକୁ ଚାହୁଁଥିଲେ । ଗୁରୁ ହୋଇଥିଲେ ମଧ୍ୟ ବଳି ତାଙ୍କ କଥାରେ କର୍ଣ୍ଣପାତ କରି ନଥିଲେ । ଗୁରୁଙ୍କୁ ତ୍ୟାଗ କରି ସେ ଶାପ ଓ ସନ୍ତାପକୁ ସହର୍ଷ ବଦନରେ ସହ୍ୟ କରିଥିଲେ । କୈକେୟୀ ଭରତଙ୍କ ଜନନୀ ଥିଲେ, କିନ୍ତୁ ସେ ଅଧର୍ମର ମାର୍ଗ ଭରତଙ୍କୁ ବତାଇ ଥିଲେ, ଭରତଙ୍କୁ ଲୋଭ ଦେଖାଇ

କୁମନ୍ତ୍ରଣା ଦେଇଥିଲେ । ମହାମନା ଭରତ ଏଥିପାଇଁ ମାତାଙ୍କୁ ତ୍ୟାଗ କରିଥିଲେ । ପ୍ରହ୍ଲାଦର ପିତା ନିଜର ପୁତ୍ରକୁ ଭଗବାନଙ୍କଠାରୁ ପରାଙ୍ମୁଖ କରୁଥିଲେ, ତାଙ୍କୁ ଭଗବତ୍ ଭଜନରୁ ନିବର୍ତ୍ତିତ ଥିଲେ ଓ ଜୀବର ପ୍ରଧାନ କର୍ତ୍ତବ୍ୟ ପାଳନ କରିବାକୁ ମନା କରୁଥିଲେ । କିନ୍ତୁ ପ୍ରହ୍ଲାଦ ତାଙ୍କ କଥା ମାନି ନଥିଲେ । କୈକେୟୀ ନିଜ ପତିଙ୍କୁ ଅନୁଚିତ କାର୍ଯ୍ୟ କରିବା ପାଇଁ ପ୍ରବର୍ତ୍ତାଇଥିଲେ । ବଡ଼ପୁଅ ଥାଉ ଥାଉ ସାନପୁଅ ସିଂହାସନରେ ବସିବାକୁ ଇଚ୍ଛା କରିଥିଲେ ଓ ଏଥିପାଇଁ ରାଜାଙ୍କୁ ଧର୍ମପାଶ ଦ୍ୱାରା ଆବଦ୍ଧ କରାଇ ଥିଲେ । ତେଣୁ ରାଜା ସତ୍ୟ କରିଥିବାରୁ ତାହା ତ୍ୟାଗ କରି ପାରିନଥିଲେ । ଶେଷକୁ ସ୍ତ୍ରୀକୁ ତ୍ୟାଗ କଲେ ଓ ପ୍ରାଣ ମଧ୍ୟ ତ୍ୟାଗ କଲେ । ମାତାଙ୍କୁ ମାରିବା, ଭାଇମାନଙ୍କୁ ମାରିବା ପାପ, କିନ୍ତୁ ପିତ ଆଜ୍ଞାକୁ ଶ୍ରେଷ୍ଠ ବିବେଚନା କରି ପରଶୁରାମ ଏହା ପାଳନ କରିଥିଲେ । ସାର କଥା ଏହି ଯେ, ଯେଉଁବ୍ୟକ୍ତି ଯାହାକୁ ନିଜର ପ୍ରଧାନ କର୍ତ୍ତବ୍ୟ ବୋଲି ଭାବନ୍ତି, ତାଙ୍କ ଆଗରେ ଅନ୍ୟ ଗୌଣ କର୍ତ୍ତବ୍ୟ କିଛି ନୁହେଁ । ତେଣୁ ଗୌଣ କର୍ତ୍ତବ୍ୟ ପରିତ୍ୟାଗ କରନ୍ତି । କର୍ତ୍ତବ୍ୟ ଦୃଷ୍ଟିରୁ ତାଙ୍କୁ ସବୁକିଛି ତ୍ୟାଗ କରିବାକୁ ପଡ଼ିଥାଏ ।"

ସୂତ କହିଲେ—"ମୁନିଗଣ ! ମହାରାଜ କରନ୍ଧମ ନାତିର ମୁଖ ଦର୍ଶନ କରି ଅତ୍ୟନ୍ତ ପ୍ରସନ୍ନ ହେଲେ, ସେ କୁମାର ମରୁତକୁ ଅତି ସ୍ନେହରେ ଲାଳନ ପାଳନ କରିବାକୁ ଲାଗିଲେ । ଯେତେବେଳେ ଏହି ଘଟଣା ବୈଶାଳିନୀର ପିତା ମହାରାଜ ବିଶାଲ ଶୁଣିଲେ ସେ ଅତ୍ୟନ୍ତ ପ୍ରସନ୍ନ ହେଲେ । ନିଜର ଜାମାତା, କନ୍ୟା ଓ ନାତିଙ୍କୁ ଦେଖିବା ପାଇଁ ସେ ସମୁଧି ଘରକୁ ଆସିଲେ । ଆଜି ନିଜର କନ୍ୟାକୁ ପୁତ୍ରବତୀ ଦେଖି ରାଜରାଣୀଙ୍କର ଆନନ୍ଦର ସୀମା ମଧ୍ୟ ରହିଲା ନାହିଁ । ବୈଶାଳିନୀ ନିଜ ପିତାଙ୍କୁ ଧରି କାନ୍ଦିବାରେ ଲାଗିଲେ । ପିତା ମଧ୍ୟ ଅଶ୍ରୁପୂର୍ଣ୍ଣ ନୟନରେ କନ୍ୟାର ଶିର ଆଘ୍ରାଣ ପୂର୍ବକ ଗଦ୍‌ଗଦ କଣ୍ଠରେ ତାକୁ ଆଧୈର୍ଯ୍ୟ ନ ହେବାକୁ କହିଲେ । ନିଜ କନ୍ୟାର ପୁତ୍ର ମରୁତ୍ତକୁ ଦେଖି ମହାରାଜ ବିଶାଲ ପରମ ଆନନ୍ଦିତ ହେଲେ । ମରୁତ୍ତ ଦେଖିବାକୁ ଦେବତାଙ୍କଠାରୁ ଅଧିକ ସୁନ୍ଦର ଥିଲା । ତେଜସ୍ୱୀତାରେ ତାଙ୍କ ସମ୍ମୁଖରେ ସୂର୍ଯ୍ୟ ମଧ୍ୟ ନିସ୍ତେଜ ଜଣା ପଡୁଥିଲେ । କିଛି ଦିନ ନିଜ ଝିଅଘରେ ରହି, ପ୍ରତ୍ୟେକଙ୍କୁ ବହୁ ପରିମାଣରେ ବସ୍ତ୍ରାଭୂଷଣ ଦେଇ ମହାରାଜ ବିଶାଳ ନିଜର ରାଜଧାନୀକୁ ଫେରି ଆସିଲେ ।

ଏଣେ କୁମାର ମରୁତ୍ତ ଶୁକ୍ଳପକ୍ଷ ଚନ୍ଦ୍ରମା ଭଳି ଦିନୁ ଦିନ ବଢ଼ିବାକୁ ଲାଗିଲେ । ତାଙ୍କଠାରେ ସମସ୍ତ ଗୁଣ ବିଦ୍ୟମାନ ଥିଲା । ସେ ପିତୃ-ମାତୃ ଭକ୍ତ ଥିଲେ, ନିଜ ପିତାମହଙ୍କର ସମସ୍ତ ଆଜ୍ଞାକୁ ସେ ଶ୍ରଦ୍ଧାର ସହିତ ନତ ମସ୍ତକ ହୋଇ ପାଳନ କରୁଥିଲେ । ସେ ବିଧିବଦ୍ଧ ଅସ୍ତ୍ର-ଶସ୍ତ୍ର ଶିକ୍ଷା କରିଥିଲେ । ସେ ଏକାଧାରରେ ସୌଭାଗ୍ୟ-

ଶାଳୀ, ଶୂର, ବୀର, ସୁନ୍ଦର, ସୁଶୀଳ, ସଦାଗ୍ରହୀ ସର୍ବପ୍ରିୟ, ସମଦର୍ଶୀ, ସରଳ, ଶାନ୍ତ, ବିନୟୀ, ବୁଦ୍ଧିମାନ୍ ଓ ବିବେକୀ ଥିଲେ । ନିଜର ପିତାମହଙ୍କର ସଂରକ୍ଷଣ ଦ୍ୱାରା କୁମାର ମରୁତ୍ତ ଏବେ ଯୁବାବସ୍ଥାରେ ପଦାର୍ପଣ କରିଥିଲେ । ସେ ପିତାମାତାଙ୍କ ରାଜକାର୍ଯ୍ୟରେ ମଧ୍ୟ ଡାହାଣ ହାତଭଳି କାର୍ଯ୍ୟ କରୁଥିଲେ ।

ଯେତେବେଳେ ମହାରାଜ କରନ୍ଧମ ବୃଦ୍ଧ ହୋଇଗଲେ, ସେତେବେଳେ ଦିନେ ସେ ନିଜର ପୁତ୍ର ଅବୀକ୍ଷିତଙ୍କୁ ପାଖକୁ ଡାକି କହିଲେ—"ବତ୍ସ ! ମୁଁ ଏବେ ବୃଦ୍ଧ ହୋଇଗଲି । ହଜାର ବର୍ଷ ପର୍ଯ୍ୟନ୍ତ ମୁଁ ଧର୍ମ ପୂର୍ବକ ଏହି ସସାଗରା ଧରିତ୍ରୀ ପାଳନ କଲି, ଦାନ, ଯଜ୍ଞ ଆଦି କଲି । ଶ୍ରେଷ୍ଠରୁ ବଳି ଶ୍ରେଷ୍ଠ ସାଂସାରିକ ସୁଖଭୋଗ କଲି । ତୁମ ଭଳି ଧର୍ମାତ୍ମା ପୁତ୍ର ଲାଭ କଲି । ଦୁର୍ଲଭ ପୌତ୍ରର ମୁହଁ ମଧ୍ୟ ଦର୍ଶନ କଲି । ସେ ଏବେ ଯୁବକ । ଏବେ ମୋର ଆଉ କୌଣସି କର୍ତ୍ତବ୍ୟ ବାକି ରହିଲା ନାହିଁ । ଆମ କୁଳର ଏହା ସନାତନ ସଦାଚାର ଯେ, ବୃଦ୍ଧାବସ୍ଥାରେ କେହି ଘରେ ରହନ୍ତି ନାହିଁ କି ଖଟ ପଲଙ୍କରେ ପଡ଼ି ପଡ଼ି ମୃତ୍ୟୁବରଣ କରନ୍ତି ନାହିଁ । ଆମର ପୂର୍ବପୁରୁଷଗଣ ବୃଦ୍ଧାବସ୍ଥାରେ ରାଜ୍ୟ ଛାଡ଼ି ତପସ୍ୟା କରିବା ପାଇଁ ବନ ଗମନ କରି ଅଛନ୍ତି । ମୁଁ ମଧ୍ୟ ମୋର ପୂର୍ବ ପୁରୁଷଙ୍କ ପଦାଙ୍କ ଅନୁସରଣ କରିବି । ଏବେ ଏହି ବିଶାଳ ସାମ୍ରାଜ୍ୟ ଭାର ତୁମ ହସ୍ତରେ ଅର୍ପଣ କଲି, ତୁମେ ଏଥର ତାହା ସମ୍ଭାଳ । ମୋର ଇଚ୍ଛା, ଆଜି ମୁଁ ତୁମ ମସ୍ତକରେ ରାଜ ତିଳକ ପିନ୍ଧାଇ ତପସ୍ୱୀ ମାନଙ୍କ ଆଶ୍ରମ ଅଭିମୁଖେ ପ୍ରସ୍ଥାନ କରିବି ।"

ଅବୀକ୍ଷିତ କହିଲେ—"ପିତା ! ମୁଁ ଆପଣଙ୍କ ସମସ୍ତ ଆଜ୍ଞା ପାଳନ କରିବାକୁ ପ୍ରସ୍ତୁତ ଅଛି, କିନ୍ତୁ ଆପଣଙ୍କୁ ନମ୍ରତା ପୂର୍ବକ ନିବେଦନ କରୁଛି ଯେ, ମହାରାଜ ବିଶାଳଙ୍କ ରାଜ୍ୟରେ ବୈଶାଳିନୀଙ୍କ ସ୍ୱୟମ୍ବର ସମୟରେ ଶତ୍ରୁମାନେ ମୋତେ ପରାସ୍ତ କରିଦେଇ-ଥିଲେ, ସେହି ଲଜ୍ଜା ମୋ ମନରୁ ଏପର୍ଯ୍ୟନ୍ତ ଦୂର ହୋଇନାହିଁ । ଏଣୁ ମୁଁ ରାଜା-ସିଂହାସନ ଆରୋହଣ କରିବି ନାହିଁ ।"

ପିତା ଅତ୍ୟନ୍ତ ଶ୍ରଦ୍ଧା ସହକାରେ କହିଲେ—"ବତ୍ସ ! ଯୁଦ୍ଧରେ କେବେ ଜୟ ତ କେବେ ପରାଜୟ ହୋଇଥାଏ । ତୁମେ ବିଶୁଦ୍ଧ ରାଜବଂଶରେ ଉତ୍ପନ୍ନ ହୋଇଛ । ତୁମେ ଏକମାତ୍ର ଏ ରାଜ୍ୟର ଅଧିକାରୀ । ଏପରି ଦୁର୍ବଳତା ତୁମଠାରେ ଶୋଭାପାଏ ନାହିଁ । ତୁମେ ଧର୍ମରେ ପ୍ରଜାପାଳନ କର । କ୍ଷତ୍ରୀୟ ଧର୍ମର ମର୍ଯ୍ୟାଦା ରକ୍ଷାକର ।"

ଅବୀକ୍ଷିତ ଅତ୍ୟନ୍ତ ନମ୍ରତା ସହକାରେ କହିଲେ—"ପିତା ! ଯେ ନିଜକୁ ରକ୍ଷା କରି ପାରି ନ ଥିଲା, ସେ ପୁଣି ପ୍ରଜାଗଣଙ୍କୁ କିପରି ରକ୍ଷା କରିପାରିବ ? ଆପଣ ତ ନିଜେ ଯାଇ ନିଜ ବଳ ପରାକ୍ରମରେ ମୋତେ ବନ୍ଧନ ମୁକ୍ତ କରିଥିଲେ । ମୋର ନିଜର କୌଣସି ବଳ ପରାକ୍ରମରେ ମୁଁ ନିଜକୁ ରକ୍ଷାକରି ପାରି ନ ଥିଲି । ଆପଣଙ୍କର ଏପରି ଅଯୋଗ୍ୟ ପୁଅ ରାଜା ହୋଇ କିପରି ପ୍ରଜା ପାଳନ କରି ପାରିବ ?"

ମହାରାଜ କରନ୍ଧମ ଅତ୍ୟନ୍ତ ସ୍ନେହରେ କହିଲେ—"ଆରେ ! ତୁ ତ ବଡ଼ ପାଗଳ ହୋଇଗଲୁ ମୁଁ ଦେଖୁଛି ! ପିତା ଓ ପୁତ୍ର ମଧ୍ୟରେ କଣ କୌଣସି ଅନ୍ତର ଥାଇ ପାରେ ? ପିତାହିଁ ସ୍ୱୟଂ ପୁତ୍ର ରୂପେ ସ୍ତ୍ରୀ ଗର୍ଭରୁ ଜନ୍ମ ହୁଏ, ଏଥିପାଇଁ ପୁତ୍ରବତୀ ପତ୍ନୀଙ୍କୁ 'ଜାୟା' ବୋଲି କୁହାଯାଏ । ବେଦରେ ପୁତ୍ରକୁ ପିତାଙ୍କ ଆତ୍ମା ବୋଲି କୁହାଯାଇଛି । ତୁ ନିଜ ମନରୁ ସମସ୍ତ ପ୍ରକାର ଗ୍ଲାନି ଦୂର କରି, ରାଜସିଂହାସନରେ ବସି ଧର୍ମରେ ରାଜ୍ୟ ଶାସନ କର ।"

ଅବୀକ୍ଷିତ କହିଲେ—"ପିତା ! ଆପଣଙ୍କ କଥା ଯଥାର୍ଥ, କିନ୍ତୁ ଯେଉଁ ପୁତ୍ର ସମର୍ଥ ହୋଇଅଛି, ତାହାର ତ ପୁଣି ନିଜର କିଛି କର୍ତ୍ତବ୍ୟ ରହିଛି । ସମର୍ଥ ହୋଇ ଯେଉଁ ପୁତ୍ର ପିତାଙ୍କ ଅର୍ଜିତ ସମ୍ପତ୍ତି ଉପରେ ନିର୍ଭର କରେ ଓ ନିଜେ କିଛି ଅର୍ଜନ କରେ ନାହିଁ, ସେ ସମ୍ପତ୍ତିଶାଳୀ ଶ୍ରେଷ୍ଠପୁତ୍ର ହୋଇ ନ ପାରେ । ଯେ ପିତୃ କ୍ଷମତାର ସଙ୍କଟରୁ ମୁକ୍ତିଲାଭ କରେ, ସେ ବଳବାନ୍ ନୁହେଁ । ଯେ ପିତାଙ୍କ ନାମରେ ଖ୍ୟାତ, ସେ ପ୍ରଖ୍ୟାତ ପୁରୁଷ ନୁହେଁ ।

ପିତା କହିଲେ—କୁମାର ! ଏଥିରେ ଲଜ୍ଜାର କୌଣସି କାରଣ ନାହିଁ । ତୁମେ ନିଜେ ଶୂର-ବୀର, ବିନୟୀ ଓ ଗୁଣୀ ଅଛ । ତେଣୁ ରାଜ୍ୟଭାର ଗ୍ରହଣକର । ପୁତ୍ର ହିଁ ପିତାଙ୍କ ସମ୍ପତ୍ତିର ଉତ୍ତରାଧିକାରୀ । ପିତାଙ୍କ ସମସ୍ତ ସମ୍ପତ୍ତି ଉପରେ ପୁତ୍ର ସ୍ୱତଃ ଅଧିକାର ପ୍ରାପ୍ତ ହୁଅନ୍ତି ।"

ଅବୀକ୍ଷିତ କହିଲେ—"ପିତା ! ଯୋଗ୍ୟ ପୁତ୍ରହିଁ ପିତାଙ୍କ ସମ୍ପତ୍ତିର ଅଧିକାରୀ ହୁଏ । ଯେ ସ୍ୱୟଂ ନିଜ ପୁରୁଷାର୍ଥ ବଳରେ ଧନୋପାର୍ଜନରେ ସକ୍ଷମ, ଯେ ନିଜେ ନିଜର ବଳ ପୌରୁଷରେ ବିପଦ ଆପଦରେ ନିଜକୁ ରକ୍ଷାକରିପାରେ, ଯେ ନିଜ ଗୁଣରେ ଯଶସ୍ୱୀ ହୋଇପାରେ, ସେହି ହିଁ ସୁପୁତ୍ର । ମୁଁ ତ ସମରରେ ହାରିଯାଇଥିଲି ଓ ଶତ୍ରୁମାନେ ମୋତେ ବାନ୍ଧିନେଇଥିଲେ । ଆପଣ ମୋତେ ମୁକ୍ତକରି ଆଣିଲେ । ଏପରି ଅଯୋଗ୍ୟ ପୁତ୍ର କେବେହେଲେ ରାଜ୍ୟର ଅଧିକାରୀ ହୋଇନପାରେ । ମୁଁ ତ ବିବାହ କରି ନଥାନ୍ତି, କିନ୍ତୁ ଆପଣ ମୋତେ ବଚନରେ ବାନ୍ଧି ସତ୍ୟ କରାଇନେଲେ । ମୋତେ କିଂ କର୍ତ୍ତବ୍ୟ ବିମୂଢ଼ କରାଇଦେଲେ । ପ୍ରତିଜ୍ଞା ପାଳନ କରିବାପାଇଁ ମୁଁ ଆପଣଙ୍କ କୋଳରେ ନାତିକୁ ଅର୍ପଣକଲି । ଏବେ ଆପଣ ମୋତେ ଆଉ ଅଧିକ ବଳାନ୍ତୁ ନାହିଁ । ମୁଁ କୌଣସି ପ୍ରକାରେ ରାଜ୍ୟଭାର ଗ୍ରହଣ କରିବି ନାହିଁ । ଆପଣ ଯାହାକୁ ଚାହାନ୍ତି ତାକୁ ରାଜ୍ୟଭାର ଅର୍ପଣ କରିପାରନ୍ତି । ମୁଁ ରାଜ୍ୟସିଂହାସନରେ କେବେହେଲେ ବସିବି ନାହିଁ ।"

ମହାରାଜ ତ ଆଗରୁ ଜାଣନ୍ତି ଯେ ପୁତ୍ର ଯେଉଁ ବିଷୟ ଉପରେ ପ୍ରତିଜ୍ଞା କରିନିଏ, ତାହା ସେ ପୂର୍ଣ୍ଣରୂପେ ପାଳନ କରେ । କେହିହେଲେ ତାକୁ ନିଜ ପ୍ରତିଜ୍ଞାରୁ

ବିଚଳିତ କରିପାରନ୍ତି ନାହିଁ । ଏଣୁ ମୁଁ ଆଉ ତା ଲଜ୍ଜାରେ ବାଧାଦେବି ନାହିଁ । ନିଜର ସର୍ବଗୁଣସମ୍ପନ୍ନ ଯୁବକ ପୌତ୍ରକୁ ତା ଦ୍ୱାରା ବିଧିବିଧାନ ପୂର୍ବକ ତିଳକ ପ୍ରଦାନ କରାଇ ଶେଷକୁ ସେ ରାଜସିଂହାସନରେ ବସାଇଲେ । ପୌତ୍ରକୁ ରାଜ୍ୟଭାର ସମର୍ପଣ କରି ମହାରାଜ କରନ୍ଧମ ରାଣୀ ବୀରାଙ୍କ ସହିତ ବନକୁ ଗଲେ ଓ ଔର୍ବଋଷିଙ୍କ ଆଶ୍ରମରେ ମୁନିମାନଙ୍କ ବ୍ରତପାଳନ କରି ଘୋର ତପସ୍ୟା କରିବାକୁ ଲାଗିଲେ । କିଛିକାଳ ପରେ ମହାରାଜ କରନ୍ଧମ ତାଙ୍କ ମର ଶରୀର ତ୍ୟାଗକରି ସ୍ୱର୍ଗକୁ ଗଲେ ଓ ସେଠାରେ ଦିବ୍ୟ ଶରୀରରେ ଦିବ୍ୟ ସୁଖ ଉପଭୋଗ କରିବାକୁ ଲାଗିଲେ । ମୁନିଗଣଙ୍କର ଅନେକ ପରାମର୍ଶରେ ବୀରା ସତୀ ହେଲେନାହିଁ । ସେ ଶିରରେ ଜଟା ଧାରଣ ପୂର୍ବକ କେବଳ ଫଳମୂଳ ଆହାରକରି ଘୋର ତପସ୍ୟା କରିବାକୁ ଲାଗିଲେ । ଭାର୍ଗବ ମୁନିଙ୍କ ଜୀବନ ଆଶ୍ରମରେ ଋଷିପତ୍ନୀମାନଙ୍କ ସଙ୍ଗରେ ରହି ତପସ୍ୱିନୀଙ୍କ ଭଳି ଜୀବନ ବିତାଇବାକୁ ଲାଗିଲେ ଓ ବିପ୍ରପତ୍ନୀମାନଙ୍କର ସେବା ସୁଶ୍ରୁଷା କରି କାଳଯାପନ କଲେ ।

ଏଣେ ମହାରାଜ ମରୁତ୍ତ ଧର୍ମରେ ରାଜ୍ୟପାଳନ କରିବାକୁ ଲାଗିଲେ । ସେ ବଡ଼ ପ୍ରତାପୀ ଥିଲେ, ନିଜର ପୁତ୍ର ଓ ପ୍ରଜାମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ଦେଖୁନଥିଲେ ଓ ଏପରି ଯଜ୍ଞ ଅନୁଷ୍ଠାନ କରୁଥିଲେ ଯେ ତାଙ୍କର ଯଶ ଦିଗଦିଗନ୍ତ ବ୍ୟାପି ଯାଇଥିଲା । କେବଳ ପୃଥିବୀର ରାଜା କାହିଁକି, ଏପରି କି ସ୍ୱର୍ଗର ରାଜା ଇନ୍ଦ୍ର ମଧ୍ୟ ତାଙ୍କ ଐଶ୍ୱର୍ଯ୍ୟକୁ ଦେଖି ତାଙ୍କୁ ଈର୍ଷା କରୁଥିଲେ । ଏଥିପାଇଁ ସେ ମରୁତ୍ତଙ୍କ ଯଜ୍ଞ କରିବାକୁ ଯିବାପାଇଁ ବୃହସ୍ପତିଙ୍କୁ ବାଧା ଦେଇଥିଲେ । ଏହାଦେଖି ମହାରାଜ ବୃହସ୍ପତିଙ୍କ ଭାଇ ଅବଧୂତ ସମ୍ବର୍ତ୍ତଙ୍କ ନିକଟକୁ ଯାଇଥିଲେ । ସମ୍ବର୍ତ୍ତ ତାଙ୍କର ଏପରି ଅଲୌକିକ ଯଜ୍ଞ କରିଥିଲେ ଯେ, ଆଜି ପର୍ଯ୍ୟନ୍ତ ସେପରି ଯଜ୍ଞ କେହି କରିନାହାନ୍ତି । ତାଙ୍କ ଯଜ୍ଞ ସମ୍ବନ୍ଧରେ ସର୍ବତ୍ର ଏହି ପୌରାଣିକଗାଥା ଏପର୍ଯ୍ୟନ୍ତ ଗାନ କରାଯାଉଛି । ପ୍ରଶଂସାକାରୀମାନେ କହନ୍ତି, ମହାରାଜ ମରୁତ୍ତଙ୍କ ସଦୃଶ ଉଦାର ବ୍ୟକ୍ତି ଏ ପର୍ଯ୍ୟନ୍ତ ଏ ଧରାବକ୍ଷରେ ଜନ୍ମ ଗ୍ରହଣ କରିନାହାନ୍ତି । ଏହାଙ୍କ ଯଜ୍ଞର ଯଜ୍ଞମଣ୍ଡପ, ମହଲ ଓ ଯଜ୍ଞାଦି ପାତ୍ର ସୁବର୍ଣ୍ଣରେ ନିର୍ମିତ ହୋଇଥିଲା । ସେ ଯାଜ୍ଞିକ ବ୍ରାହ୍ମଣମାନଙ୍କୁ ପ୍ରଚୁର ପରିମାଣରେ ଦକ୍ଷିଣା ଦେଉଥିବାରୁ ସେମାନେ ପୂର୍ଣ୍ଣ ତୃପ୍ତ ହେଉଥିଲେ । ମରୁଦଗଣ ତଥା ଇନ୍ଦ୍ରାଦି ଦେବତାଗଣଙ୍କ ଭଳି ସେ ଯଜ୍ଞରେ ବ୍ରାହ୍ମଣମାନଙ୍କୁ ଅନ୍ନ ପରସୁଥିଲେ । ରାଜା ମରୁତ୍ତଙ୍କ ଯଜ୍ଞରେ ଯେପରି ସମାରୋହ ହେଉଥିଲା, ସେପରି କୌଣସି ରାଜାଙ୍କ ଯଜ୍ଞରେ ଏ ପର୍ଯ୍ୟନ୍ତ ହୋଇନାହିଁ । ତାଙ୍କ ରାଜ୍ୟରେ ଘରେ ଘରେ ଧନରତ୍ନ ଭରି ରହିଥିବାରୁ ବ୍ରାହ୍ମଣମାନେ ଦକ୍ଷିଣା ଦ୍ରବ୍ୟ ମଧ୍ୟ ତ୍ୟାଗ କରୁଥିଲେ । ସେହି ପରିତ୍ୟକ୍ତ ଧନରତ୍ନ ପାଇ ଅନେକ ରାଜାଙ୍କର ମନୋରଥ ପୂର୍ଣ୍ଣ ହେଉଥିଲା । ସେହି ଧନରତ୍ନ ନେଇ ଅନେକ ରାଜା ନିଜ ନିଜ ରାଜ୍ୟରେ ଯଜ୍ଞମାନ କରୁଥିଲେ ।

ସୂତ କହିଲେ—"ମୁନିଗଣ ! ମହାରାଜ ମରୁତଙ୍କ ଯଜ୍ଞ ଅବଶିଷ୍ଟ ଧନରେ ହିଁ ଧର୍ମରାଜ ଯୁଧିଷ୍ଠିର ଏତେ ବଡ଼ ବଡ଼ ତିନି ଅଶ୍ୱମେଧ ଯଜ୍ଞ କରିଥିଲେ । ସେ ବିଷୟ ପରବର୍ତ୍ତୀ ପ୍ରସଙ୍ଗରେ ପ୍ରାନ୍ତଳଭାବରେ ମୁଁ କହିବି । ଏହି ଧର୍ମାତ୍ମା ରାଜାଙ୍କର ଯଶ ତ୍ରିଭୁବନରେ ବ୍ୟାପ୍ତ । ସେ ଏତେ ନ୍ୟାୟବାନ ଓ ପ୍ରଜାବତ୍ସଳ ଥିଲେ ଯେ, ପ୍ରଜାପାଳନରେ କର୍ତ୍ତବ୍ୟପରାୟଣ ହୋଇ ସେ ନିଜ ପିତା ଅବୀକ୍ଷିତଙ୍କ ସହିତ ଥରେ ଯୁଦ୍ଧ କରିବାପାଇଁ ଉଦ୍ୟତ ହୋଇଥିଲେ ଓ ଅସ୍ତ୍ର ଶସ୍ତ୍ର ନେଇ ତାଙ୍କର ସମ୍ମୁଖୀନ ହୋଇଥିଲେ ।"

ଏହାଶୁଣି ଶୌନକ ପଚାରିଲେ—"ହେ ସୂତ ! ଧର୍ମାତ୍ମା ମହାରାଜ ମରୁତ ନିଜ ପିତାଙ୍କ ସହିତ କେଉଁ କାରଣରୁ ଯୁଦ୍ଧ କରିବାକୁ ଉଦ୍ୟତ ହୋଇଥିଲେ ? ଏପରିକି ଅପ୍ରୀତିକର ଘଟଣା ଘଟିଲା ଯେ, ସେ ପିତାଙ୍କ ସହିତ ଯୁଦ୍ଧ କରିବାପାଇଁ ଉଦ୍ୟତ ହେଲେ । ତାହା କୃପାକରି ଆମକୁ ଶୁଣାନ୍ତୁ ।"

ସୂତ କହିଲେ—"ମୁନିଗଣ ! ଯେଉଁ ସମୟରେ ପ୍ରଜାବତ୍ସଳ ମହାରାଜ ମରୁତ ଧର୍ମରେ ରାଜ୍ୟ ପାଳନ କରୁଥିଲେ, ସେହି ସମୟରେ ତାଙ୍କର ପିତାମହୀ ରହି ତପସ୍ୟା କରୁଥିବା ଋଷିମାନଙ୍କ ଆଶ୍ରମକୁ ପାତାଳଲୋକରୁ କେତେକ ନାଗ ଆସି ଦଶଜଣ ମୁନିଙ୍କୁ ଦଂଶନ କଲେ ।

ନାଗମାନଙ୍କର ଏ ପ୍ରକାର ଧୃଷ୍ଟତା ଦେଖି ସ୍ୱର୍ଗୀୟ ମହାରାଜ କରନ୍ଧମଙ୍କ ପତ୍ନୀ ତପସ୍ୱିନୀ ବୀରାଙ୍କ ମନରେ ଅତ୍ୟନ୍ତ ଦୁଃଖ ହେଲା । ସେ ଚକ୍ରବର୍ତ୍ତୀଙ୍କ ପତ୍ନୀଥିଲେ, ତପସ୍ୟା ନିରତ ଥିଲେ । ଏଣୁ କ୍ରୋଧ କରିବାର କୌଣସି କାରଣ ନଥିଲା ।ଏଥିପାଇଁ ସେ ଜଣେ ମୁନିଙ୍କୁ କହିଲେ—"ମହାଭାଗ ! ଆପଣ ରାଜଧାନୀକୁ ଯାଇ ମୋର ନାତି ମରୁତଙ୍କୁ କହନ୍ତୁ, ଆପଣଙ୍କ ରାଜ୍ୟରେ ଧର୍ମ ଶାସନ ନାହିଁ । ପାତାଳ ପୁରରୁ ନାଗମାନେ ଆସି ଦଶଜଣ ତପସ୍ୱୀଙ୍କୁ ଦଂଶନ କରିଅଛନ୍ତି, ଅଥଚ ଆପଣ ଏ ପର୍ଯ୍ୟନ୍ତ ଏ ଘଟଣା ଜାଣିନାହାନ୍ତି ? ଗୁପ୍ତଚରଗଣ ତ ରାଜାଙ୍କର ନେତ୍ର ସ୍ୱରୂପ ଅଟନ୍ତି, ସେମାନେ ପ୍ରତି ମୁହୂର୍ତ୍ତର ଘଟଣା ଆପଣଙ୍କୁ ଜଣାଇବା କଥା । ଏଥିରୁ ଜଣାଯାଉଛି ଯେ ଆପଣଙ୍କ ଗୁପ୍ତଚରମାନେ ନିଜ ନିଜ କର୍ତ୍ତବ୍ୟ ପାଳନ କରୁନାହାନ୍ତି । ଆପଣ ଭୋଗ ବିଳାସରେ ମାତି ରହିଛନ୍ତି, ତେଣୁ ଆପଣଙ୍କ ରାଜ୍ୟରେ ତପସ୍ୱୀଙ୍କ ଉପରେ ଏପରି ଅତ୍ୟାଚାର ହେଉଛି । କୃପାକରି ଆପଣ ମରୁତଙ୍କ ପାଖକୁ ଯାଇ ତାଙ୍କୁ ମୁଁ କହିଛି ବୋଲି କହିବେ ଯେ ସେ ଶାସନ କାର୍ଯ୍ୟରେ ଅବହେଳା ନକରି ସାବଧାନତା ସହକାରେ ଯେପରି ପ୍ରଜା ପାଳନ କରନ୍ତୁ । ପ୍ରଜାଙ୍କୁ କ୍ଳେଶ ଦେଉଥିବା ଶତ୍ରୁମାନଙ୍କ ଉପରେ ଯେପରି ପ୍ରତିଶୋଧ ନିଅନ୍ତୁ ।"

ମହାରାଣୀ ବୀରାଙ୍କ କଥା ଶୁଣି ତପସ୍ୱୀ ମହାରାଜ ମରୁତଙ୍କ ନିକଟକୁ ଗଲେ ଓ ତାଙ୍କୁ ତପସ୍ୱିନୀ ବୀରାଙ୍କ କହିବା ଅନୁସାରେ ସମସ୍ତ କଥା କହିଲେ । ମହାରାଜ

ମରୁତ୍ ଏ ଘଟଣା ଶୁଣି ଅତ୍ୟନ୍ତ ମର୍ମାହତ ହେଲେ । ସେ ଭୟରେ ପଚାରିଲେ—"ମୁନିବର ! ନାଗ ତ ବିନା ଦୋଷରେ କାହାରିକୁ କାମୁଡ଼ନ୍ତି ନାହିଁ ? ମୁନିଗଣଙ୍କୁ ସେମାନେ କାହିଁକି ଦଂଶନ କଲେ ?

ମୁନି କହିଲେ "ହେ ପୃଥ୍ୱୀପତି ! ନାଗ ସତ୍ତ୍ୱେ ତ ଦୁଷ୍ଟ ଜୀବ, ଦିନେ ସେମାନେ ଛଦ୍ମ ବେଶରେ ଆସିଲେ । ସେତେବେଳେ ଏହି ଦଶଜଣ ମୁନି ଏକ ସ୍ଥାନରେ ବସି ଶାସ୍ତ୍ର ଚର୍ଚ୍ଚା କରୁଥିଲେ । ନାଗମାନଙ୍କ ମଧ୍ୟରୁ ଜଣେ ତାଙ୍କୁ ପଚାରିଲା—"ମୁନିଗଣ ଆପଣ ସମୁଦାୟ କେତେ ଜଣ ?" ମୁନିଗଣ କହିଲେ ଦଶ । 'ଦଶ'ର ଅର୍ଥ ଦଶ ସଂଖ୍ୟା ବି ହୋଇପାରେ ଓ ଦଂଶନ ଅର୍ଥକୁ ବି ବୁଝାଏ । ନାଗ ତାହା ଦଂଶନ ଅର୍ଥରେ ଗ୍ରହଣ କରି ମୁନିମାନଙ୍କୁ ଦଂଶନ କଲେ ଓ ମୁନିମାନେ ସଙ୍ଗେ ସଙ୍ଗେ ମରିଗଲେ । ଏହା ଦେଖି ଆପଣଙ୍କ ପିତାମହୀ ଆପଣଙ୍କ ନିକଟକୁ ମୋତେ ପଠାଇଛନ୍ତି । ଆପଣ ଯାହା ଉଚିତ ମନେକରନ୍ତି, ତାହା କରନ୍ତୁ ।"

ମୁନିଙ୍କ ମୁଖରୁ ନାଗମାନଙ୍କର ଏ ପ୍ରକାର ଦୁଷ୍ଟତା ଶୁଣି ମହାରାଜ ମରୁତ୍ କ୍ରୋଧରେ ଜର୍ଜ୍ଜରିତ ହେଲେ । ବିଶେଷ କରି ସେ ଭାବିଲେ ଯେ ଏହି ଘଟଣାପାଇଁ ତାଙ୍କର ପିତାମହୀ ତାଙ୍କୁ ଅଯୋଗ୍ୟ ରାଜା ବୋଲି ପ୍ରତିପାଦିତ କରିଅଛନ୍ତି । ସେ କାଳ ବିଳମ୍ବ ନକରି ଦିବ୍ୟ ଅସ୍ତ୍ର ଶସ୍ତ୍ର ଓ ଧନୁଶର ଆଦିରେ ସୁସଜ୍ଜିତ ହୋଇ ଭାର୍ଗବ ଔର୍ବ ମୁନିଙ୍କ ଆଶ୍ରମରେ ପହଞ୍ଚିଲେ । ସେଠାରେ ପହଞ୍ଚି ସେ ପ୍ରଥମେ ମୁନି ଓ ମୁନିପତ୍ନୀ-ମାନଙ୍କୁ ଶ୍ରଦ୍ଧାର ସହିତ ପ୍ରଣାମ କଲେ ଓ ଲଜ୍ଜାର ସହିତ ନିଜର ପିତାମହୀଙ୍କ ପାଦଧୂଳି ଆଣି ମୁଣ୍ଡରେ ଲଗାଇଲେ । ଅନେକ ଦିନପରେ ନିଜର ନାତିକୁ ଦେଖି ତପସ୍ୱିନୀ ବୀରାଙ୍କର କଣ୍ଠ ଅବରୁଦ୍ଧ ହୋଇଗଲା । ସେ ସ୍ନେହରେ ମରୁତ୍‌ଙ୍କର ଶିର ଆଘ୍ରାଣ କଲେ ଓ ତାଙ୍କୁ ଆଶୀର୍ବାଦ କରି ଅଭିନନ୍ଦନ ଜଣାଇଲେ ।

ମରୁତ୍ ବାହାରକୁ ଆସି ଦେଖିଲେ ଯେ ନାଗମାନଙ୍କ ଦ୍ୱାରା ଦଂଶିତ ମୁନିଗଣ ମରିପଡ଼ିଛନ୍ତି । ଏହା ଦେଖିବାମାତ୍ରେ କ୍ରୋଧରେ ତାଙ୍କ ନେତ୍ରଯୁଗଳ ରକ୍ତବର୍ଣ୍ଣ ହୋଇଗଲା । ସେ ସଙ୍ଗେ ସଙ୍ଗେ ଧନୁରେ ସମ୍ବର୍ତ୍ତିକ ନାମକ ଦିବ୍ୟ ଅସ୍ତ୍ର ଚଢ଼ାଇ କହିଲେ—"ଆଜି ଜଗତ ମୋର ପରାକ୍ରମ ଦେଖିପାରିବ । ମୁଁ ଆଜି ନାଗମାନଙ୍କର ଦୁଷ୍ଟତାର ଫଳ ସେମାନଙ୍କୁ ଚଖାଇବି । ଆଜି ମୁଁ ସେମାନଙ୍କୁ ସେମାନଙ୍କ ସ୍ତ୍ରୀ-ପୁତ୍ର ପରିବାର ସହିତ ଯମାଳୟକୁ ପଠାଇଦେବି । ନାଗଲୋକର ସମସ୍ତ ନାଗଙ୍କୁ ଆଜି ମୁଁ ସଂହାର କରିବି ।"

ସୂତ କହିଲେ—"ମୁନିଗଣ ! ସେଠାରେ ଏହି ସଂକଳ୍ପ କରି ମରୁତ୍ ସମ୍ବର୍ତ୍ତକ ଅସ୍ତ୍ର ପ୍ରୟୋଗ କରିବାକୁ ଯେତେବେଳେ ଉଦ୍ୟତ ହୁଅନ୍ତି, ସେତେବେଳେ ପୃଥିବୀ ଭୟରେ ଥରିବାକୁ ଲାଗିଲା । ନାଗ ଲୋକରେ ହାହାକାର ପଡ଼ିଗଲା । ନାଗମାନେ

ଦେଖିଲେ ସେମାନଙ୍କୁ ରକ୍ଷା କରିବାକୁ କେହି ନାହିଁ । ତେଣୁ ସେମାନେ ଭୟରେ ଏଣେ ତେଣେ ଧାଇଁ ବ୍ୟାକୁଳହୋଇ ଚିତ୍କାର କରିବାକୁ ଲାଗିଲେ ।"

ଯେଉଁ ସମୟରେ ମରୁତ୍ତଙ୍କ ପିତା ଅବୀକ୍ଷିତ ନିଜପତ୍ନୀ ବୈଶାଳିନୀଙ୍କ ସହିତ ଗନ୍ଧର୍ବ ଲୋକରେ ରହୁଥିଲେ ଓ ମୁକ୍ତବାୟୁ ସେବନ କରିବାପାଇଁ ନାଗଲୋକ ଗମନ କରିଥିଲେ, ସେ ସମୟରେ ବୈଶାଳିନୀଙ୍କର ନାଗପତ୍ନୀ ମାନଙ୍କ ସହିତ ଘନିଷ୍ଠ ବନ୍ଧୁତା ହୋଇଯାଇଥିଲା ଓ ସେ ସେମାନଙ୍କର ସ୍ନେହପାଶରେ ଆବଦ୍ଧ ହୋଇଥିଲେ ।

ନାଗପତ୍ନୀଗଣ ସ୍ନେହରେ ତାଙ୍କୁ କହୁଥିଲେ—"ତୁମେ ଯେତେବେଳେ ରାଜରାଣୀ ହୋଇଯିବ, ସେତେବେଳେ ଆମକୁ ଆଉ କାହିଁକି ପଚାରିବ ?"

ବୈଶାଳିନୀ ସେମାନଙ୍କୁ କହୁଥିଲେ—"ଭଉଣୀ ! ଏପରି କଥା କୁହ ନାହିଁ, ମୁଁ ତ ତୁମ୍ଭମାନଙ୍କୁ ପ୍ରାଣଠାରୁ ଅଧିକ ଭଲପାଏ । ତୁମ୍ଭେମାନେ ଯେତେବେଳେ ଚାହିଁବ, ସେତେବେଳେ ରାଜପ୍ରାସାଦକୁ ଆସିପାରିବ । ମୋର ଯେ ଘର, ତୁମ୍ଭମାନଙ୍କର ବି ସେ ଘର ।"

ଆଜି ଯେତେବେଳେ ନାଗମାନଙ୍କ ବିରୁଦ୍ଧରେ ବୈଶାଳିନୀଙ୍କ ପୁତ୍ରଙ୍କ ଆଗରେ ଘୋର ଅଭିଯୋଗ ଆଗତ ହୋଇଛି, ଏବଂ ସେ ନାଗବଂଶ ନାଶ କରିବାକୁ ବସିଛନ୍ତି, ସେତେବେଳେ ନାଗପତ୍ନୀମାନେ ନିଜ ନିଜ ପତିମାନଙ୍କ ସହିତ ମନୁଷ୍ୟ ବେଶ ଧାରଣ କରି ବୈଶାଳିନୀଙ୍କ ରାଣୀହଂସ ପୁରକୁ ଗଲେ ଓ କାନ୍ଦି କାନ୍ଦି ନିଜର ଦୁଃଖ ଜଣାଇଲେ ।

ଦୟାବତୀ ବୈଶାଳିନୀ ନାଗପତ୍ନୀ ମାନଙ୍କର ଦୁଃଖ ତଥା ବଂଶନାଶ କଥାଶୁଣି ଅତ୍ୟନ୍ତ ଦୁଃଖିତ ହେଲେ ଓ ସେମାନଙ୍କୁ ଆଶ୍ୱସନା ଦେଇ କହିଲେ—"ଭଉଣୀ ! ତୁମ୍ଭେମାନେ ଭୟ କରନାହିଁ, ମୁଁ ତୁମ୍ଭମାନଙ୍କୁ ନିଶ୍ଚୟ ରକ୍ଷା କରିବି । ଯେଉଁ ବ୍ୟକ୍ତି ସମର୍ଥ ହୋଇ ଶରଣାଗତଙ୍କୁ ରକ୍ଷା ନକରେ, ସେ ନର୍କଗାମୀ ହୁଏ ।"

ଏ କଥା ଶୁଣି ନାଗମାନେ କିଞ୍ଚିତ୍ ଆଶ୍ୱସ୍ତ ହେଲେ । ବୈଶାଳିନୀ ଶୀଘ୍ର ନିଜର ପତିଙ୍କ ନିକଟକୁ ଯାଇ କହିଲେ - "ପ୍ରାଣନାଥ ! ଆପଣଙ୍କ ପୁତ୍ର ନାଗମାନଙ୍କ ଉପରେ ଅତ୍ୟନ୍ତ ରାଗି ଯାଇଛି ! ନାଗପତ୍ନୀମାନେ କାନ୍ଦି କାନ୍ଦି ମୋ ନିକଟରେ ଶରଣ ପଶିଛନ୍ତି ଓ ତାଙ୍କୁ ଅଭୟ ଦାନ ମଧ୍ୟ ଦେଇଅଛି । ଯାହା ମୋ ବାକ୍ୟ, ତାହାହିଁ ଆପଣଙ୍କ ବାକ୍ୟ । ଯେ ମୋର ଶରଣାଗତ, ସେ ଆପଣଙ୍କର ମଧ୍ୟ ଶରଣାଗତ । କାରଣ ଶାସ୍ତ୍ରରେ ପତ୍ନୀକୁ ସହଧର୍ମିଣୀ ଓ ଅର୍ଦ୍ଧାଙ୍ଗିନୀ ବୋଲି କୁହାଯାଇଛି । ମୋ ଧର୍ମ ଆପଣଙ୍କ ଧର୍ମଠାରୁ ପୃଥକ୍ ନୁହେଁ । ମୁଁ ନିଜେ ଆପଣଙ୍କ ଅଧୀନ । ଏଣୁ ଯେପରି ହେଉ ଆପଣ ନାଗମାନଙ୍କୁ ମରୁତ୍ତଙ୍କର ଅସ୍ତ୍ରାଘାତରୁ ରକ୍ଷା କରନ୍ତୁ ।"

ନିଜ ପତ୍ନୀଙ୍କଠାରୁ ଏପରି କଥା ଶୁଣି ଅବୀକ୍ଷିତ କହିଲେ - "ପ୍ରିୟେ ! ମରୁତ୍ତ ବର୍ତ୍ତମାନ ରାଜା । ସେ ପ୍ରଜାପାଳନ କରିବା ପାଇଁ ଅଧିକାର ପାଇଛନ୍ତି । ମୁଁ ତ ଏକ ପ୍ରକାର ତା'ର ପ୍ରଜା ଭଳି । ପ୍ରଜା ପାଳନରେ ହସ୍ତକ୍ଷେପ କରିବା ମୋ ପକ୍ଷେ କିପରି ସମ୍ଭବ ହେବ ? ମରୁତ୍ତ ବିନା କାରଣରେ କ୍ରୋଧ କରିବାର ପିଲା ନୁହେଁ । ନାଗମାନେ ନିଶ୍ଚିତ ଭାବରେ କୌଣସି ଘୋର ଅପରାଧ କରିଥିବେ, ତେଣୁ ସେ ସେମାନଙ୍କୁ ବିନାଶ କରିଦେବା ପାଇଁ ଦୃଢ଼ ସଂକଳ୍ପ ହୋଇ ବାହାରି ପଡ଼ିଲାଣି ।"

ବୈଶାଳିନୀ କହିଲେ "ସେ ଯେତେ ଅପରାଧ କରିଥାନ୍ତୁ ନା କାହିଁକି, ମୁଁ ଯେତେବେଳେ ସେମାନଙ୍କୁ ଶରଣ ଦେଇ ଆଶ୍ୱାସନା ବାଣୀ ଶୁଣାଇଛି, ସେତେବେଳେ ତାହା ଆପଣଙ୍କୁ ପୂର୍ତ୍ତି କରିବାକୁ ପଡ଼ିବ ।"

ଅବୀକ୍ଷିତ କହିଲେ—"ଦେଖ ! ତୁମେ ମୋତେ ଅଯଥା କଥା କୁହନାହିଁ । ତୁମ ପୁଅ ଅତ୍ୟନ୍ତ କର୍ତ୍ତବ୍ୟ ପରାୟଣ । ମୁଁ ବାରଣ କଲେ ସେ ଯଦି ମୋକଥା ନମାନେ ତେବେ ମୋତେ ତା ସହିତ ଯୁଦ୍ଧ କରିବାକୁ ପଡ଼ିବ । ସେ ରାଜା, ରାଜାଙ୍କ ଆଜ୍ଞା ଯଦି ପାଳନ କରା ନ ଯାଏ, ତେବେ ବିନା ଅସ୍ତ୍ରରେ ତାଙ୍କୁ ବଧ କରିବା ସଙ୍ଗେ ସମାନ ।"

ରାଜାଙ୍କର ଏହି କଥା ଶୁଣି ଅତ୍ୟନ୍ତ ଦୈନ୍ୟ ଭାବରେ ନାଗମାନେ କହିଲେ, "ଦେବ ! ଆମ୍ଭେମାନେ ଆପଣଙ୍କର ଶରଣାଗତ ହୋଇ ଯଦି ଅଭୟ ପ୍ରାପ୍ତ ନ ହୋଇ ପାରୁଁ ତେବେ ଏହା ଅତ୍ୟନ୍ତ ଦୁଃଖର କଥା । କ୍ଷତ୍ରିୟର ଏହା ପରମ ଧର୍ମ ଯେ, ସେମାନେ ଦୀନ ଦୁଃଖୀ ମାନଙ୍କର ଦୁଃଖ ଦୂର କରିବେ, ଭୟଭୀତଙ୍କୁ ଅଭୟ ପ୍ରଦାନ କରିବେ ଓ ଶରଣାଗତଙ୍କୁ ରକ୍ଷା କରିବେ । ମହାରାଜ ! ଆପଣ ଯଦି ଆମ୍ଭମାନଙ୍କୁ ରକ୍ଷା ନ କରନ୍ତି, ତେବେ ଶରଣାଗତଙ୍କୁ ଆଶ୍ରୟ ନ ଦେବା କାରଣରୁ ଯେଉଁ ଦୋଷ ଲାଗିବ, ତାହାର ଫଳ ଆପଣଙ୍କୁ ଭୋଗ କରିବାକୁ ହେବ ।"

ନାଗମାନଙ୍କର ଏପରି କରୁଣାଭରା ବାଣୀ ଶୁଣି ଅବୀକ୍ଷିତଙ୍କର ହୃଦୟ ତରଳି ଗଲା । ଏଣେ ନିଜର ପ୍ରାଣପ୍ରିୟା ଏଥିପାଇଁ ଅତି ଆଗ୍ରହୀ ହେବାର ସେ ଦେଖି ପାରିଲେ । ତେଣୁ ସେ ନାଗମାନଙ୍କୁ ଅଭୟ ପ୍ରଦାନ କରି କହିଲେ—"ଠିକ୍ ଅଛି, ମୁଁ ସଙ୍ଗେ ସଙ୍ଗେ ମରୁତ୍ତଙ୍କ ନିକଟକୁ ଯାଇ ତାଙ୍କୁ ସମ୍ବର୍ତ୍ତିକ ଅସ୍ତ୍ର ଫେରାଇ ଦେବାକୁ କହିବି । ସେ ଯଦି ବାହା ମୋ କଥା ଅନୁସାରେ ଫେରାଇ ନ ଦିଅନ୍ତି, ତେବେ ନିଜର ଦିବ୍ୟ ଅସ୍ତ୍ର ଦ୍ୱାରା ତାଙ୍କର ସମସ୍ତ ଅସ୍ତ୍ରକୁ ବ୍ୟର୍ଥ କରିଦେବି ଓ ଯୁଦ୍ଧ ପାଇଁ ତାଙ୍କୁ ଆହ୍ୱାନ କରିବି ।" ଏତିକି କହି ସେ ନିଜର ପତ୍ନୀଙ୍କ ସଙ୍ଗରେ ଦିବ୍ୟରଥ ଆରୋହଣ କରି ଓ ହସ୍ତରେ ଧନୁବାଣ ଧାରଣ କରି ଔର୍ବ ମୁନିଙ୍କ ଆଶ୍ରମରେ ସଙ୍ଗେ ସଙ୍ଗେ ଯାଇ ପହଞ୍ଚିଲେ ।

ସେଠାକୁ ଯାଇ ଦେଖିଲେ ମରୁତ୍ତ ହାତରେ ଏକ ବିଶାଳ ଧନୁ ଧାରଣ କରି ଗୋଟିଏ ପାଦ ଆଗକୁ ଓ ଅନ୍ୟ ପାଦଟି ପଛକୁ ପକାଇ ଧନୁର ଗୁଣକୁ ଟାଣି, କ୍ରୋଧରେ ଲାଲ ଲାଲ ଆଖି କରି ସୁମେରୁ ଶିଖର ଭଳି ଅବିଚଳ ଭାବରେ ଠିଆ ହୋଇଛନ୍ତି । ସେ ସମ୍ବର୍ତ୍ତିକ ନାମକ ଦିବ୍ୟଅସ୍ତ୍ରକୁ ସେତେବେଳକୁ ଛାଡ଼ି ସାରିଲେଣି । ତହିଁରୁ ପ୍ରଚଣ୍ଡ ଅଗ୍ନିକଣା ସ୍ଫୁରଣ ହୋଇ ସମଗ୍ର ଆକାଶମଣ୍ଡଳ ଦିବ୍ୟ ଜ୍ୟୋତିରେ ଉଦ୍ଭାସିତ ହେଉଅଛି । ଅଗ୍ନିକଣାଗୁଡ଼ିକ ପାତାଳ ଲୋକକୁ ବ୍ୟାପି ଯାଉଛି । ପ୍ରଜ୍ୱଳିତ ଅଗ୍ନିଶିଖା ଦଶଦିଗ ବ୍ୟାପୀ ଗଲାଣି । ପାତାଳ ଲୋକରେ ଥିବା ପ୍ରାଣୀଗଣଙ୍କ ହା ହା କାର ଓ ସୁ ସୁ ଗର୍ଜ୍ଜନ ସେହି ଆଶ୍ରମ ପର୍ଯ୍ୟନ୍ତ ଶୁଣାଯାଉଛି । ଏହି ଅନର୍ଥ ନିଜ ଆଖିରେ ଦେଖି ଅବୀକ୍ଷିତ ସଙ୍ଗେ ସଙ୍ଗେ ବାରମ୍ବାର କହିବାକୁ ଲାଗିଲେ—"ମରୁତ୍ତ ! ମରୁତ୍ତ ! ତୁମେ ଶୀଘ୍ର ତୁମର ଏହି ଭୟଙ୍କର ଦିବ୍ୟାସ୍ତ୍ରକୁ ଫେରାଇ ଆଣ ! ବିଳମ୍ବ କର ନାହିଁ । ନାଗମାନଙ୍କୁ ସଂହାର କରିବା ଉଚିତ ନୁହେଁ ।"

ନିଜ ପିତାଙ୍କର ଏହି କଥା ଶୁଣି ମରୁତ୍ତ ଗମ୍ଭୀର ହୋଇ ପଛକୁ ଚାହିଁଲେ । ସେ ନିଜର ମାତା-ପିତାଙ୍କୁ ଦେଖି ସଙ୍ଗେ ସଙ୍ଗେ ପ୍ରଣାମ କଲେ ଓ ନିର୍ଭୟ ହୋଇ କହିଲେ—"ପିତା ! ମୋ ଶାସନରେ ଏ ନାଗମାନେ ଏପରି ସାହସ କରିପାରନ୍ତି ? ଏମାନେ ତପସ୍ୟା କରୁଥିବା ମୁନିଗଣଙ୍କୁ ଦଂଶନ କରି ମାରି ଦେଇଛନ୍ତି । ତେଣୁ ମୁଁ ଏହି ଦୁର୍ମଦ ଦୁଷ୍ଟ ନାଗମାନଙ୍କୁ କଦାପି ବଞ୍ଚିବାକୁ ଦେଇ ନପାରେ ।"

ଅବୀକ୍ଷିତ କହିଲେ—"ଯାହାତ ହେବାର ହେଲାଣି ! ଏମାନେ ଏବେ ମୋର ଶରଣା-ଗତ । ମୁଁ ନାଗମାନଙ୍କୁ ଅଭୟ ଦାନ ଦେଇ ଦେଇଛି । ଏଣୁ ସେମାନଙ୍କୁ ମାରିବା ତୁମର ଉଚିତ ନୁହେଁ । ନିଜର ଦିବ୍ୟଅସ୍ତ୍ରକୁ ତମେ ଶୀଘ୍ର ଫେରାଇ ଆଣ, ନଚେତ୍ ବହୁତ ଅନର୍ଥ ଘଟିବ ।"

ଏହାଶୁଣି ମରୁତ୍ତ ଦୃଢ଼ତାର ସହିତ କହିଲେ—"ଦେଖନ୍ତୁ ପିତା ! ଆପଣ ମୋ ଶାସନରେ ହସ୍ତକ୍ଷେପ କରନ୍ତୁ ନାହିଁ । ମୁଁ ଏହି ଦୁଷ୍ଟଗଣଙ୍କୁ ସଂହାର କରିବି, ଏହା ଦୃଢ଼ ନିଶ୍ଚିତ । ଏ ସମ୍ବନ୍ଧରେ ଆପଣ ମୋତେ କୌଣସି ଉପଦେଶ ଦିଅନ୍ତୁ ନାହିଁ ।"

ଏହାଶୁଣି ଅବୀକ୍ଷିତ କ୍ରୋଧ ପ୍ରକାଶକରି କହିଲେ—"ଦେଖ ରାଜନ୍ ! ଏ ସର୍ପମାନେ ମୋର ଶରଣ ପଶିଛନ୍ତି, ମୁଁ ସେମାନଙ୍କୁ ଅଭୟଦାନ ଦେଇଛି । ତେଣୁ ତୁମକୁ ଏମାନଙ୍କୁ ମାରିବା ପାଇଁ ବାରଣ କରୁଛି, ତଥାପି ତୁମେ ମୋ କଥାରେ କର୍ଣ୍ଣପାତ ନ କରି ନିଜକୁ ଅତିବଡ଼ ଶୂର-ବୀର ଓ ଯୋଦ୍ଧା ବୋଲି ମନେ କରୁଛ । ମୁଁ ମଧ୍ୟ କ୍ଷତ୍ରିୟ ସନ୍ତାନ, ମୋତେ ମଧ୍ୟ ଉତ୍ତମ ଅସ୍ତ୍ରଶସ୍ତ୍ର ଚାଳନା ଜଣାଅଛି । ଯଦି ତୁମେ ଭଲରେ ମୋ କଥା ନ ମାନ ତେବେ ପରିଣାମରେ ଶେଷକୁ ମାନିବାକୁ ବାଧ୍ୟ ହେବ । ଏବେ

ମୁଁ ମୋ ଅସ୍ତ୍ର-ଶସ୍ତ୍ରଦ୍ୱାରା ତୁମ ଅସ୍ତ୍ରର ପ୍ରତିରୋଧ କରି ତାହା ବ୍ୟର୍ଥ କରି ଦେଉଛି କି ନା ଦେଖ । ମୋର ଅସ୍ତ୍ର ଚାଳନାକୁ ଲକ୍ଷ୍ୟ କର ।"

ଏହା କହି ଅବୀକ୍ଷିତ କ୍ରୋଧରେ ଜର୍ଜ୍ଜରିତ ହୋଇ ନିଜର ଦିବ୍ୟ ଧନୁରେ କାଳାସ୍ତ୍ର ଚଢ଼ାଇଲେ । ଏହି କାଳାସ୍ତ୍ର ସମ୍ବର୍ତ୍ତିକାସ୍ତ୍ର ଅପେକ୍ଷା ଅଧିକ ଭୟଙ୍କର । ଏହି ଶର ସନ୍ଧାନ କରିବାରୁ ସମସ୍ତ ଶୈଳ, କାନନ ଓ ସାଗର ସହିତ ପୃଥିବୀ ଥରି ଉଠିଲା । ପ୍ରାଣୀମାନେ ହାହାକାର କରିବାକୁ ଲାଗିଲେ ।

କାଳାସ୍ତ୍ରକୁ ଦେଖି ମରୁତ୍ତ ଟିକିଏ ହେଲେ ଭୟଭୀତ ବା ବିଚଳିତ ହେଲେ ନାହିଁ । ସେ ହସି ହସି କହିଲେ— "ପିତା ! ମୁଁ ତ ମୋର ସମ୍ବର୍ତ୍ତିକାସ୍ତ୍ର ଦୁଷ୍ଟ ନାଗଗଣଙ୍କ ଉଦ୍ଦେଶ୍ୟରେ ନିକ୍ଷେପ କରିଥିଲି ଆପଣଙ୍କୁ ତ ମୁଁ ମାରିବାକୁ ଚାହିଁ ନଥିଲି କିମ୍ବା ଆପଣଙ୍କ ସହିତ ମୋର ତ ଶତ୍ରୁତା ନାହିଁ, ଅଥଚ ଆପଣ ମୋତେ ଶତ୍ରୁ ମନେକରି ମାରିବା ପାଇଁ ମୋ ଉପରକୁ କାଳାସ୍ତ୍ର କାହିଁକି କ୍ଷେପଣ କରୁଅଛନ୍ତି ? ମୁଁ ମରିବାକୁ କଣ ଆପଣ ଚାହାନ୍ତି ?"

ଅବୀକ୍ଷିତ କହିଲେ—"ଦେଖ, ନାଗମାନେ ମୋ ଶରଣ ପଶିଛନ୍ତି । କ୍ଷତ୍ରୀୟର ଧର୍ମ ହେଉଛି, ନିଜ ଶତ୍ରୁ ଯଦି ଶରଣାଗତ ହୁଏ, ସେ ତାକୁ ଶରଣ ଦେଇ ରକ୍ଷା କରିବ । ସବୁ ପ୍ରକାର ସାମର୍ଥ୍ୟ ଥାଇ ଯେ ଶରଣାଗତକୁ ରକ୍ଷା ନ କରେ, ତାହାର ବୀରତ୍ୱ, ସାମର୍ଥ୍ୟ, ଶକ୍ତି, ପୌରୁଷ, କୁଳୀନତା ଆଦିକୁ ଶତ ଧିକ୍‌କାର । ଏଣୁ ହେ ରାଜନ୍ ! ଏହି ନାଗମାନଙ୍କୁ ରକ୍ଷା କରିବା ପାଇଁ ମୁଁ ଦୃଢ଼ ସଂକଳ୍ପ କରିଅଛି । ତୁମେ ଏଥିରେ ବାଧା ଦେଉଅଛ । ଏଣୁ ତୁମେ ମୋର ଶତ୍ରୁ । ମୁଁ ତୁମକୁ ବଞ୍ଚିବାକୁ ଦେବି ନାହିଁ । ଏବେ ତୁମକୁ ମାରି ମୋର ଶରଣାଗତଙ୍କୁ ରକ୍ଷା କରିବି ।"

ମରୁତ୍ତ ଦୃଢ଼ତାର ସହିତ କହିଲେ – "ପିତା ! ଯଦି କୌଣସି ଲୋକ ଶତ୍ରୁ ଭାବରେ କ୍ଷତ୍ରିୟ ଉପରେ ପ୍ରଥମେ ପ୍ରହାର କରେ ଓ ଯୁଦ୍ଧପାଇଁ ଆହ୍ୱାନ କରେ, ତେବେ ସେ ପିତା, ଭ୍ରାତା, ବନ୍ଧୁ, ଗୁରୁ କିମ୍ବା ସଖା ଯେ କେହି ହୁଅନ୍ତୁ ନା କାହିଁକି, ବୀର କ୍ଷତ୍ରିୟ ତାଙ୍କ ସହିତ ଯୁଦ୍ଧ କରିବା ଉଚିତ୍ । ଯଦି ଆପଣ ଶତ୍ରୁବୋଲି ମନେକରି ମୋ ଉପରେ ପ୍ରଥମେ ପ୍ରହାର କରିଛନ୍ତି, କରନ୍ତୁ । ମୁଁ ମଧ୍ୟ ଆପଣଙ୍କୁ ଅସ୍ତ୍ରର ଉତ୍ତର ଅସ୍ତ୍ରରେ ହିଁ ଦେବି । ଆପଣ ମୋତେ ଅସ୍ତ୍ରାଘାତ କଲେ ମୁଁ ମଧ୍ୟ ଆପଣଙ୍କୁ ଛାଡ଼ିବି ନାହିଁ । କେବଳ ଧର୍ମ ରକ୍ଷା ପାଇଁ, କ୍ଷତ୍ରିୟତ୍ୱର ମର୍ଯ୍ୟାଦା ପାଇଁ, କର୍ତ୍ତବ୍ୟ ପାଳନ ଦୃଷ୍ଟିରୁ ମୁଁ ଏହି କାର୍ଯ୍ୟ ଆଜି କରିବି । ଆପଣଙ୍କର ଗୌରବ ମୋ ହୃଦୟରେ ଯେପରି ଅଛି, ସେହିପରି ରହିବ ।" ଏହା କହି ମରୁତ୍ତ ଧନୁରେ ଗୁଣ ଚଢ଼ାଇ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ ।

ଋଷିମାନେ ଦେଖିଲେ, ବଡ଼ ବେଶୀ ଅନର୍ଥ ଘଟିବାକୁ ଯାଉଛି । ଏଣୁ ସେମାନେ ମିଳିତ ହୋଇ ଆସି ପିତା-ପୁତ୍ରଙ୍କ ମଝିରେ ଠିଆ ହୋଇଗଲେ ଓ ନିଜ ନିଜର ଜଟା ପୁଟି ହଲାଇ, ହାତ ଉଠାଇ କହିବାକୁ ଲାଗିଲେ—"ଆମ୍ଭମାନଙ୍କର କଥା ରକ୍ଷା କର ତୁମେ ନିଜ ନିଜ ମଧ୍ୟରେ ଆଉ ଯୁଦ୍ଧ କରନାହିଁ ।" ମରୁତ୍ତଙ୍କୁ ସେମାନେ କହିଲେ---"ରାଜନ୍ ! ଆପଣ ନିଜ ପିତାଙ୍କୁ ପ୍ରହାର କରିବା ଆଦୌ ଶୋଭନୀୟ ନୁହେଁ, ଆପଣ ଏ ପ୍ରକାର ଅନର୍ଥ କରନ୍ତୁ ନାହିଁ ।"

ମରୁତ୍ତ ହାତଯୋଡ଼ି କହିଲେ—"ମହର୍ଷିଗଣ ! ଆପଣମାନେ ହିଁ ମୋତେ ରାଜସିଂହାସନରେ ବସାଇଛନ୍ତି । ଆପଣମାନେ ହିଁ ମୋତେ ସାଧୁମାନଙ୍କୁ ରକ୍ଷା କରିବାକୁ ଓ ଦୁଷ୍ଟ ମାନଙ୍କୁ ବିନାଶ କରିବାକୁ ଶିକ୍ଷା ଦେଇଛନ୍ତି । ମୁଁ ତାହା ହିଁ କରୁଥିଲି । ପିତା ଆସି ବିନା କାରଣରେ ମୋ କାର୍ଯ୍ୟରେ ହସ୍ତକ୍ଷେପ କରୁଅଛନ୍ତି । ମୁଁ କ୍ଷତ୍ରିୟ ଧର୍ମରୁ କିପରି ବିଚଳିତ ହୋଇ ପାରିବି ? ଯେତେବେଳେ ସେ ମୋତେ ବଧ କରିବା ପାଇଁ ଅସ୍ତ୍ରଧରି ଉଦ୍ୟତ ହୋଇଛନ୍ତି, ମୁଁ ମଧ୍ୟ ମୋର କ୍ଷତ୍ରିୟ ଧର୍ମ ପାଳନ କରିବି ।"

ମହର୍ଷିଗଣ ଅବୀକ୍ଷିତଙ୍କୁ କହିଲେ—"ରାଜନ୍ ! ଆପଣ ଆପଣଙ୍କର ସିଂହାସନାସୀନ ଏକ ମାତ୍ର ପୁତ୍ରକୁ ଶସ୍ତ୍ରଘାତ କରିବା ଶୋଭନୀୟ ନୁହେଁ । ରାଜନ୍ ! ଧର୍ମାତ୍ମା ମରୁତ୍ତ ନିଜ କର୍ତ୍ତବ୍ୟ ମାତ୍ର ପାଳନ କରୁଛନ୍ତି ।"

ଅବୀକ୍ଷିତ କହିଲେ— "ମହର୍ଷିଗଣ ! ଆପଣମାନେ ଜାଣନ୍ତି ଯେ, ଶରଣାଗତଙ୍କୁ ପରିତ୍ୟାଗ କରିବା ମହାପାପ । ଶରଣାଗତ ବ୍ୟକ୍ତିଙ୍କୁ ରକ୍ଷା କରିବା ପାଇଁ କ୍ଷତ୍ରିୟ ନିଜ ପ୍ରାଣକୁ ମଧ୍ୟ ବଳି ଦେଇପାରେ । ମୁଁ ମୋ ଧର୍ମ ପାଳନ କରୁଅଛି । ଧର୍ମପାଳନରେ ଯଦି ପୁତ୍ର ପ୍ରତିବନ୍ଧକ ହୁଏ, ତେବେ ତାକୁ ବଧ କରିବାରେ କୌଣସି ଦୋଷ ନାହିଁ ।"

ମହର୍ଷିଗଣ କହିଲେ— "ଆପଣ ଯାହା କହୁଛନ୍ତି ତାହା ବାସ୍ତବ କଥା । ଆମ୍ଭେମାନେ ମଧ୍ୟସ୍ଥତା କରି ଏ ଘଟଣାର ସମାଧାନ କରି ଦେବୁ । ନାଗମାନେ କହୁଛନ୍ତି ଯେ ଆମେ ସମସ୍ତେ ତ ଦୁଷ୍ଟ ନୋହୁ । ଆମ ଜାତିର କେତେକ ଦୁଷ୍ଟ ନାଗ ଆସି ମୁନି-ଗଣଙ୍କୁ ଦଂଶନ କରିଅଛନ୍ତି । ଆମ୍ଭେମାନେ ମୁନିଙ୍କ ଶରୀରରୁ ବର୍ତ୍ତମାନ ବିଷ ଶୋଷଣ କରି ସେମାନଙ୍କୁ ବଞ୍ଚାଇ ଦେବୁ । ଭବିଷ୍ୟତରେ ଏପରି ଭୁଲ୍ ଆଉ କେବେ ଯେପରି ନ ହୁଏ, ସେଥିପାଇଁ ଆମ୍ଭେମାନେ ସତତ ଯତ୍ନବାନ୍ ହେବୁ । ଯେତେବେଳେ ଏମାନେ ଏପରି କହୁଛନ୍ତି, ସେ ସ୍ଥଳେ ଆଉ କ୍ରୋଧ କରିବାର କୌଣସି କାରଣ ନାହିଁ । ଯଦି ମୃତ୍ୟୁବରଣ କରିଥିବା ମୁନିଗଣ ପୁନର୍ଜୀବନ ଲଭ କରନ୍ତି, ତାହାହେଲେ ମରୁତ୍ତ ଏବେ ତାଙ୍କର ଅସ୍ତ୍ରକୁ ଉପସଂହାର କରନ୍ତୁ ।" ସେହି ସମୟରେ ଅବୀକ୍ଷିତଙ୍କର ମାତା ତପସ୍ୱିନୀ

ବୀର୍ ସେଠାରେ ମୁନିପତ୍ନୀ ମାନଙ୍କ ମଧ୍ୟରେ ଦଣ୍ଡାୟମାନ ହୋଇଥିଲେ । ସେ ସମସ୍ତ କଥା ପୁଣି ଆଗେଇ ଆସି ପୁତ୍ରକୁ କହିଲେ—"ବାବୁ ! ମୁଁ ଖବର ପଠାଇ ମରୁତ୍ତକୁ ଏଠାକୁ ଡକାଇଥିଲି । ମୋ କହିବା ଅନୁସାରେ ସେ ଏଠାକୁ ଆସିଥିଲା । ଯଦି ନାଗମାନେ ମୁନିଗଣଙ୍କୁ ବଞ୍ଚାଇ ଦେବେ, ତାହାହେଲେ ତ ବାଦ ବିବାଦ କରିବାର କିଛି କାରଣ ନାହିଁ । ମରୁତ୍ତର ସାଧୁରକ୍ଷଣ ଉଦ୍ଦେଶ୍ୟ ପୂର୍ଣ୍ଣ ହେବ ଓ ତୁମର ଶରଣାଗତ ବତ୍ସଳ ନାମ ସାର୍ଥକ ହୋଇଯିବ । ତୁମେ ଦୁହେଁ ଯୁଦ୍ଧ ବନ୍ଦ କର ।" ତପସ୍ୱିନୀ ବୀରାଙ୍କ ମୁଖରୁ ଏହି କଥା ଶୁଣି ପିତା ଓ ପୁତ୍ର ଉଭୟେ ତାଙ୍କୁ ଅଭିନନ୍ଦନ ଜଣାଇଲେ । ନାଗମାନେ ମୁନିଗଣଙ୍କର ବିଷ ହରଣ କରି ସେମାନଙ୍କୁ ବଞ୍ଚାଇ ଦେଲେ । ମୃତ ମୁନିଗଣ ଜୀଇଁ ଉଠିବାର ଦେଖି ମୁନିଋଷିଗଣଙ୍କର ହୃଦୟ ଆନନ୍ଦ ଉଲ୍ଲାସରେ ଭରିଗଲା । ମରୁତ୍ତ ନିଜ ସମ୍ବର୍ତ୍ତିକାସ୍ତ୍ର ସମ୍ବରଣ କରି ନେଲେ । ସେ ସଙ୍ଗେ ସଙ୍ଗେ ଆସି ନିଜ ପିତାମହଙ୍କ ଚରଣ ସ୍ପର୍ଶ କଲେ ଓ ପିତା ମାତାଙ୍କୁ ଭକ୍ତିପୂର୍ବକ ପ୍ରଣାମ କଲେ । ପୁତ୍ରକୁ ଦେଖି ଅବୀକ୍ଷିତଙ୍କ ନେତ୍ରରୁ ପ୍ରେମାଶ୍ରୁ ବହିବାକୁ ଲଗିଲା ! ସେ ଅତି ଆଦରରେ ମରୁତ୍ତଙ୍କୁ ନିଜ ବୁକୁରେ ଚାପି ଧରି କହିଲେ—"ବତ୍ସ ! ତୁମେ ଚିରଞ୍ଜୀବୀ ହୁଅ । ଏହି ପ୍ରକାର ଧର୍ମରେ ପ୍ରଜାମାନଙ୍କୁ ପାଳନ କର । ମୁଁ ତୁମର ଦୃଢ଼ତା, ଶୂର-ବୀରତା ତଥା ସାଧୁ ସଂରକ୍ଷଣ କାର୍ଯ୍ୟରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଛି । ତୁମେ ସର୍ବଦା ଶତ୍ରୁ ଗର୍ବ ଚୂର୍ଣ୍ଣ କର ଓ ସପ୍ତଦ୍ୱୀପା ବସୁନ୍ଧରାର ଏକମାତ୍ର ଅଧିପତି ହୁଅ ।"

ପିତାମାତାଙ୍କଠାରୁ ଏହି ଆଶୀର୍ବାଦ ପାଇ ମହାରାଜ ମରୁତ୍ତ ଅତ୍ୟନ୍ତ ପ୍ରସନ୍ନ ହେଲେ । ମୁନିଗଣ ମରୁତ୍ତ ଓ ଅବୀକ୍ଷିତ ଉଭୟ ରାଜର୍ଷିଙ୍କର ଅଭିନନ୍ଦନ କଲେ । ମୁନି ଋଷିମାନଙ୍କ ଦ୍ୱାରା ସତ୍କୃତ ହୋଇ ତଥା ସେମାନଙ୍କର ଉପଦେଶ ନେଇ ପିତା ମାତାଙ୍କ ସହିତ ମୁନିଗଣଙ୍କୁ ଓ ତପସ୍ୱିନୀ ବୀରାଙ୍କୁ ପ୍ରଣାମ କରି ମହାରାଜ ମରୁତ୍ତ ରଥ ଆରୋହଣ କରି ନିଜ ରାଜଧାନୀକୁ ଫେରି ଆସିଲେ ।

ଏଣେ ବୀରା ମଧ୍ୟ ଅନେକ ଦିନ ଧରି ଘୋର ତପସ୍ୟା କରି ଶେଷକୁ ଦେହରକ୍ଷା କରି ପର ଲୋକରେ ନିଜ ପତିଙ୍କ ସହିତ ମିଳିତ ହେଲେ ।

ସୂତ କହିଲେ—"ମୁନିଗଣ ! ମୁଁ ଅତି ସଂକ୍ଷେପରେ ଆପଣମାନଙ୍କୁ ମରୁତ୍ତଙ୍କ ଚରିତ କହିଲି । ଏବେ ଆପଣମାନେ ଆଉ କଣ ଶୁଣିବାକୁ ଇଚ୍ଛା କରନ୍ତି କୁହନ୍ତୁ ?"

ଏହାଶୁଣି ଶୌନକ କହିଲେ—"ହେ ସୂତ ! ମହାରାଜ ମରୁତ୍ତଙ୍କ ପୁତ୍ର କିଏ ? ଯଦି ତାଙ୍କର କିଛି ଉତ୍ତମ ଚରିତ ଥାଏ, ତେବେ ତାହା ଆମ୍ଭମାନଙ୍କ ଆଗରେ ପ୍ରକାଶ କର ।"

ସୂତ କହିଲେ—"ମୁନିଗଣ ! କେହି କେହି କହନ୍ତି ଯେ ମରୁତ୍ତଙ୍କର ନରିଷ୍ୟନ୍ତ ଆଦି ୧୮ ପୁତ୍ର ଥିଲେ ଓ ନରିଷ୍ୟନ୍ତଙ୍କ ପୁତ୍ର ହେଉଛନ୍ତି 'ଦମ' । କିନ୍ତୁ ଏହି ଭଗବତ

କଥା ପ୍ରସଙ୍ଗରେ ତ ମରୁତ୍ତଙ୍କର ପୌତ୍ର ଦମ ନୁହନ୍ତି, ତାଙ୍କ ପୁତ୍ରର ନାମ 'ଦମ' । କଳ୍ପ ଭେଦରେ ଏହା ହୋଇ ଥାଇ ପାରେ । ଏବେ ମୁଁ ଆପଣମାନଙ୍କୁ ମରୁତ୍ତଙ୍କ ପୁତ୍ର 'ଦମ'ଙ୍କ ଚରିତ ଶୁଣାଇବ । ଆପଣମାନେ ତାହା ପ୍ରେମ ପୂର୍ବକ ଶ୍ରବଣ କରନ୍ତୁ ।"

## ଛପ୍ପୟ

ନୃପ ନାଗନକେ ହେତୁ ଅସ୍ତ୍ର ସଂବର୍ତ୍ତକ ଛୋଡେ୍ୟା ।
ପିତା କରେ୍ୟା ଅତି କୋପ ନ ସୁତ ରନତେଂ ମୁଖ ମୋରେ୍ୟା ॥
ପରକେଂ ଋଷିଗନ ବୀଚ ଅହିନ ମୂନି ଫେର ଜିବାୟେ ।
ଏସେ ସୁତ ଅରୁ ପିତା ସମରତେଂ ମୁନିନ ବଚାୟେ ॥
ଦ୍ରବ୍ୟ ଦାନମହଁ ବ୍ୟୟ କରେ୍ୟା, ବଲ ନିର୍ବଲ ଦୁଖହରନମହଁ ।
ନୃପ ମରୁତ ଯଶ ଅବ ତଲକ, ଛାୟୋ ତିନହୁ ଭୁବନମହଁ ॥



# ଦମ ଓ ରାଜ୍ୟବର୍ଦ୍ଧନଙ୍କ ଚରିତ

**ମରୁତ୍ତସ୍ୟ-ଦମଃ ପୁତ୍ରସ୍ତସ୍ୟାସୀଦ୍ ରାଜ୍ୟବର୍ଦ୍ଧନଃ ।**
**ସୁଧୃତିସ୍ତତ୍ସୁତୋ ଜଜ୍ଞେ ସୌଧୃତେୟୋ ନରଃ ସୁତଃ ॥**

(ଶ୍ରୀ : ଭ : ୯ସ୍କ : ୨ଅ : ୨୯ ଶ୍ଳୋକ)

**ଛପ୍ପୟ**

ସୁତ ମରୁତ୍ତକେ ପୁତ୍ର ଭୟେ ଦମ ଭୂପତି ଭାରୀ ।
ନୃପ ଦଶାର୍ଣ୍ଣକୀ ସୁତା ସୁନ୍ଦରୀ ସୁମନା ପ୍ୟାରୀ ॥
ବ୍ରରେ ସ୍ୱୟମ୍ବରମାହିଁ ଅନ୍ୟ କାମୀ ଲଲଚ୍ୟୟେ ।
ସବ ମିଲି କନ୍ୟା ହରୀ କୁମର ଦମ ନହିଁ ଘବରାୟେ ॥

କରେ୍ୟା ଯୁଦ୍ଧ ସବ ଭଗ୍ନ ହଭେ, ନିଜ ବଲତେଁ ବାଲା ବରୀ ।
ବୈଦିକ ବିଧିତେଁ ବ୍ୟାହ କରି, ସୁମନା ପ୍ରିୟ ପତ୍ନୀ କରୀ ॥

ଯଦି ସଦାଚାର ଅମାନ୍ତ ମଝିରେ ମଝିରେ ଅନ୍ତରାୟ ନ ହୁଏ, ତାହାହେଲେ ବଂଶ ପରମ୍ପରାର ମର୍ଯ୍ୟାଦା ଓ ଗୁଣର ପ୍ରଭାବ ଭବିଷ୍ୟତ ବଂଶଧରଙ୍କ ଉପରେ ଅବଶ୍ୟ ପଡ଼େ । କେବଳ ଯେ ମାତା-ପିତାଙ୍କ ରଜ-ବୀର୍ଯ୍ୟରୁ ମାନବ ଜୀବନ ବିକାଶଶୀଳ ହୁଏ ତାହା ନୁହେଁ, ତନ୍ମଧ୍ୟରେ ସଦ୍‌ଗୁଣଗୁଡ଼ିକର ସମସ୍ତ ସଂସ୍କାର ମଧ୍ୟ ନିହିତ ଅଛି । ଯେଉଁ ପଶୁ ଋତୁଗାମୀ ହୁଏ, ସଦାଚାର ପାଳନ କରେ, ତାହାର ସନ୍ତାନଗଣ ମଧ୍ୟ ସେହିପରି ହୁଅନ୍ତି । ଏହା ମଧ୍ୟ ଲିଖିତ ଅଛି ଯେ, ସିଂହ ଜୀବନରେ ସିଂହୀ ସହିତ ଥରେ ମାତ୍ର ସମାଗମ କରେ । ଏଥିପାଇଁ ସିଂହ ଶାବକ ସିଂହଭଳି ହିଁ ହୁଏ । ଯଦି ଦ୍ୱିତୀୟବାର ସେ ସମାଗମ କରୁଥାଆନ୍ତା, ତେବେ ତା ଶାବକ ସିଂହ ହୋଇପାରନ୍ତା ନାହିଁ । ପ୍ରାଚୀନ କାଳରେ ରଜ-ବୀର୍ଯ୍ୟ ଶୁଦ୍ଧି ଉପରେ ବିଶେଷ ଧ୍ୟାନ ଦିଆଯାଉଥିଲା । ସେ କାଳରେ କୁଳ ମର୍ଯ୍ୟାଦା ଅତୁଟ ରହୁଥିବାରୁ, କୁଳର ଗୌରବ ନଷ୍ଟ ନ ହେଉଥିବାରୁ ଓ ସ୍ତ୍ରୀ ଲୋକମାନେ ସଦାଚାରିଣୀ ହେଉଥିବାରୁ ବୀରର ପୁତ୍ର ବୀର ହିଁ ହେଉଥିଲେ । ସମ୍ରାଟର ପୁତ୍ର ସମ୍ରାଟ ହେଉଥିଲେ ।

ସୂତ କହିଲେ—"ମୁନିଗଣ ! ମହାରାଜା କରନ୍ଧମ ଯେପରି ଯଶସ୍ୱୀ, ତେଜସ୍ୱୀ ଓ ସୁନ୍ଦର ଥିଲେ, ତାଙ୍କ ପୁତ୍ର ଅବୀକ୍ଷିତ ମଧ୍ୟ ସେହିପରି ଦୃଢ଼ ପ୍ରତିଜ୍ଞ ହୋଇ ପାରିଥିଲେ । ସେ ଥରେ ମାତ୍ର ଶତ୍ରୁଙ୍କ ଦ୍ୱାରା ପରାଜିତ ହୋଇଥିବାରୁ ସାରାଜୀବନ ପାଇଁ ରାଜ ସିଂହାସନରେ ବସି ନଥିଲେ । ଏତେ ବଡ଼ ବସୁନ୍ଧରାକୁ ଶାସନ କରି ରାଜାଧିରାଜ ହେବାକୁ ସେ ତୃଣବତ୍ ଜ୍ଞାନ କଲେ । ତାଙ୍କ ପୁତ୍ର ମହାରାଜ ମରୁତ୍ତ ଚକ୍ରବର୍ତ୍ତୀ ହୋଇ-ଥିଲେ ଓ ତାଙ୍କର କୀର୍ତ୍ତି ଏପର୍ଯ୍ୟନ୍ତ ତ୍ରିଭୁବନରେ ବିରାଜମାନ କରୁଛି । ମରୁତ୍ତଙ୍କ ପୁତ୍ର ଦମ ମଧ୍ୟ ପିତାଙ୍କ ଭଳି ଶୂର-ବୀର, ରଣବିଜୟୀ ଓ ସୁନ୍ଦର ଥିଲେ । ସେ ନିଜର ବଳ, ପରାକ୍ରମ ଓ ପୌରୁଷରେ କୁମାରୀ ସୁମନାଙ୍କୁ ସ୍ୱୟଂମ୍ବରରେ ଧର୍ମପୂର୍ବକ ପତ୍ନୀ ରୂପେ ଲାଭ କରିଥିଲେ ।"

ଶୌନକ କହିଲେ—"ହେ ସୂତ ! ଆପଣ ମହାରାଜ ଦମଙ୍କ ଚରିତ ଓ ସେ କିପରି ସୁମନାଙ୍କୁ ବିବାହ କଲେ ତାହା ଆମ୍ଭମାନଙ୍କୁ କହନ୍ତୁ ।"

ସୂତ କହିଲେ—"ମୁନିଗଣ ! ମରୁତ୍ତ ନନ୍ଦନ ଦମ ଯେତେବେଳେ ବଡ଼ ହୋଇଗଲେ, ସେ ଦୈତ୍ୟରାଜ ବୃଷପର୍ବାଙ୍କ ଠାରୁ ଧନୁର୍ବେଦ ସମ୍ପୂର୍ଣ୍ଣ ଶିକ୍ଷା କଲେ । ଦୈତ୍ୟରାଜ ଦୁନ୍ଦୁଭି ପ୍ରସନ୍ନ ହୋଇ ତାଙ୍କୁ ଦିବ୍ୟ ଅସ୍ତ୍ର ପ୍ରଦାନ କଲେ । ବଶିଷ୍ଠଙ୍କ ପୁତ୍ର ଶକ୍ତିଙ୍କ ଠାରୁ ସେ ବେଦ, ବେଦାଙ୍ଗ ବିଧିମତେ ଶିକ୍ଷାକଲେ ଓ ରାଜର୍ଷି ଅର୍ଷ୍ଟିଷେଣଙ୍କ ଠାରୁ ଯୋଗବିଦ୍ୟା ସକଳ ଶିକ୍ଷାକଲେ । ଏହିପରି ଭାବରେ ସେ ସମସ୍ତ ବିଦ୍ୟାରେ ପାରଙ୍ଗମ ହୋଇ ପାରିଥିଲେ । ଅନ୍ୟ କୌଣସି ରାଜକୁମାର ସେତେବେଳେ ତାଙ୍କପରି ଏତେ ସୁନ୍ଦର ନ ଥିଲେ । ତାଙ୍କ ବୀରତ୍ୱ ସର୍ବତ୍ର ବିଖ୍ୟାତ ହୋଇଥିଲା ।

ସେ ସମୟରେ ଦଶାର୍ଣ୍ଣର ବଳବାନ ରାଜା ଚାରୁବର୍ମା ଧର୍ମପୂର୍ବକ ରାଜ୍ୟ ଶାସନ କରୁଥିଲେ । ତାଙ୍କର ସୁମନା ନାମକ ଏକ ପରମ ସୁନ୍ଦରୀ ଓ ଗୁଣବତୀ ସୁକୁମାରୀ କନ୍ୟା ଥିଲେ । ସେ ଯେତେବେଳେ ବିବାହ ଯୋଗ୍ୟ ହେଲେ, ସେତେବେଳେ ଚାରୁବର୍ମା ତାଙ୍କର ସ୍ୱୟମ୍ବର କଲେ । ସ୍ୱୟମ୍ବରରେ ସୁମନା ଦମଙ୍କ କଣ୍ଠରେ ପ୍ରସନ୍ନ ପୂର୍ବକ ବରଣମାଳା ଦେଲେ ।

ପ୍ରଥମରୁ ମଦ୍ର ଦେଶର ରାଜକୁମାର ମହାନନ୍ଦ ସୁମନାଙ୍କ ପ୍ରତି ଅନୁରକ୍ତ ଥିଲେ । ସେ ତାଙ୍କୁ ଲାଭ କରିବା ପାଇଁ ନାନା ଉପାୟ ଅବଲମ୍ବନ କରି ପ୍ରସ୍ତୁତ ହୋଇ ରହିଥିଲେ । ବିଦର୍ଭ ଦେଶର ରାଜକୁମାର ବପୁଷ୍ମାନ ମଧ୍ୟ ହୃଦୟରେ ତାଙ୍କୁ ପାଇବା ପାଇଁ ଆଶା ପୋଷଣ କରିଥିଲେ । ମହାଧନୁ ନାମ ଏକ ରାଜାଙ୍କର ଚାରୁ କନ୍ୟାର ଯୌବନରେ ପ୍ରଭାବିତ ହୋଇଥିବାରୁ ସେ ମଧ୍ୟ ତା ପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇଥିଲେ । ଏ ତିନିଜଣଙ୍କର ସୁମନାଙ୍କୁ ଲାଭ କରିବା ଆଶା ଥିଲା । ସେମାନେ ଦମଙ୍କୁ ନିଜର ଶତ୍ରୁଜ୍ଞାନ

କଲେ । ଛଅଜଣ ଯାକ ଏକାଠି ବିଚାରକଲେ କନ୍ୟାକୁ କଳେ ବଳେ କୌଶଳେ ଯେପରି ହେଉ ହରଣ କରି ନେବାକୁ ହେବ । ଦମଙ୍କଠାରୁ ତାକୁ ବଳକ୍ରାରେ ଛଡ଼ାଇ ନେଇଯିବା ଭଲ । ସେ ଆମ ଛଅଜଣଙ୍କ ମଧ୍ୟରୁ ପୁନଶ୍ଚ ଯାହାକୁ ହେଲେ ତ ପତିରୂପେ ବରଣ କରିବ ଓ ଯାହାର ହେଲେ ତ ପତ୍ନୀ ହେବ ।

ଏହି ପ୍ରକାର ଏକମତ ହୋଇ ଛଅଜଣଯାକ ଉଠି କନ୍ୟାକୁ ଧରି ଆଣି ରଥରେ ବସାଇଲେ । ଏହାଦେଖି କୁମାର ଦମ ମନେମନେ ହସିଲେ । ସେ ଟିକିଏ ହେଲେ ବିଚଳିତ ହେଲେ ନାହିଁ । ତାଙ୍କ ମୁଖମଣ୍ଡଳରେ ବିଷାଦର ଛାୟା ମଧ୍ୟ ଦେଖାଗଲା ନାହିଁ । ସେ ନିଜେ ମଞ୍ଚ ଉପରେ ଠିଆହୋଇ ଗଲେ ଓ ଉପରକୁ ହାତ ଉଠାଇ ବଜ୍ର ଗମ୍ଭୀର ସ୍ୱରରେ କହିଲେ—"ରାଜନ୍ୟ ମଣ୍ଡଳୀ ! ମୁଁ ଆପଣମାନଙ୍କୁ ଗୋଟିଏ ପ୍ରଶ୍ନ ପଚାରିବାକୁ ଚାହୁଁଛି । ଏ ସ୍ୱୟମ୍ବର କଣ ଧର୍ମର କାର୍ଯ୍ୟ ନା ଅଧର୍ମର ? ଯଦି ଏହା ଧର୍ମକାର୍ଯ୍ୟ ହୋଇଥାଏ, ତେବେ ଧର୍ମ ଅନୁଯାରେ ରାଜକୁମାରୀ ମୋ କଣ୍ଠରେ ଜୟମାଳା ପିନ୍ଧାଇ ଦେଇଛନ୍ତି । ଯଦି ବି ବୈଦିକ ମନ୍ତ୍ରପାଠ ହୋଇ ବର୍ତ୍ତମାନ ମୋର ରାଜକୁମାରୀଙ୍କ ସହିତ ବାଧ୍ୟବନ୍ଧ ବିବାହ ନ ହୋଇଛି, ତଥାପି ଏହା ଯେତେବେଳେ ଧର୍ମାନୁସାରେ କରାଯାଇଛି, ତେଣୁ ନ୍ୟାୟ ଅନୁଯାରେ ଦଶାର୍ଣ୍ଣ-ନନ୍ଦିନୀ ମୋ ପତ୍ନୀ ହୋଇ ସାରିଛନ୍ତି । ଯଦି ଏହା ଧର୍ମକାର୍ଯ୍ୟ ନହୋଇ ନାଟକ ହୋଇଥାଏ, ଖେଳ କୌତୁକ ହୋଇଥାଏ, ଅଧର୍ମକାର୍ଯ୍ୟ ହୋଇଥାଏ, ତେବେ ମୋର ସେ କନ୍ୟା କୌଣସି ପ୍ରୟୋଜନ ନାହିଁ । ଆପଣମାନେ ମୋର ଏହି କଥାର ଉତ୍ତର ଦିଅନ୍ତୁ ।"

ଏକଥା ଶୁଣି କନ୍ୟାର ପିତା ମହାରାଜ ଚାରୁବର୍ମା ମଞ୍ଚ ଉପରକୁ ଆସି ଠିଆ ହୋଇ କହିଲେ—"ନୃପତିଗଣ ! ଆପଣମାନେ ଏହି ରାଜକୁମାରଙ୍କ ପ୍ରଶ୍ନର ଉତ୍ତର ଧର୍ମ ବିଚାରରେ ଦିଅନ୍ତୁ ।"

ଏହା ଶୁଣି ଜଣେ ଧାର୍ମିକ ରାଜା କହିଲେ—"ମହାରାଜ ! କ୍ଷତ୍ରୀୟଙ୍କ ପାଇଁ ସ୍ୱୟମ୍ବର ପରମଧର୍ମ । କନ୍ୟା ମନ ମଧ୍ୟରେ ଯାହାଙ୍କୁ ବରଣ କରିନିଏ, ପ୍ରସନ୍ନ ହୋଇ ଯାହାଙ୍କ ଗଳାରେ ବରଣମାଳା ପ୍ରଦାନ କରେ ସେ ସେହି ତା'ର ପତି ହୁଏ । ତେଣିକି ଚାହିଁଲେ ବୈଦିକ ମନ୍ତ୍ର ପଢ଼ାଯାଇପାରେ ବା ପଢ଼ାନଯାଇପାରେ । ସ୍ୱେଚ୍ଛାରେ ବରଣ କରାଯାଉଥିବା ଗାନ୍ଧର୍ବ ବିବାହ କେବଳ କ୍ଷତ୍ରିୟମାନଙ୍କ ପାଇଁ ହିଁ ଉଦ୍ଦିଷ୍ଟ । ଅନ୍ୟ ବର୍ଣ୍ଣ ପାଇଁ ନୁହେଁ । କନ୍ୟା ଯେତେବେଳେ ରାଜକୁମାର ଦମଙ୍କ ଗଳାରେ ସମସ୍ତଙ୍କ ସମ୍ମୁଖରେ ବରଣମାଳା ପ୍ରଦାନ କରିଛନ୍ତି, ସେତେବେଳେ ନ୍ୟାୟ ପୂର୍ବକ ସେ ତାଙ୍କର ପତ୍ନୀ ହୋଇସାରିଛନ୍ତି । ଏବେ ଏ ଯେଉଁ ରାଜା କନ୍ୟାକୁ ହରଣ କରି ନେଉଛନ୍ତି, ସେମାନେ ଅଧର୍ମ ଆଚରଣ କରୁଅଛନ୍ତି । ଅନ୍ୟାୟ କାର୍ଯ୍ୟ କରୁଛନ୍ତି ।"

କୁମାର ଦମ କହିଲେ—"ମୁଁ ଆପଣ ମାନଙ୍କୁ ଏହି କଥାହିଁ ପଚାରିବାକୁ ଯାଉଥିଲି । ଏବେ ମୁଁ ପ୍ରାଣଥିବା ପର୍ଯ୍ୟନ୍ତ ମୋ ପତ୍ନୀଙ୍କୁ ଅନ୍ୟକୁ ହରଣ କରି ନେବାକୁ ଦେବିନାହିଁ । ଯାହା ସମ୍ମୁଖରେ ଯାହାର ପତ୍ନୀ ଅପମାନିତ ହୁଏ, ଲୋକମାନେ ତାହାଙ୍କୁ ଘୃଣା ଚକ୍ଷୁରେ ଦେଖନ୍ତି । ତେଣୁ ସେପରି ପୁରୁଷର ଜୀବନକୁ ଶତଧିକ୍ । ଯେ ନିଜ ପତ୍ନୀକୁ ଦସ୍ୟୁମାନଙ୍କ କବଳରୁ ରକ୍ଷା କରି ନପାରେ, ତାହାର ପତି ହେବାର ଅଧିକାର ନାହିଁ ।" ଏହା କହି କୁମାର ଧନୁର୍ବାଣ ଧରି ସମର କ୍ଷେତ୍ରରେ ଉତ୍ତୀର୍ଣ୍ଣ ହେଲେ । ଦୁଇପକ୍ଷ ମଧ୍ୟରେ ଘମାଘୋଟ ଲଢ଼େଇ ଚାଲିଲା । କୁମାର ଦମ କୁମାର ମହାନନ୍ଦର ଶିର ଚକ୍ଷୁର ପଲକମାନେ ଛେଦ କରିଦେଲେ । ମହାନନ୍ଦ ମୃତ୍ୟୁବରଣ କରିବାରୁ ସମର କ୍ଷେତ୍ରରୁ ଶତ୍ରୁପକ୍ଷ ସୈନ୍ୟମାନେ ଛତ୍ରଭଙ୍ଗ ଦେଲେ । ସମସ୍ତ ରାଜକୁମାର ସେଠାରୁ ପଳାଇଗଲେ । କେବଳ କୁଣ୍ଡଳପୁରର ରାଜା ବପୁଷ୍ମାନ୍ ଯୁଦ୍ଧ କରିବାରେ ଲାଗିଲେ । ଶେଷକୁ ଦମ ତାଙ୍କୁ ମଧ୍ୟ ପରାସ୍ତ କଲେ ।

କୁମାର ଦମ ଜୟଲାଭ କରିବାରୁ ଦଶାର୍ଣ୍ଣ ଦେଶର ରାଜା ଚାରୁବର୍ମା ପ୍ରସନ୍ନ ହୋଇ ନିଜର ସୁଲକ୍ଷଣା କନ୍ୟାକୁ ତାଙ୍କ ସହିତ ବିଧାନ ପୂର୍ବକ ବିବାହ କଲେ । କୁମାର ସୁମନାଙ୍କୁ ସଙ୍ଗରେ ନେଇ ନିଜ ରାଜଧାନୀକୁ ଫେରିଆସିଲେ । ପ୍ରଜାମାନେ ମହାସମାରୋହରେ ତାଙ୍କୁ ସ୍ୱାଗତ କଲେ । କିଛିକାଳପରେ କୁଣ୍ଡଳପୁରର ରାଜା ବପୁଷ୍ମାନ୍ ଦମଙ୍କ ସହ ପୁନରାୟ ଶତ୍ରୁତା କଲେ । ଦମ ଏଥିରେ କ୍ରୁଦ୍ଧହୋଇ ତାଙ୍କୁ ମାରି ମଝିରୁ ଦୁଇଗଡ଼ କରି କାଟି ଦେଲେ ।

ଏହି ମହାରାଜ ଦମଙ୍କ ଔରସରୁ ସୁମନାଙ୍କ ଗର୍ଭରୁ ରାଜ୍ୟବର୍ଦ୍ଧନ ନାମକ ଅତ୍ୟନ୍ତ ତେଜସ୍ୱୀ ପୁତ୍ର ଜନ୍ମ ଗ୍ରହଣ କଲେ । ସେ ଏପରି ଦୁଃସାଧ୍ୟ କାର୍ଯ୍ୟ କରିଥିଲେ, ଯାହାକି ଅନ୍ୟ କୌଣସି ରାଜାଙ୍କ ଦ୍ୱାରା ତାହା ହେବା ସମ୍ଭବ ନୁହେଁ । ଏହି ରାଜ୍ୟବର୍ଦ୍ଧନ ସୂର୍ଯ୍ୟଙ୍କୁ ଉପାସନା କରି ଆୟୁବର୍ଦ୍ଧନ ନାମରେ ନାମିତ ହୋଇଥିଲେ ।

ଶୌନକ କହିଲେ—"ହେ ସୂତ ! ମହାରାଜ ରାଜ୍ୟବର୍ଦ୍ଧନ ସୂର୍ଯ୍ୟନାରାୟଣଙ୍କୁ ଉପାସନା କରି କିପରି ଆୟୁବର୍ଦ୍ଧନ ହେଲେ, ଏହି ସୂର୍ଯ୍ୟଙ୍କ ଭକ୍ତିପୂର୍ଣ୍ଣ କଥା ଆମ୍ଭମାନଙ୍କୁ କହନ୍ତୁ ।"

ଏହା ଶୁଣି ସୂତ କହିଲେ—"ମୁନିଗଣ ! ମହାରାଜ ରାଜ୍ୟବର୍ଦ୍ଧନଙ୍କ ପରମ ପାବନମୟ ଚରିତ ମୁଁ ଆପଣମାନଙ୍କ ଆଗରେ କହୁଅଛି । ଆପଣମାନେ ମନଧ୍ୟାନ ଦେଇ ତାହା ଶ୍ରବଣ କରନ୍ତୁ । ଏହି ରାଜ୍ୟବର୍ଦ୍ଧନ ମହାରାଜ ଅତ୍ୟନ୍ତ ସୁନ୍ଦର, ଶୂର, ବୀର, ଗୁଣାଢ୍ୟ, ଭକ୍ତବତ୍ସଳ ଓ ପ୍ରଜାମାନଙ୍କର ଅତ୍ୟନ୍ତ ପ୍ରିୟପାତ୍ର ଥିଲେ । ଏ ଶାସକ ରୂପେ ପ୍ରଜାପାଳନ କରୁଥିଲେ, ବରଂ ଇନ୍ଦ୍ରଙ୍କ ନ୍ୟାୟରେ ସେମାନଙ୍କର ସେବା କରୁଥିଲେ ।

ତାଙ୍କ ରାଜ୍ୟରେ ଅନାବୃଷ୍ଟି, ଅତିବୃଷ୍ଟି, ଅକାଳମୃତ୍ୟୁ, ଦୁର୍ଭିକ୍ଷ, ରୋଗ, ସର୍ପାଦି ହିଂସ୍ରଜନ୍ତୁ-ମାନଙ୍କର ଉତ୍ପାତ ନଥିଲା । ପ୍ରଜାଗଣ ସୁସ୍ଥ-ସବଳ, ସୁନ୍ଦର, ପୂର୍ଣ୍ଣ ଯୌବନବାନ୍, ଦୀର୍ଘଜୀବୀ ଓ ହୃଷ୍ଟପୁଷ୍ଟ ଥିଲେ । ପ୍ରତ୍ୟେକଙ୍କର ଧର୍ମରେ ମତିଥିଲା । ପ୍ରତ୍ୟେକ ଦେବତା, ବ୍ରାହ୍ମଣ ଓ ଗୋ-ଜାତିର ପୂଜା କରୁଥିଲେ । ରାଜ୍ୟରେ ଦୀନ, ଦୁଃଖୀ, କ୍ଷୁଧାର୍ତ୍ତ ତଥା ଅନ୍ନବସ୍ତ୍ର ଯୋଗୁଁ କଷ୍ଟଭୋଗ କରୁଥିବା ଲୋକ ନ ଥିଲେ । ପିତା ଥାଉ ଥାଉ ପୁତ୍ର କେବେ ମୃତ୍ୟୁ ବରଣ କରୁ ନ ଥିଲେ । କୌଣସି ସ୍ତ୍ରୀ ବିଧବା ନ ଥିଲେ । ଏପରି ରାଜାଙ୍କୁ ପ୍ରଜାମାନେ ପ୍ରାଣଠାରୁବଳି ଅଧିକ ଭଲ ପାଉଥିଲେ । ରାଜାଙ୍କ ପୁଣ୍ୟ ପ୍ରଭାବରୁ ପ୍ରଜାଗଣ ଆନନ୍ଦରେ ରହନ୍ତି ଓ ରାଜାଙ୍କ ପାପରୁ ରାଜ୍ୟରେ ଦୁର୍ଭିକ୍ଷପଡ଼େ ଓ ଲୋକମାନେ ଅକାଳମୃତ୍ୟୁ ଆଦି ଦୁଃଖ ଭୋଗକରନ୍ତି ।

ରାଜା ଯେପରି ପ୍ରଜାବତ୍ସଳ ଓ ଧାର୍ମିକଥିଲେ, ମହାରାଣୀ ମଧ୍ୟ ସେହିପରି ଥିଲେ । ଦାକ୍ଷିଣାତ୍ୟର ରାଜା ବିଦୁରଥଙ୍କ ପରମ ସୁନ୍ଦରୀ, ଗୁଣବତୀ, ମନସ୍ୱିନୀ କନ୍ୟା ମାନିନୀଙ୍କୁ ସେ ବିବାହ କରିଥିଲେ । ମାନିନୀ ସତୀ, ସାଧ୍ୱୀ, ଓ ପତିବ୍ରତାଥିଲେ । ସେ ପିତାଙ୍କୁ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ । ସେବକ ମାନଙ୍କ ଦ୍ୱାରା ସେବା କରାଇ ନଦେଇ ସେ ନିଜେ ପତିଙ୍କ ସେବା କରୁଥିଲେ । ରାଜା ମଧ୍ୟ ତାଙ୍କୁ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ । ତାଙ୍କ ଗର୍ଭରୁ ଜାତ ହୋଇଥିବା କେତେକ ପୁତ୍ରଙ୍କ ମଧ୍ୟରୁ 'ସୁଧୃତି' ଜ୍ୟେଷ୍ଠ ଥିଲେ । ମହାରାଣୀ ପୁତ୍ରବତୀ ହୋଇ ମଧ୍ୟ ନିଜ ସ୍ୱାମୀଙ୍କ ସେବାରେ ସତତ ନିଯୁକ୍ତ ଥିଲେ ।

ଦିନେ ମହାରାଜ ପଲଙ୍କରେ ସୁଖ ନିଦ୍ରାରେ ଶୋଇଥିବା ଅବସ୍ଥାରେ ମହାରାଣୀ ମାନିନୀ ତାଙ୍କ ଶିରରେ ଧୀରେ ଧୀରେ ତୈଳ ଲଗାଉଥିଲେ । ସେହି ସମୟରେ ମହାରାଣୀଙ୍କ ନେତ୍ରରୁ ଟପ୍ ଟପ୍ ହୋଇ ଲୁହ ବହି ପଡ଼ିଲା । ସେହି ଉଷ୍ଣ ଅଶ୍ରୁ ମହାରାଜଙ୍କ ଅଙ୍ଗରେ ପଡ଼ିବାକ୍ଷଣି ତାଙ୍କର ନିଦ ଭାଙ୍ଗିଗଲା ଓ ସେ ମହାରାଣୀଙ୍କ ନେତ୍ରରୁ ଲୋତକ ବହୁଥିବାର ଦେଖି ଅତି ସ୍ନେହରେ ନିଜ ପ୍ରାଣ ପ୍ରିୟାଙ୍କୁ ଆଲିଙ୍ଗନ କରି ତାଙ୍କ ନେତ୍ରରୁ ଲୋତକ ପୋଛୁ ପୋଛୁ କହିଲେ—"ପ୍ରିୟେ ! ତୁମେ କାନ୍ଦୁଛ କାହିଁକି ? କେଉଁ ଦୁଃଖ ଯୋଗୁଁ ତୁମ ନେତ୍ରରେ ଅଶ୍ରୁ ? ଦୁଃଖର କାରଣ ମୋତେ ଶୀଘ୍ର କୁହ ?"

ରାଣୀ ନିଜ ଅଞ୍ଚଳରେ ମୁଖ ପୋଛୁ ପୋଛୁ କହିଲେ—"ପ୍ରାଣନାଥ ! ପ୍ରାଣୀ-ମାନଙ୍କର ଅତ୍ୟନ୍ତ ଅପ୍ରିୟ ଯେଉଁ ବୃଦ୍ଧାବସ୍ଥା, ତାହା ଆପଣଙ୍କୁ ଆକ୍ରମଣ କରିବାକୁ ବସିଲାଣି । ଏହା ମୋପାଇଁ ଦୁଃଖଦାୟକ ବିଷୟ ନୁହେଁତ ଆଉ କଣ ?

ରାଜା ଏହା ଶୁଣି ହସି ହସି ରାଣୀଙ୍କ ମୁହଁକୁ ଉଠାଇ କହିଲେ—"ତୁମେ ତ ପିଲାଙ୍କ ଭଳି କଥା କହୁଛ । ଜନ୍ମ ହେଲେ ତ ମୃତ୍ୟୁ ସୁନିଶ୍ଚିତ । ଦେହଧାରୀ ମାନଙ୍କୁ

ବାଲ୍ୟ, କୌମାର, ପୌଗଣ୍ଡ, ଯୁବା ଓ ବୃଦ୍ଧାବସ୍ଥା ଭୋଗ କରିବାକୁ ହିଁ ପଡ଼ିଥାଏ । ବୃଦ୍ଧାବସ୍ଥା ପାଇଁ ସେହିମାନଙ୍କୁ ଚିନ୍ତା କରିବାକୁ ପଡ଼େ, ଯେଉଁମାନେ ଜନ୍ମ ଗ୍ରହଣ କରି କୌଣସି ଭଲ କାମ ନ କରନ୍ତି, ନିଜର କର୍ତ୍ତବ୍ୟ ପାଳନ କରନ୍ତି । ମୁଁ ଧର୍ମରେ ପ୍ରଜା ପାଳନ କରୁଛି, ହଜାର ହଜାର ଯଜ୍ଞାନୁଷ୍ଠାନ କରୁଛି, ଯଥେଷ୍ଟ ଦାନ ଦେଉଛି, ବିପ୍ର ଓ ଗୁରୁଜନ ମାନଙ୍କୁ ସେବାକରି ସନ୍ତୁଷ୍ଟ କରୁଛି । ତୁମ ସହିତ ବିଧିପୂର୍ବକ ବିବାହ କରିଛି, ମୋର ବହୁତ ଯୋଗ୍ୟ ପୁତ୍ର ହୋଇଛନ୍ତି । ଏବେ ଯଦି ମୋର ବାର୍ଦ୍ଧକ୍ୟ ଉପସ୍ଥିତ, ତେବେ ମୁଁ ତ ତାକୁ ସ୍ୱାଗତ କରୁଛି । ତାହା ପାଇଁ ଏହା ଏକମାତ୍ର ଚିକିତ୍ସା ଯେ, ରାଜ୍ୟଭାର ପୁତ୍ର ଉପରେ ଅର୍ପଣ କରି ମୁଁ ବନକୁ ଯିବି ଓ ସେଠାରେ ତପସ୍ୟା କରି ଦେହତ୍ୟାଗ କରିବି । ସମ୍ପୂର୍ଣ୍ଣ ସାତ ହଜାର ବର୍ଷ ମୁଁ ଏହି ରାଜ୍ୟକୁ ଶାସନ କଲି । ଅନ୍ୟ ରାଜାମାନେ ଯେଉଁ ସୁଖ ଉପଭୋଗ କରି ନ ପାରନ୍ତି, ତାହା ମୁଁ ଉପଭୋଗ କଲି । ଏବେ ବାର୍ଦ୍ଧକ୍ୟକୁ ମୁଁ ଭୟ କରିବି କାହିଁକି ? ଏହା ତ ମୋର ରାଜ୍ୟ ଛାଡ଼ିବାର ପୂର୍ବାଭାସ, ମୋର ଅଭ୍ୟୁଦୟର ଚିହ୍ନ, ଏବେ ମୁଁ ଶୀଘ୍ର ତପସ୍ୟା କରିବା ପାଇଁ ବନକୁ ଯିବି ।"

ସୂତ କହିଲେ—"ମୁନିଗଣ ! ରାଜାଙ୍କର ଏହି ନିଶ୍ଚିତ ବାଣୀ ଶୁଣିଆଡ଼େ ପ୍ରଚାରିତ ହୋଇଗଲା । ପ୍ରଜାଗଣ ଆସି ରାଜାଙ୍କ ନିକଟରେ କାନ୍ଦିବାକୁ ଲାଗିଲେ ।"

ରାଜା ସ୍ନେହବଶ ହୋଇ କହିଲେ—"ପ୍ରଜାଗଣ ! ତୁମ୍ଭେମାନେ ବି ରାଣୀଙ୍କ ଭଳି କାନ୍ଦିବାରେ ଲାଗିଛ । ଦେଖ, ଚିରଦିନ ପାଇଁ କେହି କେବେ ରହିନାହିଁ । ଦିନେ ନା ଦିନେ ବିଚ୍ଛେଦ ଅବଶ୍ୟମ୍ଭାବୀ ।"

ପ୍ରଜାଗଣ କହିଲେ—"ପ୍ରଭୋ ! ମହାରାଣୀ ତେବେ କାନ୍ଦୁଛନ୍ତି କାହିଁକି ? ସେ ତ ଛାୟା ଭଳି ଆପଣଙ୍କ ପାଖେ ପାଖେ ରହିବେ । ଆପଣ ବନକୁ ଗଲେ ସେ ମଧ୍ୟ ବନକୁ ଯାଇ ଆପଣଙ୍କର ସେବା କରିବେ । ପରଲୋକ ଯାତ୍ରାକଲେ ତ ସେ ସଙ୍ଗେ ସଙ୍ଗେ ସତୀ ହେବେ । କିନ୍ତୁ ଆମ୍ଭମାନଙ୍କ କାନ୍ଦିବାରେ ଯଥାର୍ଥତା ଅଛି । ସାତ ହଜାର ବର୍ଷ ଆମ୍ଭମାନଙ୍କୁ ପୁତ୍ର ଭଳି ଆପଣ ପାଳନ କରି ଶେଷକୁ ଛାଡ଼ି ଚାଲିଯାଉଛନ୍ତି ।"

ରାଜା କହିଲେ—"ଦେଖ, ତୁମ୍ଭେମାନେ ମୋହବଶ ହୋଇ ଏପରି କଥା କହୁଅଛ । ଯେପରି ପ୍ରେମ ଭାବ ତୁମ୍ଭେମାନେ ମୋଠାରେ ରଖିଛ, ସେହିପରି ମୋ ପୁତ୍ର ସୁଧୃତଠାରେ ରଖିବ । ସେ ଅତ୍ୟନ୍ତ ଉପଯୁକ୍ତ, ବ୍ରାହ୍ମଣଭକ୍ତ, ସେ ମଧ୍ୟ ମୋ ଭଳି ତୁମ୍ଭମାନଙ୍କୁ ପାଳନ କରିବ । ବନରେ ତପସ୍ୟା କରି ମୁଁ ପୁଣ୍ୟ ସଞ୍ଚୟ କରିବି ।"

ପ୍ରଜାଗଣ କହିଲେ—"ରାଜନ୍ ! ଆପଣ ବନରେ ଯେଉଁ ପୁଣ୍ୟ ସଞ୍ଚୟ କରିବେ, ତାହା ପ୍ରଜାପାଳନ ଠାରୁ ଅଧିକ କେବେହେଲେ ହୋଇ ନ ପାରେ । ପ୍ରଭୋ !

ଆପଣଙ୍କ ଶାସନରେ ଆମ୍ଭେମାନେ ଯେପରି ସୁଖରେ ଥିଲୁ, ତାହା ଅନ୍ୟ କାହାର ଶାସନରେ ସମ୍ଭବ ହେବନାହିଁ । ଆପଣ ଆମ୍ଭମାନଙ୍କ ପ୍ରାର୍ଥନା ପ୍ରତି ଧ୍ୟାନ ଦିଅନ୍ତୁ ଓ ବନକୁ ଗମନ କରନ୍ତୁ ନାହିଁ ।"

ରାଜା କହିଲେ—"ତୁମ୍ଭେମାନେ ମୋର ଏ କାର୍ଯ୍ୟରେ ବାଧା ଦିଅ ନାହିଁ । ଘରେ ରହି ମୃତ୍ୟୁବରଣ କରିବା କ୍ଷତ୍ରିୟ ପକ୍ଷେ ଶୋଭନୀୟ ନୁହେଁ । ମୋର ପିତା, ପିତାମହ ଓ ସେମାନଙ୍କ ପିତା ଏହିପରି ବନଗମନ କରି ତପଃ ଆଚରଣ କରିଛନ୍ତି । ମୁଁ ସେମାନଙ୍କ ପଦାଙ୍କ ହିଁ ଅନୁସରଣ କରୁଅଛି, କୌଣସି ନୂତନକାର୍ଯ୍ୟ କରୁନାହିଁ । ମୋ ପୁତ୍ର ଶାସନ କାଳରେ ତୁମ୍ଭମାନଙ୍କର କୌଣସି କଷ୍ଟ ହେବ ନାହିଁ ।"

ଏହାକହି ରାଜା ଜ୍ୟୋତିଷ ମାନଙ୍କୁ ଡକାଇଲେ । ପୁତ୍ର ସୁଧୃତିଙ୍କୁ ଡାକି ରାଜକାର୍ଯ୍ୟ ବୁଝାଇଦେଲେ । ସୁଧୃତି ଏକଥା ଶୁଣି କାନ୍ଦିବାକୁ ଲାଗିଲେ ଓ କହିଲେ— "ପିତା ! ମୁଁ ଏବେ ଏ ଦାୟିତ୍ୱ ବହନ କରିବା ପାଇଁ ଅନୁପଯୁକ୍ତ । ଆପଣ ମୋ ଦୁର୍ବଳ କାନ୍ଧରେ ଏତେବଡ଼ ଭାର କାହିଁକି ଅର୍ପଣ କରୁଛନ୍ତି । ମୁଁ ଆପଣଙ୍କ ଭଳି ପ୍ରଜାପାଳନ କଦାପି କରିପାରିବି ନାହିଁ । ପ୍ରଭୋ ! ଆପଣ କୃପାକରି ବନକୁ ଯାଆନ୍ତୁ ନାହିଁ । କ୍ରନ୍ଦନ କରୁଥିବା ଏ ପ୍ରଜାଗଣଙ୍କ କଥାପ୍ରତି ଧ୍ୟାନ ଦିଅନ୍ତୁ ।"

କୁମାରଙ୍କର ଏ ପ୍ରକାର କରୁଣା ଭରା ବାଣୀଶୁଣି ଜ୍ୟୋତିଷ ବ୍ରାହ୍ମଣ ମଧ୍ୟ କାନ୍ଦିବାକୁ ଲାଗିଲେ । ସେ ମୁହୂର୍ତ୍ତ, ତିଥି, ନକ୍ଷତ୍ର ସବୁ କିଛି ଭୁଲିଗଲେ । ଅନ୍ୟ ମାଣ୍ଡଳିକ ଦେଶରୁ ମଧ୍ୟ ବହୁତ ବ୍ରାହ୍ମଣ ଆସିଥିଲେ । ବଗପକ୍ଷୀ ଭଳି ଧଳା ଚମରୀ ଗାଈର ପୁଚ୍ଛଭଳି ଯେଉଁମାନଙ୍କର ଶୁଭ୍ର କେଶ, ସେହି ବୃଦ୍ଧ ବ୍ରାହ୍ମଣଗଣ ଆସି ମହାରାଜାଙ୍କୁ ବନକୁ ନ ଯିବା ପାଇଁ ପ୍ରାର୍ଥନା କରିବାକୁ ଲାଗିଲେ । ସମସ୍ତେ ବିନୟର ସହିତ ପ୍ରାର୍ଥନା କଲେ,—"ମହାରାଜ ! ଆମ୍ଭମାନଙ୍କ ପ୍ରାର୍ଥନା, ଆପଣ ଆଉ କିଛି ଦିନପାଇଁ ବନ ଗମନ ସ୍ଥଗିତ ରଖନ୍ତୁ ।"

ସମସ୍ତଙ୍କର ଆଗ୍ରହ ଦେଖି ରାଜା କିଛିଦିନ ପାଇଁ ବନଗମନ ସ୍ଥଗିତ ରଖିଲେ । ଏହାପରେ ବ୍ରାହ୍ମଣ ମାନଙ୍କର ଏକ ବିରାଟ ସମ୍ମିଳନ ହେଲା । ଏଥିରେ ସର୍ବସମ୍ମତି କ୍ରମେ ସ୍ଥିର କରାଗଲା ଯେ, ଆମ୍ଭେମାନେ ସମସ୍ତେ ଜଗତର ସମସ୍ତ କର୍ମର ସାକ୍ଷୀସ୍ୱରୂପ ଭଗବାନ ସୂର୍ଯ୍ୟନାରାୟଣଙ୍କୁ ରାଜାଙ୍କର ଦୀର୍ଘଜୀବନ କାମନା କରି ଉପାସନା କରିବା ଉଚିତ । ସେ ନିଶ୍ଚିତଭାବେ ଆମ୍ଭମାନଙ୍କର ମନୋକାମନା ପୂର୍ଣ୍ଣ କରିବେ ।

ଏହି ସ୍ଥିର କରି ସମସ୍ତ ପ୍ରଜା ରାଜାଙ୍କର ଆୟୁବୃଦ୍ଧି ପାଇଁ ପ୍ରତ୍ୟେକଙ୍କ ଘରେ ସୂର୍ଯ୍ୟନାରାୟଣଙ୍କ ପୂଜା ଅନୁଷ୍ଠାନ କରିବାକୁ ଲାଗିଲେ । ଅନେକ ବ୍ରାହ୍ମଣ ଏକତ୍ରିତ ହୋଇ ସୂର୍ଯ୍ୟଙ୍କୁ ଆରାଧନା କଲେ । ଯେଉଁଠାରେ ବ୍ରାହ୍ମଣମାନେ ସୂର୍ଯ୍ୟଙ୍କୁ ଆରାଧନା

କରୁଥିଲେ, ସେଠାକୁ ସୁଦାମ ନାମକ ଜଣେ ବ୍ରାହ୍ମଣ ଆସି ସମସ୍ତଙ୍କୁ ସମ୍ବୋଧନ କରି କହିଲେ—"ଆରାଧନା ଅନୁଷ୍ଠାନ ଉପରେ ସ୍ଥାନର ପ୍ରଭାବ ପଡ଼ିଥାଏ । ସିଦ୍ଧ ସ୍ଥାନରେ ଅନୁଷ୍ଠାନ କଲେ ତାହା ଶୀଘ୍ର ସିଦ୍ଧ ହୋଇଥାଏ । ଏଣୁ ଆପଣମାନେ ସିଦ୍ଧ ସ୍ଥାନକୁ ଯାଇ ଅନୁଷ୍ଠାନ କରନ୍ତୁ । ତାହାହେଲେ ଅଳ୍ପ ଦିନ ମଧ୍ୟରେ ଏହା ସିଦ୍ଧ ହେବ ।"

ବ୍ରାହ୍ମଣମାନେ କହିଲେ – "ବିପ୍ରବର ! ଆପଣ ଆମ୍ଭମାନଙ୍କୁ ସେହି ସିଦ୍ଧ ସ୍ଥାନର ଠିକଣା କୁହନ୍ତୁ । ଆମ୍ଭେମାନେ ନିଶ୍ଚୟ ସେଠାକୁ ଯିବୁ ଓ ନିଜର ଅଭୀଷ୍ଟ ସିଦ୍ଧି ପାଇଁ ଆବଶ୍ୟ ଆରାଧନା ଅନୁଷ୍ଠାନ କରିବୁ ।"

ସୁଦାମ କହିଲେ—"ବ୍ରାହ୍ମଣ ଗଣ : କାମରୂପ ପର୍ବତ ଉପରେ ଗୁରୁବିଶାଳ ନାମକ ଏକ ବୃହତ୍ ବନ ଅଛି । ସେହି ବନ ମଧ୍ୟରେ ସିଦ୍ଧ ପୁରୁଷମାନେ ବାସ କରନ୍ତି । ସେଠାରେ ମଧ୍ୟ ଗୋଟିଏ ସୂର୍ଯ୍ୟନାରାୟଣ ମନ୍ଦିର ଅଛି । ଯଦି ଆପଣମାନେ ସେଠାକୁ ଯାଇ ସୂର୍ଯ୍ୟ ଭଗବାନଙ୍କର ଆରାଧନା କରନ୍ତି, ତେବେ ସେହି ପରମ ହିତକାରୀ ସିଦ୍ଧକ୍ଷେତ୍ରର ପ୍ରଭାବରୁ ଆପଣମାନଙ୍କର ସମସ୍ତ କାମନା ଅଚିରେ ସିଦ୍ଧ ହେବ ।"

ଏହା ଶୁଣି ବ୍ରାହ୍ମଣମାନେ ଅତ୍ୟନ୍ତ ଆନନ୍ଦିତ ହୋଇ ଗୁରୁବିଶାଳ ବନକୁ ଯାତ୍ରା କଲେ । ଅନ୍ୟାନ୍ୟ ଧର୍ମାତ୍ମା କ୍ଷତ୍ରିୟ ଓ ବୈଶ୍ୟଗଣ ମଧ୍ୟ ସେମାନଙ୍କର ଅନୁଗମନ କଲେ । ସେଠାକୁ ଯାଇ ସେମାନେ ସୂର୍ଯ୍ୟ ଭଗବାନଙ୍କର ଏକ ପବିତ୍ର ଓ ସୁନ୍ଦର ମନ୍ଦିର ଦର୍ଶନ କଲେ । ସମସ୍ତେ ସେଠାରେ ରହି ମିତାହାରୀ ହୋଇ ଏକାନ୍ତ ଚିତ୍ତରେ ବିବିଧ ନୈବେଦ୍ୟ ଆଦି ଦ୍ୱାରା ସୂର୍ଯ୍ୟଦେବଙ୍କର ଉପାସନା କରିବାକୁ ଲାଗିଲେ ।

ଏହିପରି ଭାବରେ ଯେତେବେଳେ ସେମାନେ ତିନିମାସ ତପସ୍ୟା କଲେ, ସେମାନଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ସହସ୍ରାଂଶୁ ଭଗବାନ୍ ସୂର୍ଯ୍ୟ ନିଜ ସ୍ୱରୂପରେ ସେଠାରେ ସମସ୍ତଙ୍କ ସମୀପରେ ଆବିର୍ଭାବ ହୋଇ କହିଲେ—"ହେ ଦ୍ୱିଜାଦି ଭକ୍ତଗଣ ! ମୁଁ ତୁମ୍ଭମାନଙ୍କ ଉପରେ ପ୍ରସନ୍ନ ହୋଇଅଛି, ତେଣୁ ତୁମ୍ଭେମାନେ ତୁମ୍ଭମାନଙ୍କର ଅଭୀଷ୍ଟ ବର ମାଗ ।"

ଭଗବାନ ସୂର୍ଯ୍ୟଦେବଙ୍କର ସଶରୀର ପ୍ରତ୍ୟକ୍ଷ ଦର୍ଶନ ପାଇ ପ୍ରତ୍ୟେକ ପରମ ଆନନ୍ଦିତ ହେଲେ । ସେମାନେ ଭକ୍ତିଗଦ୍‌ଗଦ କଣ୍ଠରେ କହିଲେ—"ହେ କର୍ମର ସାକ୍ଷୀ ସ୍ୱରୂପ ! ହେ ତେଜରାଶି ପ୍ରକାଶକ ପ୍ରଭୋ ! ଯଦି ଆପଣ ଆମ୍ଭମାନଙ୍କ ଉପରେ ପ୍ରସନ୍ନ ହୋଇଅଛନ୍ତି, ତେବେ ଆମ୍ଭମାନଙ୍କର ସବୁଠାରୁ ପ୍ରିୟ ଧର୍ମାତ୍ମା ରାଜାଙ୍କର ଆୟୁ ଆଉ ୧୦ ହଜାର ବର୍ଷ ବଢ଼ାଇ ଦିଅନ୍ତୁ ।"

ସୂର୍ଯ୍ୟଦେବ କହିଲେ—"ଆଚ୍ଛା ଠିକ୍ ଅଛି, ମୁଁ ତାହା ହିଁ ବର ପ୍ରଦାନ କରୁଛି । ଏହା କହି ସେ ସେହିଠାରେ ଅନ୍ତର୍ଦ୍ଧାନ ହୋଇଗଲେ । ଅଭୀଷ୍ଟ ବର ପ୍ରାପ୍ତ ହୋଇ ଦ୍ୱିଜାତିଗଣ ପ୍ରସନ୍ନ ମନରେ ନିଜ ରାଜ୍ୟକୁ ଫେରି ଆସିଲେ ଓ ପ୍ରତ୍ୟେକଙ୍କ ଆଗରେ ତାହା ବର୍ଣ୍ଣନା କଲେ । ଏହାଶୁଣି ଆବାଳବୃଦ୍ଧ ବନିତା ସମସ୍ତେ ଅତ୍ୟନ୍ତ ଆନନ୍ଦିତ ହେଲେ । ଯେତେବେଳେ ଏହି ସମାଚାର ମହାରାଣୀ ମାନିନୀ ଶୁଣିଲେ, ସେତେବେଳେ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ପ୍ରେମଭରା ହୃଦୟରେ ଅତ୍ୟନ୍ତ ଅନୁରାଗ ପୂର୍ବକ କହିଲେ – "ମହାରାଜ ! ମୋର ଜୀବନ ଆଜି ଧନ୍ୟ । ଆପଣ ପୁନଶ୍ଚ ଯୁବାବସ୍ଥାରେ ଦଶ ହଜାର ବର୍ଷ ନିରୋଗ ରହି ପୃଥିବୀ ପାଳନ କରିବେ । ମୋ ପାଇଁ ଏହାଠାରୁ ବଳି ସୁଖଦ ବିଷୟ ଆଉ କଣ ହୋଇପାରେ ।

ଏହା ଶୁଣି ରାଜା ଆଦୌ ପ୍ରସନ୍ନ ହେଲେ ନାହିଁ । ସେ ଚିନ୍ତାଗ୍ରସ୍ତ ହୋଇ କିଛି ସମୟ ଏହା ଭାବିବାକୁ ଲାଗିଲେ । ତାଙ୍କ ମୁଖମଣ୍ଡଳରେ ବିଷାଦର ଛାୟା ଦେଖା ଦେଲା । ଏହା ଦେଖି ରାଣୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ପ୍ରଭୋ ! ଏ କିପରି କଥା ? ଆପଣଙ୍କର ଅଭୂତପୂର୍ବ ଏ ଅଭ୍ୟୁଦୟରେ ଆପଣ ପ୍ରସନ୍ନ ହେଉନାହାନ୍ତି କି ମୋତେ ହସିକରି ପଦେ ହେଲେ କଥା ବି କହୁନାହାନ୍ତି ? ଏତେ ଆନନ୍ଦ ଅବସରରେ ବିଷାଦର କାରଣ କଣ ?"

ରାଜା କହିଲେ—"ପ୍ରିୟେ ! ଏହାଦ୍ୱାରା ମୋର ଅଭ୍ୟୁଦୟ ହେଲାନାହିଁ ଯେ, କ୍ଲେଶ ବଢ଼ିଗଲା । ଜୀବନ ଯାତ୍ରାର ପଥ ବଢ଼ିବା ସଙ୍ଗେ ସଙ୍ଗେ ଜୀବନର ଭାର ମଧ୍ୟ ବଢ଼ିଗଲା ।"

ରାଣୀ କହିଲେ—"କାହିଁକି ପ୍ରଭୋ ! ସୂର୍ଯ୍ୟ ଭଗବାନଙ୍କ ବରଦାନରେ ଆପଣଙ୍କର କୌଣସି ରୋଗ ହେବ ନାହିଁ, ଆପଣ ସର୍ବଦା ସୁସ୍ଥ ସବଳ ରହିବେ ।"

ରାଜା କହିଲେ—"ଏହା ତ ସତ କଥା, କିନ୍ତୁ କେବଳ ମୁଁ ହିଁ ଯୁବକ ହୋଇ ରହିବି । ମୋର ମନ୍ତ୍ରୀ, ପୁରୋହିତ, ସେବକ, ପରିଜନ, ପୁରଜନ ଓ ମୋ ପ୍ରାଣରୁ ବଳି ଅଧିକ ସ୍ନେହମୟୀ ତୁମେ ନିଜେ ଏତେଦିନ ରହିପାରିବ ନାହିଁ । ସମସ୍ତେ ଜଣ ଜଣ ହୋଇ ମୋତେ ଛାଡ଼ି ଚାଲିଯିବେ । ନିଜର ଆପଣାର ଲୋକ, ବନ୍ଧୁ ବାନ୍ଧବଙ୍କ ସଙ୍ଗରେ ଥିବା ପର୍ଯ୍ୟନ୍ତ ଦୁଃଖ ସୁଖ ସଦୃଶ ହୋଇଯାଏ ଓ ସ୍ନେହୀ-ଜନଙ୍କ ବିରହରେ ସୁଖ ମଧ୍ୟ ଦୁଃଖ ଭଳି ପ୍ରତୀତ ହୁଏ । ଯେତେବେଳେ ତୁମେ ରହିବ ନାହିଁ, ସେତେବେଳେ ମୁଁ ଏତେ ଆୟୁ ନେଇ କଣ କରିବି ? ମୋର ଅତି ଆଦରର ବନ୍ଧୁ ବାନ୍ଧବ ଯେତେବେଳେ ମୋତେ ଛାଡ଼ି ଚାଲିଯିବେ, ସେତେବେଳେ ଏ ରାଜ୍ୟ, ରାଜଭୋଗ ମୋ ପାଇଁ ଏକ ଅଭିଶାପ ମାତ୍ର ହୋଇଯିବ ।"

ଏହା ଶୁଣି ରାଣୀ କହିଲେ—"ପ୍ରଭୋ ! ମୁଁ ସେ କଥା ଆଦୌ ଭାବି ନଥିଲି । ହଁ ଏହା ତ ପ୍ରକୃତରେ ଦୁଃଖ ଦାୟକ ଘଟଣା । ଏବେ ତାହାହେଲେ କଣ କରାଯିବ ?"

ଏ କଥା ଶୁଣି ରାଜା କହିଲେ---"ପ୍ରିୟେ ! ପୁରବାସୀ ଗଣ ମୋ ପ୍ରତି ପରମ ପ୍ରେମ ପ୍ରଦର୍ଶିତ କରିଅଛନ୍ତି । ମୁଁ ଯଦି ସେମାନଙ୍କର ପ୍ରତ୍ୟୁପକାର ନକରେ, ତେବେ କୃତଘ୍ନ ହେବି । ଏଣୁ ମୁଁ ମଧ୍ୟ ସେହି କାମ୍ୟରୂପ ପର୍ବତକୁ ଯାଇ ସେଠାରେ ଥିବା ଗୁରୁ ବିଶାଳ ନାମକ ବୃହତ୍ ବନରେ ଭଗବାନ ବିବସ୍ୱାନଙ୍କ ନିକଟରେ ବିନମ୍ର ହୋଇ ତାଙ୍କର ବନ୍ଦନା କରିବି । ମୁଁ ମଧ୍ୟ ତାଙ୍କଠାରୁ ମୋର ସମସ୍ତ ପ୍ରଜା, ସେବକବର୍ଗ, ପୁତ୍ର, ପୌତ୍ର, ପ୍ରପୌତ୍ର, ଇଷ୍ଟ, ମିତ୍ର, ବନ୍ଧୁ-ବାନ୍ଧବ ତଥା ତୁମପାଇଁ ସେତିକି ବର୍ଷ ଆୟୁ ପ୍ରାର୍ଥନା କରିବି । ଯଦି ଭଗବାନ ଭୁବନ ଭାସ୍କର ମୋ ଉପରେ ପ୍ରସନ୍ନ ହୋଇ ମୋତେ ଏହି ବର ପ୍ରଦାନ କରନ୍ତି, ତେବେ ମୁଁ ରାଜଧାନୀକୁ ଫେରିଆସି ସମସ୍ତଙ୍କ ସହିତ ସୁଖରେ ରାଜ୍ୟଶାସନ କରିବି । ତାହା ନ ହେଲେ ସେହିଠାରେ ଉପବାସ କରି ନିଜର ପ୍ରାଣ ପରିତ୍ୟାଗ କରିବି ।"

ରାଜାଙ୍କର ଏ ପ୍ରକାର ଦୃଢ଼ ନିଶ୍ଚିତ କଥା ଶୁଣି ମହାରାଣୀ ମାନିନୀ ତାଙ୍କୁ ଅଭିନନ୍ଦିତ କଲେ ଓ ନିଜେ ତାଙ୍କ ସାଙ୍ଗରେ ଯିବାପାଇଁ ପ୍ରସ୍ତୁତ ହୋଇଗଲେ । ରାଜା-ରାଣୀ ଉଭୟେ କାମରୂପ ପର୍ବତକୁ ଯାତ୍ରାକଲେ । ସେଠାରେ ସେମାନେ ଭକ୍ତି ଭାବରେ ଭଗବାନ ସୂର୍ଯ୍ୟଦେବଙ୍କର ଆରାଧନା ଓ ପୂଜା କଲେ । ତାଙ୍କ ଉପାସନାରେ ପ୍ରସନ୍ନ ହୋଇ ସୂର୍ଯ୍ୟଦେବ ତାଙ୍କର ଇପ୍ସିତ ବର ପ୍ରଦାନ କରି ଅନ୍ତର୍ହିତ ହୋଇଗଲେ । ସେତେବେଳେ ରାଜା ଅତି ଆନନ୍ଦ ମନରେ ରାଣୀଙ୍କ ସହିତ ରାଜଧାନୀକୁ ଫେରି ଆସିଲେ । ତାଙ୍କର ସମସ୍ତ ଭୃତ୍ୟ ସେବକ, ପୁରୋହିତ, ଅମାତ୍ୟ, ପୁତ୍ର, ପୌତ୍ର, ପ୍ରପୌତ୍ର, ବନ୍ଧୁ-ବାନ୍ଧବ ତଥା ପତ୍ନୀଙ୍କର ଆୟୁ ତାଙ୍କ ଆୟୁଭଳି ଦୀର୍ଘ ହୋଇଗଲା । ସେମାନଙ୍କ ସହିତ ସେ ଧର୍ମପୂର୍ବକ ରାଜ୍ୟ ପାଳନ କରିବାକୁ ଲାଗିଲେ । ଏଥିପାଇଁ କୁହାଯାଏ ଯେ, ଭଗବାନ ସୂର୍ଯ୍ୟଙ୍କୁ ଉପାସନା କଲେ ମାନବ ସମସ୍ତ ବସ୍ତୁ ପ୍ରାପ୍ତହୁଏ । ମହାରାଜ ଏହିପରି ନିଜର ପୁତ୍ର, ପୌତ୍ର, ପ୍ରପୌତ୍ର ତଥା ପ୍ରପୌତ୍ରଙ୍କର ପୁତ୍ର ପୌତ୍ରମାନଙ୍କୁ ଦେଖି ପାରିଥିଲେ ।

ମହାରାଜ ରାଜ୍ୟବର୍ଦ୍ଧନଙ୍କର ପ୍ରଜାପାଳନ ରୂପ ପରମ ଧର୍ମ କାରଣରୁ ଆୟୁବୃଦ୍ଧି ହୋଇଥିଲା । ତାଙ୍କର ପୁତ୍ର ସୁଧୃତି, ସୁଧୃତିଙ୍କର ପୁତ୍ରର ନାମ ନର, ନରଙ୍କର ପୁତ୍ରର ନାମ କେବଳ, କେବଳଙ୍କ ପୁତ୍ରର ନାମ ବନ୍ଧୁମାନ ଓ ବନ୍ଧୁମାନଙ୍କ ପୁତ୍ରର ନାମ ବେଗବାନ ଥିଲା । ଏହି ବେଗବାନଙ୍କର ପୁତ୍ର ହେଉଛନ୍ତି ରାଜର୍ଷି ତୃଣବିନ୍ଦୁ । ତୃଣବିନ୍ଦୁଙ୍କର ଖ୍ୟାତି ଏବେ ସୁଦ୍ଧା ସର୍ବତ୍ର ବ୍ୟାପ୍ତ । ମହାରାଜ ତୃଣବିନ୍ଦୁଙ୍କ

ସ୍ୱର୍ଗର ସର୍ବଶ୍ରେଷ୍ଠ ସୁନ୍ଦରୀ ଅପସରା ଅଲମ୍ବୁଷା ନିଜର ପତିରୂପେ ବରଣ କରିଥିଲେ । ସେହି ଅପ୍ସରାଙ୍କ ଠାରୁ ମହାରାଜ ତୃଣବିନ୍ଦୁଙ୍କର ବିଶାଳ, ଶୂନ୍ୟବନ୍ଧୁ ଓ ଧୁମ୍ରକେତୁ ନାମକ ତିନପୁତ୍ର ଓ ଇଡ଼ବିଡ଼ା ନାମକ ଏକ ପରମ ସୁନ୍ଦରୀ କନ୍ୟା ଜନ୍ମଲାଭ କରିଥିଲେ । ଏହି ଇଡ଼ବିଡ଼ା ପୁଲସ୍ତ୍ୟ ମହର୍ଷିଙ୍କର ପୁତ୍ର ଭଗବାନ ବିଶ୍ରବାଙ୍କୁ ବିବାହ କରିଥିଲେ । ଇଡ଼ବିଡ଼ାଙ୍କ ଠାରୁ କୁବେର ଜନ୍ମଗ୍ରହଣ କରିଥିଲେ ।

ଏହା ଶୁଣି ଶୌନକ କହିଲେ—"ହେ ସୁତ ? ପୁଲସ୍ତ୍ୟଙ୍କ ପୁତ୍ର ବିଶ୍ରବାଙ୍କର ଇଡ଼ବିଡ଼ାଙ୍କର ବିବାହ କିପରି ହେଲା ଓ ତାଙ୍କ ଗର୍ଭରୁ ଲୋକପାଳ ଧନପତି ଭଗବାନ କୁବେରଙ୍କର ଜନ୍ମ କିପରି ହୋଇଥିଲା, ତାହି କୃପାକରି ପ୍ରଥମେ କହନ୍ତୁ । ତାହାପରେ ତୃଣବିନ୍ଦୁଙ୍କର ବଂଶ ବିଷୟରେ ଆମ୍ଭମାନଙ୍କୁ କହିବେ ।

ଏହା ଶୁଣି ସୁତ କହିଲେ—"ମୁନିଗଣ ! ତେବେ ମୁଁ ପ୍ରଥମେ ରାଜର୍ଷି ତୃଣବିନ୍ଦୁଙ୍କ କନ୍ୟା ଭଗବତୀ ଇଡ଼ବିଡ଼ାଙ୍କ ସମ୍ବନ୍ଧରେ କହୁଅଛି । ଆପଣମାନେ ତାହା ସମାହିତ ଚିତ୍ତରେ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ନୃପ ଦମ କେ ସୁତ ଭୟେ ରାଜ୍ୟବର୍ଦ୍ଧନ ତେଜସ୍ୱୀ ।
ପ୍ରଜା ପୁତ୍ରବତ ପାଲି ଭୟେ ଅତି ଭୂପ ଯଶସ୍ୱୀ ।।
ଶ୍ୱେତ ବାଲ ଲଖି ଚଲେ ମ ନନୀ ସଁଗ ବନ ନରପତି ।
ପ୍ରଜା ଦୁଖିତ ଅତି ଭଇ ଅରାଧେ ସବ ମିଲି ଦିନପତି ।।
ବରସ ସହସ ଦଶ ରବି ଦଇ, ଆୟୁ ଭୂପ ରବି ପୁନି ଭଜେ ।
ସବକୀ ନିଜ ସମ ଆୟୁ କରି, ସବନେ ହୀ ସଁଗ ତନୁ ତଜେ ।।



# ରାଜର୍ଷି ତୃଣବିନ୍ଦୁଙ୍କ ବଂଶ

ବନ୍ଧୁସ୍ତସ୍ୟାଭବଦ୍ ଯସ୍ୟ ତୃଣବିନ୍ଦୁର୍ମହୀପତିଃ ।
ତଂ ଭେଜେଽଲମ୍ବୁଷା ଦେବୀ ଭଜନୀୟଗୁଣାଲୟମ୍ ।।
ବରାପ୍ସରା ଯତଃ ପୁତ୍ରାଃ କନ୍ୟା ଚେଡ଼ବିଡ଼ାଭବତ୍ ।
ତସ୍ୟାମୁତ୍ପାଦୟାମାସ ବିଶ୍ରବା ଧନଦଂ ସୁତମ୍ ।।

(ଶ୍ରୀ : ଭ : ୯ମ ସ୍କ : ୨ୟ ଅ : ୩୦/୩୧ ଶ୍ଲୋକ)

**ଛପ୍ପୟ**

ନୃପ ମରୁତ୍ତଠାରେଁ ନବମ ଭଗ୍ୟେ ପୀଢ଼ୀମହିଁ ଭୂପତି ।
ପୃଥିବୀପତି ତୃଣବିନ୍ଦୁ ରୂପ ଗୁଣମହିଁ ସୁନ୍ଦର ଅତି ।।
ଆଲମ୍ବୁଷା ଅପ୍ସରା କାମବଶ ହ୍ୱୈକେଂ ଆଇ ।
ବିଧିବତ୍ କରେଯା ବିବାହ ଇଡ଼ବିଡ଼ା କନ୍ୟା ଜାଇ ।।
ସୁତ ପୁଲସ୍ତ୍ୟ ମୁନି ବିଶ୍ରବା, ତା ଦୁହିତାକେ ପତି ବନେ ।
ଧନାଧ୍ୟକ୍ଷ ଉତ୍ତର ଅଧିପ, ଶ୍ରୀ କୁବେର ତାନେ ଜନେ ।।

ବଂଶବୃଦ୍ଧି ଓ କୁଳର କୀର୍ତ୍ତି ଅକ୍ଷୁର୍ଣ୍ଣ ରଖିବା ନିମିତ୍ତ ଗୃହସ୍ଥୀ ପୁତ୍ର ବାଞ୍ଛା କରନ୍ତି । କନ୍ୟା ପର ଘରକୁ ଯାଇ ପରଗୋତ୍ରୀ ହୁଏ, କିନ୍ତୁ କେତେକ କନ୍ୟା ଏପରି ଯଶସ୍ୱିନୀ ହୁଅନ୍ତି, ସେଉଁମାନେ କି ପିତୃକୁଳ, ପତିକୁଳ ଉଭୟ କୁଳର ଗୌରବ ରକ୍ଷା କରି ଖ୍ୟାତି ଅର୍ଜନ କରି ଥାଆନ୍ତି । ଭଗବତୀ ଇଡ଼ବିଡ଼ା ରାଜର୍ଷି ତୃଣବିନ୍ଦୁଙ୍କର ଏହି ପ୍ରକାର କନ୍ୟା ଥିଲେ । ତାଙ୍କଠାରୁ ଧନାଧିପ କୁବେର ବୈଶ୍ରବଣ ଓ ଏଡ଼ବିଡ଼ ଏହି ଦୁଇପୁତ୍ର ଜନ୍ମଗ୍ରହଣ କରିଥିଲେ ।

ଶ୍ରୀ ସୂତ କହିଲେ—"ଭଗବାନ୍ ! ପୂର୍ବେ ପ୍ରାନ୍ତ ହିମାଳୟର ଅତ୍ୟନ୍ତ ରମଣୀୟ ସ୍ଥାନରେ ଭଗବାନ୍ ପୁଲସ୍ତ୍ୟ ତପସ୍ୟା କରୁଥିଲେ । ସେହି ପାର୍ବତ୍ୟ ପ୍ରାନ୍ତ ଅତ୍ୟନ୍ତ ଶୋଭାମୟ ଓ ବୃକ୍ଷ ଗୁଡ଼ିକ ସର୍ବଦା ଫଳଫୁଲରେ ଭରି ଥିଲା । ଲତାଗୁଡ଼ିକ ପୁଷ୍ପ ଭାରରେ ନମିତ ଥିଲେ । ସେଗୁଡ଼ିକ ବୃକ୍ଷକୁ ଆଶ୍ରୟ କରି ପ୍ରେମ ପ୍ରଦର୍ଶନ କରୁଥିଲେ । ସ୍ଥାନେ ସ୍ଥାନେ ପର୍ବତ ଶିଖରରୁ ସ୍ୱଚ୍ଛ ଜଳ ପରିପୂର୍ଣ୍ଣ ଝରଣା ବହୁଥିଲା । ଝରଣା କୂଳରେ ଥିବା

ଭୂମି ସମତଳ ଥିଲା । ସେଠାରେ ସବୁଜବର୍ଣ୍ଣର ଦୂର୍ବାଦଳ ଏପରି ଶୋଭାପାଉଥିଲା ଯେ, ସତେ ଯେପରି କେହି ସବୁଜବର୍ଣ୍ଣର ଗାଲିଚା ବିଛାଇ ଦେଇଛି । ସେଠାକୁ ବିବାହ କରିବା ପାଇଁ ମୁନି, ଋଷି, ଦେବ, ଗନ୍ଧର୍ବ ତଥା ବିଦ୍ୟାଧରଙ୍କର କନ୍ୟାମାନେ ଆସୁଥିଲେ । ମହାରାଜ ! ଏ ଯୁବାବସ୍ଥା ଏପରି ଉଚ୍ଛୃଙ୍ଖଳ ଯେ, ପ୍ରଭାପରୁ ଯେଉଁମାନେ ରକ୍ଷା ପାଇଥାଆନ୍ତି, ସେମାନେ ପରମ ସୌଭାଗ୍ୟ ପୁରୁଷ ଅଟନ୍ତି । ତା ନ ହେଉଥିଲେ ଭଗବାନ୍ ! ଯୌବନାବସ୍ଥାରେ ପଦାର୍ପଣ କରିବା ମାତ୍ରେ ଅଙ୍ଗେ ଅଙ୍ଗେ ଉନ୍ମାଦନା ସୃଷ୍ଟି ହେଉ ନ ଥାନ୍ତା । ଏ ଅବସ୍ଥାରେ ଚିତ୍ତ ଚଞ୍ଚଳ ହୁଏ, ମନୁଷ୍ୟ କୌଣସି ସ୍ଥାନରେ ସ୍ଥିର ହୋଇ ରହିପାରେ ନାହିଁ । ଚପଳତା ବୃଦ୍ଧିପାଏ । ହସ ଖୁସିରେ ସୀମା ରହେ ନାହିଁ । ବୃଦ୍ଧ ଲୋକଙ୍କୁ ଦେଖିଲେ ଚିତ୍ତ ପ୍ରସନ୍ନ ହୁଏନାହିଁ । ଯୁବକ ମନେ ମନେ ଭାବେ ଏ ବୃଦ୍ଧ କିପରି ମୋ ଆଗରୁ ଦୂରେଇ ଯାଉ । ଏଥିପାଇଁ ସେ ଭଗବାନଙ୍କୁ ଡାକି କହେ — ହେ ଭଗବାନ୍ ! ଏହାଙ୍କୁ କିପରି ମୋଠାରୁ ଦୂରେଇ ନିଅ । ସେ ନ ଗଲେ ଯୁବକ ଆପେ ଆପେ ତାଙ୍କ ନିକଟରୁ ଦୂରେଇ ଯାଏ । ଯେଉଁମାନେ ଅନ୍ଧ ବୃଦ୍ଧ ଓ ତାହାର କୌଣସି ସମ୍ବନ୍ଧୀୟ ହୋଇଥାଆନ୍ତି, ତାହାହେଲେ ତାକୁ ନିଜର ସ୍ୱଭାବକୁ ସରଳ ସଙ୍କୋଚ କରିବାକୁ ପଡ଼ିଥାଏ । ଯଦି ସେ ମୂର୍ଖ ପରି ଅସଂଯତ ଆଚରଣ କରି ବୃଦ୍ଧବ୍ୟକ୍ତିଙ୍କ ଆଗରେ ନିଜର ଚପଳତା ପ୍ରଦର୍ଶନ କରୁଥାଆନ୍ତା, ତେବେ ତାକୁ ସମସ୍ତେ ନିନ୍ଦା କରନ୍ତେ ଓ ହେୟଜ୍ଞାନ କରି ଖୁସି ହୁଅନ୍ତେ । ଯଦି ସମବୟସର ଦୁଇ ଚାରିଜଣ ଯୁବକ ଏକାଠି ହୋଇଯାଆନ୍ତି, ତେବେ କଥାସରିଲା । ଯୁବକମାନଙ୍କ ଅପେକ୍ଷା ଏହି ଯୌବନାବସ୍ଥାରେ ଯୁବତୀ ମାନଙ୍କର ଚପଳତା ଅଧିକ ବଢ଼ିଯାଏ । ଘରେ ତ ସହଜରେ ପିତା, ମାତା, ଭାଇ ଆଦିଙ୍କ ଉପସ୍ଥିତି ଯୋଗୁଁ ଭୟ ସଙ୍କୋଚ ରହେ, ଯେତେବେଳେ ସମବୟସର ଯୁବତୀମାନେ କୌଣସି ଏକାନ୍ତ ସ୍ଥାନରେ ଏକତ୍ରିତ ହୋଇ କ୍ରୀଡ଼ା କରନ୍ତି, ତେବେ ସେ କ୍ଷେତ୍ରରେ ତ କିଛି କହିବାର ନାହିଁ । ଏପରି ଜଣାପଡ଼େ, ସତେ ଯେପରି ଯୁବତୀମାନଙ୍କର ଏକ ହାଟ ବସିଛି । ଉଦ୍ଦାମ ଯୌବନର ହସ କୌତୁକ ରୋଳରେ ସେ ସ୍ଥାନଟି ମୁଖରିତ ହେଉଥାଏ । ଗହଳ ଚହଳ, ଝୁଣ୍ଟିଆ ଗୁଞ୍ଜିକର ରୁମୁଝୁମୁ ଶବ୍ଦ ନୂପୁର ଓ ପାଉଜର ନିକ୍ୱଣ ଓ ସେମାନଙ୍କର ସୁମଧୁର ବାଣୀରେ ହେଉଥିବା ପ୍ରେମ କଳହ, ହସ କୌତୁକରେ ସେ ସ୍ଥାନ ମୁଖରିତ ହେବାକୁ ଲାଗେ ।

ପୁଲସ୍ତ୍ୟ ମୁନି ଯଦିଓ ଏକାନ୍ତ ସ୍ଥାନରେ ତପସ୍ୟା କରୁଥିଲେ, ତଥାପି ଦଳଦଳ କୁମାରୀଙ୍କ ଗମନାଗମନରେ ତାଙ୍କର ଧ୍ୟାନ ଭଙ୍ଗହୋଇଯାଉଥିଲା । ଅନେକଥର କୁମାରୀ-ମାନଙ୍କୁ ପ୍ରେମ ପୂର୍ବକ ସେ ଅନୁରୋଧ କରୁଥିଲେ ଯେ, ତୁମ୍ଭେମାନେ ଅନ୍ୟତ୍ର ଯାଇ କ୍ରୀଡ଼ା କର । କିନ୍ତୁ ଯେଉଁ ଯୁବତୀ କୁମାରୀମାନେ ପୂର୍ବପରି ଜିଦରେ କ୍ରୀଡ଼ା କରିବାକୁ ଲାଗିଲେ ଓ କ୍ରୋଧରେ ମୁନିଙ୍କୁ ଜବାବ ଦେଲେ—"ଏ ବନ ପ୍ରଦେଶ ସମସ୍ତଙ୍କର । ସମସ୍ତେ ସ୍ୱେଚ୍ଛାରେ ଏଠାରେ ବିଚରଣ କରିପାରନ୍ତି । ଏଥିରେ କାହାର କିଛି ଯାଉଛି ତ,

ସେ ନିଜେ ଅନ୍ୟତ୍ର ଗ୍ରଲିଯାଆନ୍ତୁ ।" ଏହାକହି ସେ ମୁନିବର ପୁଲସ୍ତ୍ୟଙ୍କ କଥାକୁ ବେଖାତିର କଲେ ଏବଂ ପୂର୍ବଭଳି ସେଠାରେ ଧୂମ୍‌ଧାମ୍ କରି ସେ ସ୍ଥାନକୁ ଅଟ୍ଟହାସରେ ମୁଖରିତ କରିବାକୁ ଲାଗିଲେ । ଏବେ ମୁନିଙ୍କର ଅତ୍ୟନ୍ତ କ୍ରୋଧ ଉତ୍ପନ୍ନ ହେଲା ଓ ସେ କହିଲେ—"ଆଚ୍ଛା, ଠିକ୍ ଅଛି, ତୁମ୍ଭେମାନେ ଭଲରେ ମୋ କଥା ମାନୁ ନାହଁ । ମୁଁ ତୁମ୍ଭମାନଙ୍କୁ ଶାପ ଦେଉଛି, ଯେ ଯେଉଁ କୁମାରୀ ଆଜିଠାରୁ ଏଠାକୁ କ୍ରୀଡ଼ା କରିବାକୁ ଆସିବ, ସେ ଏଠାରେ ପାଦଦେବା ମାତ୍ରେ ଗର୍ଭବତୀ ହୋଇଯିବ ।"

ଏହା ଶୁଣିବାକ୍ଷଣି କୁମାରୀଗଣ ସେଠାରୁ ସେଦିନ ହାତ ଧରାଧରି ହୋଇ ପଳାଇଗଲେ । କୁମାରୀ କନ୍ୟାମାନଙ୍କ ପାଇଁ ସଂସାରରେ ଏହାଠାରୁ ବଳି ଲଜ୍ଜାଜନକ ବିଷୟ ଆଉ ନାହିଁ । ଯେ ସେ ଅବିବାହିତ ଅବସ୍ଥାରେ ଯଦି ଗର୍ଭବତୀ ହୁଅନ୍ତି, ଏହି କଥା ତାଙ୍କପାଇଁ ମରଣଠାରୁ ବଳି କଷ୍ଟକର । ସେଦିନଠାରୁ ଆଉ କେହି ହେଲେ ସେଠାକୁ ଯିବାକୁ ସାହସ କଲେ ନାହିଁ ।

ଯେଉଁଦିନ ଭଗବାନ ପୁଲସ୍ତ୍ୟ ଶାପ ଦେଇଥିଲେ, ସେଦିନ ଜଣେ ରାଜର୍ଷିଙ୍କ କନ୍ୟା ସେଠାରେ ଉପସ୍ଥିତ ନଥିଲା, ଯଦିଚ ଅନ୍ୟଦିନମାନଙ୍କରେ ବରାବର ସେ ସେହି ବଣକୁ ଆସୁଥିଲା । ତେଣୁ ଶାପ ଦେବା କଥା ତାକୁ ଆଦୌ ଜଣା ନଥିଲା । ଏଣୁ ସେ ପରଦିନ ସେ ସ୍ଥାନକୁ କ୍ରୀଡ଼ା କରିବା ପାଇଁ ଆସିଲା । ସେଠାକୁ ଯାଇ ସେ ଦେଖିଲା ଯେ, ସେଦିନ ସେଠାକୁ ତାର ଜଣେହେଲେ ସଖୀ ଆସି ନାହାନ୍ତି । ସେ ସାଙ୍ଗସାଥୀ-ମାନଙ୍କ କଥା ଚିନ୍ତା କରୁ କରୁ ତା ଅଙ୍ଗରେ ଗର୍ଭର ସମସ୍ତ ଲକ୍ଷଣ ଉତ୍ପନ୍ନ ହେଲା । ମୁନିଙ୍କ ବଚନ କ'ଣ କେବେ ଅନ୍ୟଥା ହୋଇପାରନ୍ତା ? ଯୁବତୀଟି ଏ ଘଟଣାରେ ଅତ୍ୟନ୍ତ ବ୍ୟତିବ୍ୟସ୍ତ ହୋଇପଡ଼ିଲା । ଲଜ୍ଜାବଶତଃ ତାର ମୁଖମଣ୍ଡଳ କଳା ପଡ଼ିଗଲା । ସେ ନିଜର ଅଙ୍ଗକୁ ଆବୃତ କରି ପିତାଙ୍କ ପାଖରେ ଯାଇ ପହଞ୍ଚିଲା । ପିତା ତାହାର ଏପରି ଅବସ୍ଥା ଦେଖି ନିଜର ଦିବ୍ୟଦୃଷ୍ଟି ବଳରେ ସମସ୍ତ ବିଷୟ ଅବଗତ ହେଲେ । ସେ କନ୍ୟାକୁ ସଙ୍ଗରେ ନେଇ ଭଗବାନ୍ ପୁଲସ୍ତ୍ୟଙ୍କ ଆଶ୍ରମକୁ ଗଲେ ଓ ଅତ୍ୟନ୍ତ ବିନମ୍ର ଭାବରେ କହିଲେ ବ୍ରହ୍ମନ୍ ! ଏ ହେଉଛି ମୋର କନ୍ୟା । ସେ ଅଜ୍ଞାନତା ବଶତଃ ଆପଣଙ୍କ ନିକଟରେ ଘୋର ଅପରାଧ କରିଛି ପ୍ରଭୋ ! ଆପଣ ତ ଦୟାର ସାଗର । ଏ ପାଗଳୀର ଅପରାଧ କ୍ଷମା କରନ୍ତୁ ଓ କୃପାକରି ଏହାକୁ ଆପଣାର କରି ନିଅନ୍ତୁ । ଏହାକୁ ଚିରଦିନ ପାଇଁ ଆପଣଙ୍କର ଦାସୀରୂପେ ଗ୍ରହଣ କରନ୍ତୁ ।"

ରାଜର୍ଷିଙ୍କର ଏ ପ୍ରକାର କଥା ଶ୍ରବଣ କରି ଭଗବାନ ପୁଲସ୍ତ୍ୟ କହିଲେ—"ହେ ତପୋଧନ ! ଆପଣଙ୍କ କନ୍ୟା ସୁଶୀଳା ଓ ସୁନ୍ଦରୀ ଏବଂ ସେ ସର୍ବଗୁଣ ସମ୍ପନ୍ନା । ସେ ଜାଣିଶୁଣି ଅପରାଧ କରିନାହିଁ । ମୁଁ ମଧ୍ୟ ଏହାକୁ ଲକ୍ଷ୍ୟକରି ଶାପ ଦେଇ ନଥିଲି । ଏହା ତ ସଂଯୋଗର କଥା ଥିଲା । ଭଗବାନଙ୍କର ଯାହା ଇଚ୍ଛା ଥିଲା ତାହା ଘଟିଗଲା ।

ଆଚ୍ଛା ଠିକ୍ ଅଛି, ଆପଣ ତାହାହେଲେ ତାକୁ ଏଠାରେ ଛାଡ଼ି ଚାଲିଯାଆନ୍ତୁ । ସେ ଏଠାରେ ଆଶ୍ରମରେ ରହି ମୋର ସେବା କାର୍ଯ୍ୟ କରିବ ।''

ମୁନିଙ୍କର ଆଜ୍ଞାପାଇ ସେହି ରାଜର୍ଷି ନିଜର ଅତି ଆଦରଣୀୟା କନ୍ୟାକୁ ଆଶ୍ରମରେ ଛାଡ଼ି ଫେରି ଆସିଲେ । ସେହି ବରାଙ୍ଗନା ସେଠାରେ ରହି ଅତିଶ୍ରଦ୍ଧା ସହକାରେ ଭଗବାନ ପୁଲସ୍ତ୍ୟଙ୍କର ସେବା କରିବାକୁ ଲାଗିଲା । କୌଣସି ବିରୁଦ୍ଧାଚରଣ କଲା ନାହିଁ । ଋଷି ଯେତେବେଳେ ବେଦପାଠ କରୁଥିଲେ, ସେତେବେଳେ ତା ଗର୍ଭସ୍ଥ ବାଳକ ଗର୍ଭରେ ରହିସବୁ ଶୁଣୁଥିଲା ଓ ସେଠାରେ ଶ୍ରୁତି ଶାସ୍ତ୍ରକୁ ମନେ ରଖି ନେଉଥିଲା । କିଛିଦିନ ପରେ ସେହି କନ୍ୟା ଗର୍ଭରୁ ଏକ ପୁତ୍ର ରତ୍ନ ଉତ୍ପନ୍ନ ହେଲା । ଗର୍ଭରେ ଥିବା ଅବସ୍ଥାରେ ସେହି ବାଳକ ସମସ୍ତ ବେଦମନ୍ତ୍ର ବିଶେଷ ରୂପେ ଶ୍ରବଣ କରି ମନେରଖି-ଥିବାରୁ ମୁନି ତାହାର ନାମ 'ବିଶ୍ରବା' ରଖିଲେ । ବିଶ୍ରବା ଅତ୍ୟନ୍ତ ସୁନ୍ଦର, ତପସ୍ୱୀ ଓ ତେଜସ୍ୱୀ ଥିଲେ । ସେ ବଡ଼ ହୋଇ ଯୁବାବସ୍ଥାରେ ପଦାର୍ପଣ କରିବାରୁ ରାଜର୍ଷି ତୃଣବିନ୍ଦୁ ନିଜର କନ୍ୟା ଇଡ଼ବିଡ଼ାଙ୍କୁ ବିବାହ କରିଦେଲେ । ତାଙ୍କଠାରୁ ଧନାଧ୍ୟକ୍ଷ କୁବେର ଜନ୍ମ ଲାଭ କଲେ । ସେ ଉତ୍ତର ଦିଗର ଲୋକପାଳ ଓ ସମସ୍ତ ଧନରତ୍ନର ଅଧିପତି ହେଲେ । ପିତାଙ୍କ ଆଦେଶରେ ସେ ଲଙ୍କାରେ ଅବସ୍ଥାନ କରୁଥିଲେ । ଦିନେ ସେ ସୁବର୍ଣ୍ଣ ନିର୍ମିତ ପୁଷ୍ପକ ବିମାନରେ ବସି ନିଜର ପିତା ବିଶ୍ରବାଙ୍କୁ ପ୍ରଣାମ କରିବାକୁ ଯାଉଥିବା ସମୟରେ ତାଙ୍କୁ ସୁମାଳି ନାମକ ରାକ୍ଷସ ଦେଖିଲା । ଏଭଳି ପରାକ୍ରମୀ ଦୌହିତ୍ରଙ୍କୁ ଦେଖିବା ପାଇଁ ସେ ମଧ୍ୟ ଇଚ୍ଛା ପୋଷଣ କରିଥିଲା । ଏଣୁ ସେ ନିଜର ଦୁହିତା କୈକସୀକୁ ଭଗବାନ ପୁଲସ୍ତ୍ୟଙ୍କ ପୁତ୍ର ବିଶ୍ରବାଙ୍କ ନିକଟକୁ ପଠାଇଲା । ତାହାର ଅଭିପ୍ରାୟ ବୁଝିପାରି ମୁନି ବିଶ୍ରବା ତାକୁ ବିବାହ କଲେ ଓ ତାହାଠାରୁ ରାବଣ, କୁମ୍ଭକର୍ଣ୍ଣ ଓ ବିଭୀଷଣ ଏହି ତିନିପୁତ୍ର ଜାତ ହୋଇଥିଲେ । ଏମାନେ ପୁଲସ୍ତ୍ୟ ଋଷିଙ୍କ କୁଳରେ ଜନ୍ମ ହୋଇଥିଲେ ମଧ୍ୟ ମାତୃବଂଶ କାରଣରୁ ରାକ୍ଷସ ହିଁ ହୋଇଥିଲେ । ଏମାନଙ୍କ ଚରିତ୍ର ଆଗକୁ ପ୍ରସଙ୍ଗ କ୍ରମେ ରାମ ଚରିତ ସହ ବର୍ଣ୍ଣନା କରାଯିବ ।

ତୃଣବିନ୍ଦୁଙ୍କର କନ୍ୟା ଇଡ଼ବିଡ଼ାର ବିବାହ ପୁଲସ୍ତ୍ୟ ପୁତ୍ର ବିଶ୍ରବାଙ୍କ ସହିତ ଏହି ପ୍ରକାର ସମ୍ପନ୍ନ ହୋଇଥିଲା । କାହାର କାହାର ମତ ଯେ, ତୃଣବିନ୍ଦୁଙ୍କ କନ୍ୟା ପୁଲସ୍ତ୍ୟଙ୍କୁ ବିବାହ କରିଥିଲେ ଓ ତାଙ୍କଠାରୁ ବିଶ୍ରବା ଋଷି ଜନ୍ମ ଗ୍ରହଣ କରିଥିଲେ । ପୁନଶ୍ଚ ବିଶ୍ରବାଙ୍କର ବିବାହ ଭରଦ୍ୱାଜ ମୁନିଙ୍କ କନ୍ୟାଙ୍କ ସହିତ ହୋଇଥିଲା ଏବଂ ତାଙ୍କ-ଠାରୁ କୁବେର ଜନ୍ମ ହୋଇଥିଲେ । କଳ୍ପଭେଦ କାରଣରୁ ଏପରି ମଧ୍ୟ ହୋଇଥାଏ । ଭାଗବତ କଥା ପ୍ରସଙ୍ଗରେ ରାଜର୍ଷି ତୃଣବିନ୍ଦୁଙ୍କ ସୁକନ୍ୟା ଇଡ଼ବିଡ଼ାର ବିବାହ ବିଶ୍ରବାଙ୍କ ସହିତ ହୋଇଥିବାର କୁହାଯାଇଛି ଏବଂ ତାଙ୍କ ଗର୍ଭରୁ ଧନାଧ୍ୟକ୍ଷ କୁବେରଙ୍କର ଜନ୍ମ ବୋଲି ମଧ୍ୟ କୁହାଯାଇଛି ।

ସୂତ କହିଲେ—"ମୁନିଗଣ ! ଆପଣମାନେ ପଚାରିବାରୁ ମୁଁ ପ୍ରସଙ୍ଗକ୍ରମେ ରାଜର୍ଷି ତୃଣବିନ୍ଦୁଙ୍କ କନ୍ୟା ଇଡ଼ବିଡ଼ାଙ୍କ ସମ୍ବନ୍ଧରେ ଏହିକଥା କହିଲି, ଏବେ ମୁଁ ଆପଣମାନଙ୍କୁ ତୃଣବିନ୍ଦୁଙ୍କ ବଂଶାନୁଚରିତ ବିସ୍ତାରିତ ଭାବରେ କହୁଅଛି ଶ୍ରବଣ କରନ୍ତୁ ।"

ରାଜର୍ଷି ତୃଣବିନ୍ଦୁଙ୍କର ବିଶାଳ, ଶୂନ୍ୟବନ୍ଧୁ ଓ ଧୂମକେତୁ ନାମକ ତିନିପୁତ୍ର ଥିଲେ । ଏମାନଙ୍କ ମଧ୍ୟରେ ବିଶାଳ ଥିଲେ ଜ୍ୟେଷ୍ଠପୁତ୍ର । ତେଣୁ ସେ ସମ୍ରାଟ ହୋଇଥିଲେ । ସେ ତାଙ୍କର ଯଶ ବିସ୍ତାର ପାଇଁ ବୈଶାଳୀ ନାମକ ନଗରୀ ବସାଇଥିଲେ । ଏହାର ଭଗ୍ନାବଶେଷ ଏବେ ଭୂଗର୍ଭରୁ ପ୍ରାଚୀନ ତତ୍ତ୍ୱବିତ୍‌ମାନେ ବାହାର କରୁଛନ୍ତି । ବିଶାଳଙ୍କର ପୁତ୍ରର ନାମ ହେମଚନ୍ଦ୍ର । ତାଙ୍କ ପୁତ୍ର ଧୂମ୍ରାକ୍ଷ । ଧୂମ୍ରାକ୍ଷଙ୍କ ପୁତ୍ର ସଂଯମ ଓ ସଂଯମଙ୍କର ଦୁଇ ପୁତ୍ରଙ୍କ ନାମ ହେଉଛି କୃଶାଶ୍ୱ ଓ ଦେବଜ । ଜ୍ୟେଷ୍ଠପୁତ୍ର କୃଶାଶ୍ୱଙ୍କର ପୁତ୍ରର ନାମ ସୋମଦତ୍ତ । ଏହି ସୋମଦତ୍ତ ଏକ ବିରାଟ ଅଶ୍ୱମେଧଯଜ୍ଞ କରିଥିଲେ ଓ ଯୋଗେଶ୍ୱରଙ୍କୁ ଉପାସନାକରି ଯୋଗବିଦ୍ୟା ଲାଭକରିଥିଲେ । ସୋମଦତ୍ତଙ୍କର ପୁତ୍ର ସୁମତି ଓ ସୁମତିଙ୍କର ପୁତ୍ର ହେଉଛନ୍ତି ଜନ୍ମେଜୟ (ଏ ଜନ୍ମେଜୟ ଦ୍ୱିତୀୟ ସୂର୍ଯ୍ୟବଂଶୀ ଅଟନ୍ତି) । ଏହିପରିଭାବରେ ରାଜର୍ଷି ତୃଣବିନ୍ଦୁଙ୍କ ବଂଶରେ ଆହୁରି ଅନେକ ରାଜା ହୋଇଥିଲେ । ଏ ସମସ୍ତଙ୍କର ନାମ ଏଠାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ତେଣୁ ମୁଖ୍ୟ ରାଜାଙ୍କ ନାମ ଏଥିରେ ଲୁହାଯାଇଛି । ସୂତ କହିଲେ— "ମୁନିଗଣ ! ମୁଁ ଅତି ସଂକ୍ଷେପରେ ଆପଣ ମାନଙ୍କୁ ମନୁପୁତ୍ର ମହାରାଜ ଦିଷ୍ଟଙ୍କ ବଂଶ ସମ୍ପର୍କରେ କହିଲି । ଏବେ ଆପଣମାନେ ଆଉ କଣ ଶୁଣିବାକୁ ଚାହୁଁଛନ୍ତି କୁହନ୍ତୁ ।"

ଏହାଶୁଣି ଶୌନକ କହିଲେ—"ହେ ସୂତ ! ଆମ୍ଭେମାନେ ଏତେ କଥା ଶୁଣୁଥିଲେ ମଧ୍ୟ କଥାର ମୂଳ ପ୍ରବାହକୁ ଭୁଲିଯାଇ ନାହୁଁ । ଆପଣ ଆମ୍ଭମାନଙ୍କୁ ବିବସ୍ୱାନଙ୍କପୁତ୍ର ଶ୍ରାଦ୍ଧଦେବ ବୈବସ୍ୱତ ମନୁଙ୍କ ବଂଶ ବିଷୟରେ କହୁଥିଲେ । ଆପଣ ବୈବସ୍ୱତ ମନୁଙ୍କ ଦଶପୁତ୍ର ଯଥା—ଇକ୍ଷ୍ୱାକୁ, ନୃଗ, ଶର୍ଯ୍ୟାତି, ଦିଷ୍ଟ, ଧୃଷ୍ଟ, କରୁଷ, ନରିଷ୍ୟନ୍ତ, ପୃଷଧ୍ର, ନଭଗ ଓ କବିଙ୍କ ବିଷୟ କହୁଥିଲେ । ସେଥିଁଥିରୁକ ସୂଚୀକଟାହ ନ୍ୟାୟରେ (ଛୁଞ୍ଚିକଣ୍ଢା ନ୍ୟାୟରେ) ଆପଣ ବଡ଼ ଇକ୍ଷ୍ୱାକୁ ବଂଶକୁ ଛାଡ଼ି ପୃଷଧ୍ର, କବି, ନରିଷ୍ୟନ୍ତ ଓ ଦିଷ୍ଟ ଏହି ଚାରିମନୁ ପୁତ୍ରଙ୍କ ସମ୍ବନ୍ଧରେ କେବଳ ସଂକ୍ଷେପରେ ବର୍ଣ୍ଣନା କରିଅଛନ୍ତି । ପୃଷଧ୍ର ଓ କବି ଅବିବାହିତ ରହି ମଧ୍ୟ ପରମପଦ ପ୍ରାପ୍ତ ହେଲେ । ନରିଷ୍ୟନ୍ତଙ୍କ ବଂଶଧର ଅଗ୍ରସର ହୋଇ ଅଗ୍ନି ବେଶ୍ୟାୟନ ଗୋତ୍ରୀୟ ବ୍ରାହ୍ମଣ ବୋଲାଇଲେ । ଦିଷ୍ଟଙ୍କ ବଂଶର ନାଭାଗ, ବତ୍ସପ୍ରୀତି, ଖନିନ, କ୍ଷୁପ, ବିବିଂଶତି, ଖନିନେତ୍ର, କରନ୍ଧମ, ଅବୀକ୍ଷିତ, ମରୁତ୍ତ' ଦମ ତଥା ତୃଣବିନ୍ଦୁ ଆଦି ମୁଖ୍ୟ ମୁଖ୍ୟ ରାଜର୍ଷିଗଣଙ୍କ ଚରିତ ଆପଣ ଆମ୍ଭମାନଙ୍କୁ କହିଲେ । ଏବେ ଆମ୍ଭେମାନେ ଶେଷ

ମନୁପୁତ୍ରଙ୍କ ବଂଶର ମୁଖ୍ୟ ମୁଖ୍ୟ ରାଜାମାନଙ୍କର ଚରିତ ଶୁଣିବାକୁ ଇଚ୍ଛା କରୁଛୁ । ଦୟା କରି ସେମାନଙ୍କ କଥା କୁହନ୍ତୁ ।"

ଏହାଶୁଣି ସୂତ ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ—"ମୁନିଗଣ ! ଆପଣ-ମାନଙ୍କର ସ୍ମରଣଶକ୍ତି ଦେଖିବ କଥା ଶୁଣାଇବା ପାଇଁ ମୋର ଉତ୍ସାହ ବୃଦ୍ଧିପାଉଛି । ମହାଭାଗ ! ମନୁଙ୍କର ଜ୍ୟେଷ୍ଠପୁତ୍ର ଇକ୍ଷ୍ୱାକୁଙ୍କ ବଂଶର ବର୍ଣ୍ଣନା ମୁଁ ସବାଶେଷକୁ କରିବି । ଏବେ ଆପଣମାନେ ଶେଷ ପାଞ୍ଚ ମନୁପୁତ୍ରଙ୍କ ବଂଶ ଚରିତ ଶ୍ରବଣ କରନ୍ତୁ । ମୋର ଗୁରୁଦେବ ଯେପରି ଭାବରେ ଦିଷ୍ଟଙ୍କ ବଂଶ ବର୍ଣ୍ଣନା କରିବାପରେ ମନୁପୁତ୍ର ଶର୍ଯ୍ୟାତିଙ୍କ ବଂଶ ବର୍ଣ୍ଣନା କରିଅଛନ୍ତି, ତାହା ଏବେ ମୁଁ ଆପଣ ମାନଙ୍କ ଆଗରେ ବର୍ଣ୍ଣନା କରିବି, ଶର୍ଯ୍ୟାତିଙ୍କ ବଂଶର ସୁପ୍ରସିଦ୍ଧ ଭଗବଦ୍‌ଭକ୍ତ ରାଜାମାନଙ୍କର ଭକ୍ତିବର୍ଦ୍ଧକ ଅଲୌକିକ ଚରିତ୍ର ଆପଣମାନେ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ସୁତ ବିଶାଲ ତୃଣବିନ୍ଦୁ ନୃପତି ବୈଶାଳି ବସାଇ ।
ହେମଚନ୍ଦ୍ର ସୁତ ତାସୁ ଭୟେ ଜଗ କୀରତି ଛାଇ ॥
ସୁତ ତନକେ ଧୂମ୍ରାକ୍ଷ ତାସୁ ସୁତ ସଂଯମ ଶ୍ରୀଯୁତ ।
ତନକେ ପୁତ୍ର କୃଶାଶ୍ୱ ସୋମଦତ୍ତହୁ ତନକେ ସୁତ ॥
ସୋମଦତ୍ତକେ ସୁମତି ସୁତ, ଜନମେଜୟ ତନକେ ଭୟେ ।
ଯଶବର୍ଦ୍ଧକ ତୃଣାବିନ୍ଦୁକେ, କୁଲମହଁ ଧେ ନୃପ ହ୍ୱୈ ଗୟେ ॥



# ଶର୍ଯ୍ୟାତି ସୁତା ସୁକନ୍ୟା ଚରିତ

ଶର୍ଯ୍ୟାତିର୍ମାନବୋ ରାଜା ବ୍ରହ୍ମିଷ୍ଠଃ ନ ବଭୂବ ହ ।
ଯୋ ବା ଅଙ୍ଗିରସାଂ ସତ୍ରେ ଦ୍ୱିତୀୟମହ ଉଚିବାନ୍ ।।
ସୁକନ୍ୟା ନାମ ତସ୍ୟାସୀତ୍ କନ୍ୟା କମଲଲୋଚନା ।
ତୟା ସାର୍ଦ୍ଧଂ ବନଗତୋ ହ୍ୟଗମଚ୍ଚ୍ୟବନାଶ୍ରମମ୍ ।।

(ଶ୍ରୀ:ଭା: ୯ମ ସ୍କନ୍ଦ ୩ୟ: ଅ: ୧—୨ ଶ୍ଳୋକ)

## ଛପ୍ପୟ

ମନୁସୁତ ନୃପ ଶର୍ଯ୍ୟାତି ବେଦ ଶାସ୍ତ୍ରନକେ ଜ୍ଞାତା ।
ତିନକୀ କନ୍ୟା ଭଈ ସୁକନ୍ୟା ଜଗ ବିଖ୍ୟାତା ।।
ଇକ ଦିନ କନ୍ୟା ସହିତ ଗୟେ ନୃପ ଘୂମନ ବନମହଁ ।
କନ୍ୟା ସଖିୟନ ସଂଗ ଫିରୈ ବନ ପ୍ରମୁଦିତ ମନମହଁ ।।
ଚ୍ୟବନାଶ୍ରମ କେ ନିକଟ ଇକ, ଦୀମକକୋ ଟିଲେ ନିରଖି ।
ଚକିତ ଭଈ ଜୁଗନୂ ସରସ, ଦ୍ୱୈ ଚମକୀଲୀ ବସ୍ତୁ ଲଖି ।।

ଚଞ୍ଚଳତା ଦୋଷରୁ ସର୍ବଦା ଅନର୍ଥର ସୃଷ୍ଟି ହୋଇଥାଏ । ଚଞ୍ଚଳତା ତ ମନୁଷ୍ୟର ପ୍ରତ୍ୟେକ ଅବସ୍ଥାରେ ସ୍ୱାଭାବିକ ଭାବରେ ରହିଥାଏ, କିନ୍ତୁ ଯୁବାବସ୍ଥା ହେଉଛି ଚଞ୍ଚଳତାର ବାସସ୍ଥଳ । ପ୍ରାୟ ପ୍ରତ୍ୟେକ ଯୁବକ ଯୁବତୀଙ୍କ ମନରେ ଯୁବାବସ୍ଥାରେ ଅତ୍ୟଧିକ ଚଞ୍ଚଳତା ଆସିଯାଏ । ନୂତନ ନୂତନ ବସ୍ତୁ ସମ୍ବନ୍ଧରେ ଜାଣିବା ପାଇଁ କୌତୂହଳ ଜାତ ହୁଏ । ଖେଳିବା, ବୁଲିବା, ବସିବା, ଉଠିବା, କହିବା ତଥା ପ୍ରତ୍ୟେକ କାର୍ଯ୍ୟରେ ଚଞ୍ଚଳତା ସାମ୍ରାଜ୍ୟ ବିସ୍ତାର କରିଥାଏ । ଯେଉଁ ଯୁବକଙ୍କ ଜୀବନରେ ଚଞ୍ଚଳତା ନ ଥାଏ, ସେମାନେ ଅଲୌକିକ ଶକ୍ତିସମ୍ପନ୍ନ ହୋଇପାରନ୍ତି କିମ୍ବା [illegible] [illegible] ହୋଇପାରନ୍ତି । ସମୟ ସମୟରେ ଯୁବାବସ୍ଥାରେ ଚଞ୍ଚଳତା କାରଣରୁ ବଡ଼ ଅନର୍ଥ ସବୁ ସୃଷ୍ଟି ହୋଇଥାଏ । ଏଥିପାଇଁ ବୃଦ୍ଧଜନମାନେ ଯୁବକମାନଙ୍କ ପ୍ରତି

ବଡ଼ ସଚେତନ ରହନ୍ତି ଓ ସେମାନଙ୍କର ଗତିବିଧିକୁ ଶଙ୍କା ଓ ଭୟର ସହିତ ବଡ଼ ସାବଧାନତା ସହକାରେ ଲକ୍ଷ୍ୟ କରନ୍ତି ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ଏବେ ମୁଁ ଆପଣଙ୍କୁ ମନୁପୁତ୍ର ଶର୍ଯାତିଙ୍କ ବଂଶ କଥା କହୁଛି । ମହାରାଜ ଶର୍ଯାତି କ୍ଷତ୍ରିୟ ହୋଇ ମଧ୍ୟ କର୍ମକାଣ୍ଡରେ ତାଙ୍କର ଅତ୍ୟନ୍ତ ଆଦର ଥିଲା । ସେ ବେଦତତ୍ତ୍ୱ ଜାଣିବାରେ ସେତେବେଳେ ଅଦ୍ୱିତୀୟ ଥିଲେ । ବୈଦିକ କ୍ରିୟା କଳାପରେ ସେ ପାରଙ୍ଗମ ଥିଲେ । ପ୍ରାଚୀନ କାଳରେ ଯଜ୍ଞର ପ୍ରସାର ଥିଲା । ଏହା ଏକ ମହତ୍ତ୍ୱକାର୍ଯ୍ୟ ଓ ଗୌରବର ପ୍ରତୀକ ଥିଲା । ଯେ ଯେତେ ଅଧିକ ବୃହତ୍ତ୍ ତଥା ଜାକ ଜମକରେ ଯଜ୍ଞ କରୁଥିଲେ ସେ ସେତେ ବଡ଼ ବୋଲି ବିଖ୍ୟାତ ହେଉଥିଲା । ରାଜସୂୟ, ଅଶ୍ୱମେଧ ଆଦି ଯଜ୍ଞ ସମସ୍ତେ କରିପାରୁ ନ ଥିଲେ, ଯେ ଅଶ୍ୱମେଧ ଯଜ୍ଞ କରିପାରୁ ଥିଲା, ତାକୁ 'ହୟମେଧରାଟ' ଉପାଧିରେ ଭୂଷିତ କରାଯାଉଥିଲା । ଯେ ଏକଶହ ଅଶ୍ୱମେଧ ଯଜ୍ଞ କରୁଥିଲେ ସେ ଦେବଗଣଙ୍କ ରାଜା ଇନ୍ଦ୍ର ହେବାର ଅଧିକାରୀ ହୋଇପାରୁଥିଲେ । ଏହି ଯଜ୍ଞବିଧି ପ୍ରତ୍ୟେକଙ୍କୁ କଣ୍ଠସ୍ଥ କରିବାକୁ ପଡ଼ୁଥିଲା । ସେ କାଳର ପୁସ୍ତକର ପ୍ରଚୁର ନ ଥିଲା । ସମସ୍ତ ମନ୍ତ୍ର ଓ ମନ୍ତ୍ର ଜପର ବିଧି କେଉଁ ମନ୍ତ୍ର କେଉଁକାର୍ଯ୍ୟ ପାଇଁ ଉଦ୍ଦିଷ୍ଟ ଏ ସବୁ ବିଧି ପୂର୍ବକ ସ୍ମରଣ ରଖିବାକୁ ପଡ଼ୁଥିଲା । ଯେଉଁ କ୍ଷେତ୍ରରେ ଏ ବିଧିରେ ଟିକିଏ ବ୍ୟତିକ୍ରମ ହେଉଥିଲା, ସେ କ୍ଷେତ୍ରରେ ଯଜ୍ଞ ବିଫଳ ହେଉଥିଲା । ଯଜ୍ଞର ସମସ୍ତ ପରିଣାମ ଯଜ୍ଞ ବିଧି ଉପରେ ହିଁ ନିର୍ଭର କରା ଯାଉଥିଲା । ଏଣୁ ବିଧି ସମ୍ବନ୍ଧରେ ବଡ଼ ବଡ଼ ବେଦଜ୍ଞ ମଧ୍ୟ ଭ୍ରମରେ ପଡ଼ି ଯାଉଥିଲେ ।

ଥରେ ଅଙ୍ଗୀରା ଗୋତ୍ରୀୟ ଅନେକ ମୁନି ଏକତ୍ରିତ ହୋଇ ସ୍ୱର୍ଗ କାମନାରେ ଯଜ୍ଞ କରୁଥିଲେ । ସେମାନେ ପ୍ରଥମ ଦିନର କୃତ୍ୟ ବିଧି ପୂର୍ବକ ସମ୍ପନ୍ନ କରିଥିଲେ, କିନ୍ତୁ ଦ୍ୱିତୀୟ ଦିନର କାର୍ଯ୍ୟକ୍ରମରେ ବିମୋହିତ ହୋଇଗଲେ । ସେ ସମୟରେ ମହାରାଜ ଶର୍ଯାତି ଦ୍ୱିତୀୟ ଦିବସର କୃତ୍ୟ ଯଥୋଚିତ ବତାଇ ଦେଲେ । ଏଥିରେ ତାଙ୍କର ଖ୍ୟାତି ବଢ଼ିଗଲା । ବେଦଜ୍ଞ ବ୍ରାହ୍ମଣମାନେ ମଧ୍ୟ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବାକୁ ଲାଗିଲେ । ସେହି ଦିନଠାରୁ ତାହାଙ୍କୁ 'ବ୍ରହ୍ମନିଷ୍ଠ' କୁହାଗଲା । ଏହାଙ୍କର ଉତ୍ତାନ ବର୍ହି, ଆନର୍ତ୍ତ ଓ ଭୂରିଷେଣ ନାମକ ତିନିପୁତ୍ର ଓ ସୁକନ୍ୟା ନାମକ ଏକ କନ୍ୟା ଥିଲେ । ପ୍ରଥମେ ମୁଁ ସୁକନ୍ୟାଙ୍କ ଚରିତ ବର୍ଣ୍ଣନା କରୁଛି ।

ଦିନେ ମହାରାଜା ଶର୍ଯାତିନୃପତିର ରାଣୀମାନଙ୍କୁ, ସୈନ୍ୟ ସାମନ୍ତ ଓ ମନ୍ତ୍ରୀ ମାନଙ୍କୁ ସଙ୍ଗରେ ନେଇ ବନବିହାର କରିବାକୁ ନର୍ମଦା ନଦୀ ତଟସ୍ଥ ବୈଦୁର୍ଯ୍ୟ ପର୍ବତ ପ୍ରାନ୍ତକୁ ଯାଇଥିଲେ । ତାଙ୍କ ସହିତ ତାଙ୍କର ଆଦରର କନ୍ୟା ସୁକନ୍ୟା ମଧ୍ୟ ଥିଲେ । ସେହି ବନ ମଧ୍ୟରେ ମହର୍ଷି ଭୃଗୁଙ୍କ ପୁତ୍ର ଚ୍ୟବନ ମୁନି ଘୋର ତପସ୍ୟା କରୁଥିଲେ । ଏଥିପାଇଁ ସେହି ବନ ତାଙ୍କ ନାମରେ ବିଖ୍ୟାତ ହୋଇଥିଲା । ସେଠାରେ ଏକ

ସରୋବର ନିକଟରେ ଥିବା ବୃକ୍ଷଲତା ଗୁଡ଼ିକ ନାନା ବର୍ଣ୍ଣରେ ଶୋଭା ପାଉଥିଲେ ଓ ସେଥିରେ ନାନା ରଙ୍ଗରଫୁଲ ଓ ବିଭିନ୍ନ ପ୍ରକାରର ଫଳ ଭରି ରହିଥିଲା । ସ୍ଥାନେ ସ୍ଥାନେ ଲତାଗୁଳ୍ମକ ସଘନ କୁଞ୍ଜରେ ପରିଣତ ହୋଇଥିଲା । ପକ୍ଷୀଗଣଙ୍କର କଳରବରେ ବନଭୂମି ମୁଖରିତ ହେଉଥିଲା । ସରୋବର ମଧ୍ୟରେ ପଦ୍ମଫୁଲ ବିକଶିତ ହୋଇ ବନ ଭୂମିରେ ଶୋଭାବର୍ଦ୍ଧନ କରୁଥିଲା । ଜଳ କୁକୁଟ, ରାଜହଂସ, ସାରସ ଓ ବକ ଆଦି ଜଳଚର ପକ୍ଷୀଗଣ ଇତଃସ୍ତତ ସନ୍ତରଣ ଓ ବିହାର କରୁଥିଲେ । ସେହି ସରୋବର ଠାରୁ କିଛି ଦୂରରେ ଥିବା ଉଚ୍ଚସ୍ଥାନରେ ଏକ କଙ୍କାଳିଆ ବୃକ୍ଷ ମୂଳରେ ଏକ ହଜାର ବର୍ଷ ହେବ ଆହାର ନ କରି ଭୃଗୁପୁତ୍ର ଭଗବାନ ଚ୍ୟବନ ତପସ୍ୟା କରୁଥିଲେ । ତପସ୍ୟା କରୁ କରୁ ଉଇମାନେ ତାଙ୍କ ଶରୀର ଉପରେ ହୁଙ୍କା ପ୍ରସ୍ତୁତ କରି ନେଇଥିଲେ । ତାଙ୍କର ଆପାଦ ମସ୍ତକ ହୁଙ୍କା ମାଟିରେ ଆଚ୍ଛାଦିତ ହୋଇଥିଲା । ହୁଙ୍କାରେ ଅନେକ ଛିଦ୍ରଥିଲା । ସେହିବାଟେ ଉଇମାନେ ଭିତରକୁ ଯିବା ଆସିବା କରୁଥିଲେ । ତାଙ୍କ ସମ୍ମୁଖରେ ଥିବା ଛୋଟ ଛୋଟ ଗଛରେ ଲତାଗୁଚ୍ଛ ଲଟାଇଥିଲେ । ମୁନିଙ୍କର ସର୍ବାଙ୍ଗ ସହିତେତ ଉଇ ହୁଙ୍କାରେ ଘୋଡ଼ାଇ ହୋଇ ରହିଥିଲା । କିନ୍ତୁ ତାଙ୍କ ନେତ୍ର ଘୋଡ଼ାଇ ହୋଇ ନ ଥିଲା । ଭୂଲତା ତଥା ଆଖି ପତାର ବାଳକୁ ଉଇମାନେ ଚଢ଼ିଯାଇଥିଲେ । ନିରେଖି କରି ଦେଖିଲେ କେବଳ ଉଜ୍ଜ୍ୱଳ ନେତ୍ର ପଲକ ହିଁ ଦେଖାଯାଉଥିଲା । ଘୋର ଅରଣ୍ୟ ମଧ୍ୟ ନିରୋଳା ସ୍ଥାନଟି ତପସ୍ୟା ପ୍ରଭାବରୁ ଅତ୍ୟନ୍ତ ଶାନ୍ତ ପ୍ରତୀତ ହେଉଥିଲା ।

ମହାରାଜ ଶର୍ଯ୍ୟାତି ସେହି ବନରେ ନିଜର ଡେରା ପକାଇଲେ ଓ ରାଣୀ ମାନଙ୍କ ସହିତ ବିହାର କରିବାକୁ ଲାଗିଲେ । ସେ ବନ ମଧ୍ୟରୁ ନାନା ପ୍ରକାର ଜୀବଙ୍କୁ ଶୀକାର କରିବାକୁ ଲାଗିଲେ । ସୈନ୍ୟମାନେ ମତ୍ତହୋଇ ଏଣେତେଣେ ବୁଲି ମୃଗୟା କରିବାକୁ ଲାଗିଲେ ।

ସୁକନ୍ୟା ମଧ୍ୟ ନିଜର ସଖୀ ସହଚରୀ ମାନଙ୍କ ମେଳରେ ଜଙ୍ଗଲୀ ଯୁବତୀ ହରିଣୀ ଭଳି ବନରେ ସ୍ୱଚ୍ଛନ୍ଦରେ ବିଚରଣ କରିବାକୁ ଲାଗିଲେ । ସର୍ବଦା ଅନ୍ତଃପୁରରେ ରହୁଥିବା ରାଜକନ୍ୟା ଯେତେବେଳେ ସୁବିସ୍ତୃତ ମୁକ୍ତ ଆକାଶକୁ ଚତୁର୍ଦ୍ଦିଗରେ ଅବଲୋକନ କଲେ ଓ ଏତେ ସୁନ୍ଦର, ବିଶାଳ ଘଞ୍ଚ ଅରଣ୍ୟକୁ ଦେଖିଲେ, ସେତେବେଳେ ତାଙ୍କ ମନମୟୂରୀ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲା । ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । କୌଣସି ସଙ୍କୀର୍ଣ୍ଣ ଗାଡ଼ିଆରୁ ଯଦି ମୀନକୁ ନେଇ ଅଗାଧ ସାଗରରେ ପକାଇ ଦିଆଯାଏ, ସେଥିରେ ଖେଳ କରିବାରେ ମୀନ ଯେଉଁ ସୁଖ ପାଏ, ରାଜକୁମାରୀ ସେହିପରି ସୁଖ ସେହି ବିଶାଳ ବନରେ ହିଁ ଉପଭୋଗ କଲେ । ସେ ଉତ୍ସାହର ସହିତ ପ୍ରତ୍ୟେକ ବୃକ୍ଷକୁ ନିରୀକ୍ଷଣ କଲେ, ନିଜର ସଖୀ ସହଚରୀ ମାନଙ୍କୁ ସେହି ବୃକ୍ଷ ସମ୍ବନ୍ଧରେ ବିଭିନ୍ନ ପ୍ରଶ୍ନ ପଚାରିଲେ । ଯେଉଁ ସବୁ ସୁନ୍ଦର ଫୁଲ ତାଙ୍କ ଆଖିରେ ପଡ଼ୁଥିଲା, ତାହା ନିଜ ହାତରେ

ତୋଳି ଆଣିବାକୁ ଧାଉଁଥିଲେ । ରାଜ ମହଲରେ ତ ସେ ସଙ୍କୀର୍ଣ୍ଣ ପରିବେଶ ମଧ୍ୟରେ ରହୁଥିଲେ, କିନ୍ତୁ ଏଠାରେ ଶୂନ୍ୟ ଅରଣ୍ୟ ମଧ୍ୟରୁ ସଙ୍କୀର୍ଣ୍ଣତା ଆସନ୍ତା ବା କେଉଁଠୁ ? ସେ ରେଶମୀ ବସ୍ତ୍ର ପରିଧାନ କରିଥାଆନ୍ତି, ସୁବର୍ଣ୍ଣ ଓ ବହୁମୂଲ୍ୟ ମଣି, ରତ୍ନ ଆଭୂଷଣରେ ତାଙ୍କର ଅଙ୍ଗ ସୁଶୋଭିତ ହୋଇଥାଏ । ସ୍ୱଚ୍ଛନ୍ଦତା କାରଣରୁ ତାଙ୍କର ଶିରର ବସ୍ତ୍ର ଖସି ପଡ଼ୁଥାଏ । କାଳୀ ନାଗୁଣୀ ସଦୃଶ ତାଙ୍କର ଆକଟିଲମ୍ବିତ ବେଣୀ ଦୌଡ଼ିବା ସମୟରେ ପୃଷ୍ଠଦେଶରେ ଦୋହଲୁଥାଏ । ସେ ମୁକ୍ତ ବିହଙ୍ଗ ଭଳି ଇତଃସ୍ତତ ଫୁର୍ତ୍ତି କରୁଥାଆନ୍ତି । ଏ ବୃକ୍ଷରୁ ଫୁଲ, ସେ ବୃକ୍ଷରୁ ଫଳ, ତୋଳି ସେ ଆନନ୍ଦିତ ହେଉଥାଆନ୍ତି । ସଖୀମାନଙ୍କ ଗହଣରେ ସେ ରାଣୀ ମହୁମାଛି ଭଳି ଦେଖା ଯାଉଥାଆନ୍ତି । ପରମ ସୁନ୍ଦରୀ ଓ ସୁକୁମାରୀ ସେହି ଯୁବତୀ ରାଜକନ୍ୟା ଯୌବନ ମଦରେ ମତୁଆଲି ହୋଇ ସମସ୍ତଙ୍କ ନଜର ଖୁସୀ ଖବର କହି ହସାଉଥିଲେ, ନାନା ପ୍ରକାର ଭାବଭଙ୍ଗୀ ପ୍ରଦର୍ଶନ କରୁଥିଲେ, ରମଣୀୟ ପୁଷ୍ପସୁଶୋଭିତ ଶାଖାମାନଙ୍କୁ ଓହଳାଇ ଆଣୁଥିଲେ ଓ ସେହି ରମଣୀୟ ପ୍ରଦେଶରେ ଏଣେତେଣେ ଭ୍ରମଣ କରୁଥିଲେ । ସଖୀମାନଙ୍କ ସଙ୍ଗରେ ସେ ଏପରି ଦେଖାଯାଉଥିଲେ, ସତେ ଯେପରି ବନର ଅଧିଷ୍ଠାତ୍ରୀ ଦେବୀ ନିଜ ଗଣଙ୍କ ସହିତ ପ୍ରତ୍ୟକ୍ଷ ବିଚରଣ କରୁଅଛନ୍ତି । ହଠାତ୍ ତାଙ୍କର ଏକ କୌତୁହଳ ଜାତ ହେଲା । ସେ ନିଜ ସଖୀ ମାନଙ୍କ ମଧ୍ୟରୁ ମୁଖ୍ୟ ମୁଖ୍ୟ ସଖୀଙ୍କୁ ସମ୍ବୋଧନ କରି କହିଲେ—"ଲଳିତେ ! ତୁମେ କେତେକ ସଖୀଙ୍କୁ ସଙ୍ଗରେ ନେଇ ପୂର୍ବ ଦିଗକୁ ଯାଅ । କମଳେ ! ତୁମେ ପଶ୍ଚିମକୁ ଯାଅ । ସୁଭଦ୍ରେ ! ତୁମେ ଉତ୍ତର ଦିଗକୁ ଯାଅ । ସୌଦାମିନୀ ! ତୁମେ ଦକ୍ଷିଣ ଦିଗକୁ ଯାଇ ବହୁତ ଫୁଲ ତୋଳି ଆଣ । ମୁଁ ସମ୍ମୁଖରେ ଥିବା ଏହି ପାହାଡ଼ ଉପରକୁ ଏକା ଯାଉଛି । ତୁମେ ସବୁ ଏହି ବଟବୃକ୍ଷ ମୂଳରେ ଆସି ଏକତ୍ରିତ ହେବ । ଦେଖିବା କିଏ କେତେ ପ୍ରକାରର ଫୁଲ ଆଣୁଛ ।"

ସୁକନ୍ୟା ରାଜକୁମାରୀ ହୋଇଥିବାରୁ ତାଙ୍କ ଆଦେଶ ଲଙ୍ଘନ କରିବାକୁ କାହାରି ସାମର୍ଥ୍ୟ ନ ଥିଲା । ଏ ଅରଣ୍ୟ ପ୍ରଦେଶରେ ଭୟର କୌଣସି କାରଣ ନଥିଲା । ଅରଣ୍ୟରେ ମୁନିଙ୍କ ଆଶ୍ରମ ପୁନଶ୍ଚ ଚତୁର୍ଦ୍ଦିଗରେ ସୈନ୍ୟମାନେ ପହରା, ତେଣୁ ଏମାନେ ଭୟ କାହିଁକି ବା କରନ୍ତେ ? ପ୍ରତ୍ୟେକ ନିଜ ନିଜର ନିର୍ଦ୍ଦିଷ୍ଟ ଦିଗକୁ ଯାତ୍ରା କଲେ । ସୁକନ୍ୟା ଆନନ୍ଦରେ ନାଚକୁଦ ପାହାଡ଼ ଉପରକୁ ଆରୋହଣ କଲେ ଓ ସେଠାରେ ଥାଇ ବନର ଶୋଭା ଦେଖିବାକୁ ଲାଗିଲେ । ବନର ଶୋଭା ଅତ୍ୟନ୍ତ ମନୋମୁଗ୍ଧକର ଥିଲା, ଏପରି ପ୍ରତୀତ ହେଉଥିଲା ସତେ ଯେପରି ବୃକ୍ଷଗୁଡ଼ିକୁ କେହି ପଙ୍କ୍ତିବଦ୍ଧ ଭାବେ ରୋପଣ କରି ଅଛନ୍ତି । ସୁକନ୍ୟା ଇତସ୍ତତଃ ବୁଲି ବନର ଶୋଭା ନିରୀକ୍ଷଣ କରୁ କରୁ ଏକ ଉଇ ହୁଙ୍କା ଉପରେ ତାଙ୍କର ଆଖି ପଡ଼ିଲା । ଏହା ମନୁଷ୍ୟାକାର ଏକ କ୍ଷୁଦ୍ର ପାହାଡ଼ ଭଳି ଦେଖା ଯାଉଥିଲା । ତାହା ଉପରେ ଘାସ ଉଠିଥିଲା, ଗ୍ରେଟ ଗ୍ରେଟ ଲତା ଉଠି ଗଛ ଡାଳରେ ଲଟାଇ ଥିଲା । କୌତୁହଳ ବଶତଃ କନ୍ୟା ସେହି ଉଇ ହୁଙ୍କାକୁ

ନିରୀକ୍ଷଣ କରିବାକୁ ଲାଗିଲେ । ଭିତରେ ଜୁଳୁଜୁଳିଆ ପୋକ ଭଳି ଦୁଇଟି ଉଜ୍ଜ୍ୱଳ ବସ୍ତୁ କାଜ୍ଜ୍ୱଲ୍ୟମାନ ହେଉଥିବାର ସେ ଦେଖି ପାରିଲେ । ଭିତରୁ ଏହି ଗୋଲାକାର ଉଜ୍ଜ୍ୱଳ ବସ୍ତୁ ଦେଖା ଯାଉଥିବା ଛିଦ୍ରକୁ ସେ ମନଧ୍ୟାନ ଦେଇ ନିରୀକ୍ଷଣ କରିବାକୁ ଲାଗିଲେ ।

ପ୍ରାରବ୍ଧ କାରଣରୁ ସେହି ସମୟରେ ମୁନିଙ୍କର ଧ୍ୟାନ ଭାଙ୍ଗିଗଲା । ନିର୍ଜନ ଅରଣ୍ୟ ମଧ୍ୟରେ ମୂଲ୍ୟବାନ୍ ଶାଢ଼ୀ ଓ ଅଳଙ୍କାରରେ ସୁସଜ୍ଜିତ ପରମ ସୁନ୍ଦରୀ ସେହି ରାଜକୁମାରୀ ତାଙ୍କ ଆଡ଼କୁ ଏକ ଲୟରେ ଚାହିଁଥିବାରୁ ସେ ତାଙ୍କୁ ଅନୁରାଗ ଭରା ଦୃଷ୍ଟିରେ ଦେଖିଲେ । ହେ ରାଜନ୍ ! ଜନ ସମୂହ ମଧ୍ୟରେ ଦୃଷ୍ଟି ପଡ଼ିବାରେ ତ କୌଣସି କଥା ନାହିଁ, ଏକାନ୍ତରେ ପୁନଶ୍ଚ ବିଜନ ବନ ମଧ୍ୟରେ ଏକାକିନୀ ଯୁବତୀକୁ ଦେଖିଲେ ପ୍ରତ୍ୟେକଙ୍କର ଚିତ୍ତ ଚଞ୍ଚଳ ହୋଇ ଉଠେ । ସହସ୍ର ବର୍ଷ ଧରି ଯେଉଁ ମୁନି ନିରାହାର ରହି ସମାଧିରେ ବସି ଘୋର ତପସ୍ୟା କରୁଥିଲେ, ଯାହାଙ୍କର ଶରୀର ପ୍ରତି ବିସ୍ମୃତି ନଥିଲା, ଆଜି ପ୍ରାରବ୍ଧ ବଶତଃ ତାଙ୍କର ମନ ତାଙ୍କ ସହିତ ବିଶ୍ୱାସଘାତକତା କରିବାକୁ ପଶ୍ଚାତ୍ପଦ ହେଲା ନାହିଁ । ଏହି ଦୁଷ୍ଟ ମନ ମନୁଷ୍ୟକୁ ଯେ କେଉଁଠି ନେଇ ବୁଡ଼ାଇ ଦିଏ, ତାହାର ଠିକଣା ନଥାଏ । ସେହି କନ୍ୟାକୁ ଲାଭ କରିବା ପାଇଁ ମୁନିଙ୍କର ଚିତ୍ତ ବ୍ୟାକୁଳ ହେଲା । ଶରୀର କ୍ଷୀଣ ହୋଇଗଲା । ରକ୍ତ, ମାଂସ ଓ ଚର୍ମକୁ ଉଇମାନେ ଚରିଗଲେ କିନ୍ତୁ ମନ ତାର ସ୍ୱଭାବ ଛାଡ଼ିଲା ନାହିଁ । ସେ ଅସମୟରେ ଆସି ତପସ୍ୱୀଙ୍କ ସହିତ ବିଶ୍ୱାସଘାତକତା କଲା । ମୁନି କିଛି କହିବାକୁ ଇଚ୍ଛା କରୁଥିଲେ ମଧ୍ୟ ତାଙ୍କର ଶରୀର ହୁଙ୍କାରେ ପରିଣତ ହୋଇଥିବାରୁ କିଛି କହିପାରିଲେ ନାହିଁ ।

ଏଣେ ରାଜକୁମାରୀ ସୁକନ୍ୟାଙ୍କର କୌତୁହଳର ସୀମା ଅତିକ୍ରମ କରିଯାଇ-ଥିଲା । ତାଙ୍କର ଅତିଶୟ ଉତ୍କଣ୍ଠା ଜାତ ହେଲା ଯେ ସେହି ଉଜ୍ଜ୍ୱଳ ବସ୍ତୁ ଦୁଇଟି କଣ ତାହା ସେ ନିର୍ଣ୍ଣୟ କରିବେ । ତାଙ୍କ ସମ୍ମୁଖରେ ଏକ ବବ୍ରୁର ବୃକ୍ଷ (ଅତି ନରମ କାଠ ବିଶିଷ୍ଟ କଣ୍ଟା ଗଛ) ଥିଲା । ସେ ବୃକ୍ଷରୁ ସେ ବଡ଼ ବଡ଼ ମୋଟା ମୋଟା କଣ୍ଟା ଭାଙ୍ଗିଆଣି ଯୁବାବସ୍ଥାର ଚଞ୍ଚଳତା ବଶତଃ ସେହି ଦୁଇଟି ଉଜ୍ଜ୍ୱଳ ବସ୍ତୁରେ ଦୁଇଟି କଣ୍ଟା ସଙ୍ଗେ ସଙ୍ଗେ ଫୋଡ଼ିଦେଲେ ଓ ପୁନଶ୍ଚ ତାହାକୁ ଖୋଲାଖୋଲି କରିବାକୁ ଲାଗିଲେ । ଏହାଦ୍ୱାରା ଭିତରୁ ଟୋପା ଟୋପା ରକ୍ତ ଝରିବାକୁ ଲାଗିଲା । ରକ୍ତକୁ ଦେଖି ରାଜକୁମାରୀ ଅତ୍ୟନ୍ତ ଭୟଭୀତ ହୋଇ ସଙ୍ଗେ ସଙ୍ଗେ ସେ ସେହି ସ୍ଥାନ ଛାଡ଼ି ପଳାଇ ଆସିଲେ । ଅତ୍ୟନ୍ତ ବ୍ୟଗ୍ରତା ସହକାରେ ସେ ଧଇଁ ସଇଁ ହୋଇ ସେହି ବଟବୃକ୍ଷ ମୂଳରେ ଆସି ପହଞ୍ଚିଲେ । ସେତେବେଳ ପର୍ଯ୍ୟନ୍ତ ଅନ୍ୟ କୌଣସି ସଖୀ ସେଠାକୁ ଫେରି ନ ଥାନ୍ତି । ସେ ଡାକିବା କ୍ଷଣି ସମସ୍ତେ ସେଠାରେ ଆସି ପହଞ୍ଚିଗଲେ । ସମସ୍ତଙ୍କୁ ସଙ୍ଗରେ ନେଇ ସେ ସିଧାସଳଖ ନିଜ ଡେରାକୁ ଫେରି ଆସିଲେ । ଏହି ଘଟଣା ସମ୍ବନ୍ଧରେ ସେ କାହାରିକୁ ହେଲେ କିଛି କହିଲେ ନାହିଁ । ସେ ଜାଣି ପାରୁ ନ ଥିଲେ ଯେ ତାଙ୍କୁ

କାହିଁକି ଆଜି ଏତେ ଭୟ ଗ୍ରାସ କରିଛି । ରକ୍ତ ପ୍ରବାହକୁ ଦେଖି ତାଙ୍କ ବୁଦ୍ଧି ଥରୁଥାଏ, ସେ ଏକ ଭାରି ବିପଦ ଆଶଙ୍କା କରୁଥାଆନ୍ତି । କୌଣସି ପ୍ରକାରେ ସେ ନିଜ ଡେରାରେ ଆସି ପହଞ୍ଚିଗଲେ । ସେତେବେଳେ ତାଙ୍କ ଚିତ୍ତ ଅତ୍ୟନ୍ତ ଚଞ୍ଚଳ ଥିଲା । ଡେରାରେ ପହଞ୍ଚିବା କ୍ଷଣି ସେ ପଲଙ୍କ ଉପରେ ଶୋଇ ପଡ଼ିଲେ ।

ଏଣେ ରାଜାଙ୍କର ସେନାମାନଙ୍କ ମଧ୍ୟରେ ଏକ ବିଚିତ୍ର ଘଟଣା ଘଟିଲା । ରାଜାଙ୍କର ଯେତେ ସାଙ୍ଗସାଥୀ, ସେବକ, ସୈନିକ ତଥା ଅନ୍ୟାନ୍ୟ ସ୍ତ୍ରୀ-ପୁରୁଷ ଥିଲେ, ସମସ୍ତଙ୍କର ମଳମୂତ୍ର ବନ୍ଦ ହୋଇଗଲା । ଅପାନବାୟୁ (ଅଧଃବାୟୁ) ବାହାରିବା ମଧ୍ୟ ବନ୍ଦ ହୋଇଗଲା । ସମସ୍ତଙ୍କ ପେଟ ଫୁଲି ଉଠିଲା । କେହି କେହି ହିଙ୍ଗାଷ୍ଟକ ଚୂର୍ଣ୍ଣ ଅନୁସନ୍ଧାନ କରିବାକୁ ଲାଗିଲେ, କେହି ହେଙ୍ଗୁର ସେକ ନାଭି ଦେଶରେ ଦେବାକୁ ଲାଗିଲେ ତ କେହି ଉତ୍ତାନ ଆସନ କରି ବାୟୁ ନିର୍ଗତ କରିବାକୁ ଚେଷ୍ଟା କଲେ । କେହି କୁଶ ମୂଳକୁ ବାଟି ପିଇଲେ । କେହି ଗବ ଗଛର ଚେରକୁ ବାଟି ଲେପ ଦେଲେତ କେହି ଅରଖ ଫୁଲରେ କଳା ଲୁଣ ମିଶାଇ ବାଟି ପିଇବାରେ ଲାଗିଲେ । କେହି ପୋଦିନା ପତ୍ର ରସ ଓ ଧନିଆ ରସ ଏକତ୍ର ପାନ କଲେ ତ କେହି କର୍ପୂର, ପିପରମେଣ୍ଟ ଆଦି ପାଣିରେ ପକାଇ ପିଇବାକୁ ଲାଗିଲେ । ଯାର କଥା ହେଲା, ଯାହାର ଯେଉଁ ଔଷଧ ମନେ ପଡ଼ିଲା ସେ ସେହି ଉପଚାର କରିବାକୁ ଲାଗିଲେ । ପ୍ରତ୍ୟେକେ ଏକାଦଶା ଭୋଗ କରୁଥିଲେ । ପ୍ରତ୍ୟେକଙ୍କର ପେଟ ଫମ୍ପାଇ ଫୁଲି ଯାଇଥିଲା । ମଳମୂତ୍ର ତ୍ୟାଗର ଇଚ୍ଛା ହେଉଥିଲେ ମଧ୍ୟ କେହି ମଳମୂତ୍ର ତ୍ୟାଗ କରି ପାରୁ ନଥିଲେ । ପ୍ରତ୍ୟେକେ ଅସ୍ତବ୍ୟସ୍ତ ଓ ବ୍ୟାକୁଳ ହେବାକୁ ଲାଗିଲେ ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ବିନା ଖାଦ୍ୟରେ ମନୁଷ୍ୟ ବହୁଦିନ ରହିପାରେ, କିନ୍ତୁ ଯଦି ଅପାନ ବାୟୁ ବନ୍ଦ ହୋଇଯାଇ ମଳମୂତ୍ର ତ୍ୟାଗ କରି ନ ହୁଏ ତାହାହେଲେ ମନୁଷ୍ୟର ଜୀବନ ବିପନ୍ନ ହୁଏ । ସେ ପର୍ଯ୍ୟନ୍ତ ସେ ବଞ୍ଚିରହେ, ସେ ପର୍ଯ୍ୟନ୍ତ ସେ ଅତ୍ୟନ୍ତ ଯନ୍ତ୍ରଣା ଭୋଗ କରେ । ରାଜା ଏ ଘଟଣାରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲେ । ସେ ବୁଝି ପାରିଲେ, ଏହା ଦୈବୀ ବିପତ୍ତି ବ୍ୟତୀତ ଅନ୍ୟ କିଛି ନୁହେଁ । ଏହା ହେଉଛି ଚ୍ୟବନ ଋଷିଙ୍କ ଆଶ୍ରମ । ହୁଏତ କେହି ନା କେହି ଅସାବଧାନତା ବଶତଃ ସେହି ବୃଦ୍ଧ ତପସ୍ୱୀଙ୍କର କୌଣସି ଅପକାର କରି ପକାଇଛି । ସେ ପ୍ରତ୍ୟେକଙ୍କୁ ଜଣ ଜଣ କରି ପଚାରିବାରେ ଲାଗିଲେ, କିନ୍ତୁ କେହି ହେଲେ କିଛି କହିଲେ ନାହିଁ । ଏଥିରେ ରାଜା ଅତ୍ୟନ୍ତ ଦୁଃଖ ପ୍ରକାଶ କଲେ ଓ ସେ ଏଥିକୁ ଅନନ୍ୟୋପାୟ ହୋଇ ଚିନ୍ତାମଗ୍ନ ହୋଇଗଲେ । ଏପରି ପରିସ୍ଥିତରେ ସେ ନିଜର କର୍ତ୍ତବ୍ୟ ନିର୍ଣ୍ଣୟ କରି ପାରିଲେ ନାହିଁ ।"

## ଛପ୍‌ପୟ

ଯୌବନକୋ ଉନ୍ମାଦ କୁତୂହଲ କନ୍ୟା ଭରମହ ।
ଉତ୍ସୁକତା ଶମନାର୍ଥ ଲୟେ ଦ୍ୱୈ କଣ୍ଟକ କରମହଁ ॥
ଆଁଖିନ ଦୟେ ଚୁଭୋଇ ବହୀ ଧାରା ଶୋଣିତକୀ ।
ଡରୀ ଭଗୀ ଲଖି ରକ୍ତ ବଢ଼ୀ ବ୍ୟାକୁଲତା ଚତକୀ ।
ଇତ ମୁନିବରକେ କୋପତେଂ, ସୈନିକ ସବ ବ୍ୟାକୁଲ ଭୟେ ।
ବେଗ ରୁକେ୍ୟା ମଲମୂତ୍ରକୋ, ମୃତକ ସରସ ତେ ହ୍ୱୈ ଗୟେ ॥



# ଚ୍ୟବନ ମୁନିଙ୍କ ସହିତ ସୁକନ୍ୟାର ବିବାହ

**ତଦଭିପ୍ରାୟମାଜ୍ଞାୟ ପ୍ରାଦାଦ୍ ଦୁହିତରଂ ମୁନେଃ ।**
**କୃଚ୍ଛ୍ରାନ୍ମୁକ୍ତସ୍ତମାମନ୍ତ୍ର୍ୟ ପୁରଂ ପ୍ରାୟାତ୍ ସମାହିତଃ ।।**

( ଶ୍ରୀ : ଭା : ୯ମ ସ୍କନ୍ଧ, ୬ଷ୍ଠ ଅ, ୯ମ ଶ୍ଳୋକ )

## ଛପ୍ପୟ

ଲଖି ଦୈବୀ ଉତ୍ପାତ ଚ୍ୟବନକୋ କୋପ ସମୁଝିମନ ।
ସୋଚେ-ହୈ ଯହ ଶାନ୍ତ ଚ୍ୟବନ ମୁନିକୋ ପାବନ ବନ ।।
ପୂଛେଂ ନୃପ ଉତ୍ପାତ କରେ୍ୟା କିନ ମୋହିଁ ବତାବେଂ ।
କାନ ସୁକନ୍ୟା କୃତ୍ୟ ନୃପତି ମନମହିଁ ଘବରାବେଂ ।।
ଦୁହିତା ଲୀହ୍ନୀଂ ସଂଗମହୈଂ, ଚଲେ ତୁରତ ମୁନିକେ ନିକଟ ।
ବିକଟ କରେ୍ୟା ପ୍ରସ୍ତାବ ମୁନି, ହ୍ନୈକେଂ ବାମୀତେଂ ପ୍ରକଟ ।।

ଭାରତୀୟ ସଂସ୍କୃତିର ଗୋଟିଏ ଅତି ସୁନ୍ଦର ସୂକ୍ତି ହେଉଛି—"କନ୍ୟାକୁ ଓ ଗାଈଙ୍କୁ ତାଙ୍କର ପାଳକ ପିତା ଯାହାଙ୍କ ସଙ୍ଗରେ ପଠାନ୍ତି ସେମାନେ ତାଙ୍କ ସହିତ ଚାଲି ଯାଆନ୍ତି ।" ଯଥାର୍ଥରେ କନ୍ୟା ଓ ଗାଈଙ୍କର ଗୋଟିଏ ସ୍ଥିତି । ଯେଉଁ ଗାଈ ମାରଣା ଓ ସ୍ୱଚ୍ଛନ୍ଦଚାରିଣୀ ଏବଂ ଯେଉଁ କନ୍ୟା ସ୍ୱେଚ୍ଛାଚାରିଣୀ ହୋଇ, କୁଳ, ଶୀଳ, ସଂକୋଚ ଓ ଲୋକୋଚିତ ସଦାଚାର ପରିତ୍ୟାଗ କରି ସବଂଶ ତଥା ସମସ୍ତଙ୍କ ସହିତ ସ୍ୱଚ୍ଛନ୍ଦ ସମ୍ବନ୍ଧ ସ୍ଥାପନ କରିବାରେ ଲାଗନ୍ତି, ଯେଉଁ ସମାଜରେ କଦାଚାର ଏବଂ ବ୍ୟଭିଚାର କରିବା ପାଇଁ ଉତ୍ସାହିତ କରାଯାଏ, ଏ ସମସ୍ତ ପରିତ୍ୟାଜ୍ୟ । କିନ୍ତୁ ଯେଉଁ ଗାଈ ଅତ୍ୟନ୍ତ ଶାନ୍ତ ଓ ସୁଧୀର, ଯେଉଁ କନ୍ୟା ପ୍ରାଚୀନ ମର୍ଯ୍ୟାଦା ରକ୍ଷାକାରିଣୀ, କୁଳବତୀ ଓ ଲଜ୍ଜାବତୀ, ତାଙ୍କର ପାଳକ ତଥା ପିତା ସେମାନଙ୍କୁ ଯାହାଙ୍କ ହାତରେ ଅର୍ପଣ କରନ୍ତି, ବିନା ଦ୍ୱିଧାରେ ବା ଆପତ୍ତିରେ ସେମାନେ ତାଙ୍କ ସଙ୍ଗରେ ଚାଲି ଯାଆନ୍ତି । ଅନେକ ଦୁଷ୍ଟ ପ୍ରକୃତିର ପିତା ଚଣ୍ଡାଳ ତଥା ନରପଶୁମାନଙ୍କୁ ନିଜର ନିର୍ଦ୍ଦୋଷ

ନଷ୍ଟ କରିବା ପାଇଁ ବ୍ୟସ୍ତ କରି ଦିଅନ୍ତି । ଏହି ନରକର କୀଟମାନେ ନିଜ ନିଜର ସ୍ୱାର୍ଥ ସାଧନ ପାଇଁ ସେମାନଙ୍କର ଜୀବନକୁ ଦୁଃଖମୟ କରିଦିଅନ୍ତି । ସେହି ପାପୀମାନଙ୍କ ସମ୍ବନ୍ଧରେ ବିଶେଷ କହିବା ବାହୁଲ୍ୟ, କିନ୍ତୁ ସତ୍ପାତ୍ରରେ ଦାନ ଦିଆଯାଇଥିବା ଗାର୍ଗୀ ଓ କନ୍ୟା ଦାତାଙ୍କୁ ଉଦ୍ଧାର କରେ ଓ କୁଳର କୀର୍ତ୍ତି ଉଜ୍ଜ୍ୱଳମୟ କରିଥାଏ । ସେହି କନ୍ୟାମାନେ ନିଜର ପବିତ୍ରତା ଓ ପାତିବ୍ରତ୍ୟ ପ୍ରଭାବରେ ଅସମ୍ଭବକୁ ମଧ୍ୟ ସମ୍ଭବ କରିଦିଅନ୍ତି ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ମହାରାଜ ଶର୍ଯ୍ୟାତିଙ୍କ ସୈନ୍ୟ ଓ ଅମାତ୍ୟ ଆଦି ନିଜ ଲୋକମାନଙ୍କର ମଳମୂତ୍ର ନିରୋଧ ହୋଇଯିବାରୁ ରାଜା ଅତ୍ୟନ୍ତ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ସେ ବୁଝିପାରିଲେ ଏହା ମହାପୁରୁଷଙ୍କ ନିକଟରେ କରିଥିବା ଅପରାଧର ଫଳ । ଏହା ନିଶ୍ଚିତ କଥା ଯେ କେହି ଜଣେ ଭଗବାନ୍ ଚ୍ୟବନଙ୍କର ଅନିଷ୍ଟ ସାଧନ କରି ଘୋର ଅପରାଧ କରିଅଛି । ତାହାର ପରିଣାମ ସ୍ୱରୂପ ଏହି ସାମୂହିକ ବିପତ୍ତି ଆମ୍ଭମାନଙ୍କ ଉପରେ ପଡ଼ିଛି । ଏହା ସ୍ଥିର ନିଶ୍ଚିତ କରି ସେ ପ୍ରତ୍ୟେକଙ୍କୁ ଜଣ ଜଣ କରି ଏକାନ୍ତ ସ୍ଥାନକୁ ଡାକି ପଚାରିଲେ—"ଭାଇ ! ଦେଖ ଏଠାରେ ଯେ ଯେଉଁ ଅପରାଧ କରିଅଛି ମୋ ଆଗରେ କପଟ ନକରି କହିଦିଅ । ମୁଁ କାହାରିକୁ ଦଣ୍ଡ ଦେବି ନାହିଁ । ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ମହାମୁନି ଚ୍ୟବନଙ୍କର କେହି କିଛି ଅନିଷ୍ଟ ତ କରି ନାହିଁ ?"

ସମସ୍ତେ ଯୋଡ଼ ହସ୍ତ ହୋଇ ବିନୟ ଭାବରେ କହିଲେ—"ଦେବ ! ଆମ୍ଭେମାନେ ଆଦୌ ଜାଣିନାହୁଁ ଯେ ଭଗବାନ ଚ୍ୟବନ କେଉଁଠାରେ ତପସ୍ୟା କରୁଛନ୍ତି । ଆମ୍ଭେମାନେ ମଧ୍ୟ ଜ୍ଞାତସାରରେ ତାଙ୍କର କୌଣସି ଅପ୍ରିୟ କାର୍ଯ୍ୟ କରିନାହୁଁ ।"

ସୁକନ୍ୟା ଯେତେବେଳେ ଦେଖିଲେ, ନିଜର ଗୋଟିଏ ମାତ୍ର କାର୍ଯ୍ୟ ହେତୁ ସମସ୍ତେ ଅତ୍ୟନ୍ତ ଦୁଃଖ କଷ୍ଟ ଭୋଗ କରୁଅଛନ୍ତି, ସେତେବେଳେ ସେ ଭୟରେ ଥରି ଥରି ମଥାନତ କରି କହିଲେ—"ବାପା ! ମୋ ଅଜ୍ଞାତସାରରେ ଏକ ଗୁରୁତର ଅପରାଧ ହୋଇଯାଇଛି ।"

ଅତ୍ୟନ୍ତ ସ୍ନେହ ଓ ଆଗ୍ରହର ସହିତ ମହାରାଜ ଶର୍ଯ୍ୟାତି ପଚାରିଲେ—"ମା ! ତୋ ଦ୍ୱାରା କଣ କେବେ କୌଣସି ଅପରାଧ ସମ୍ଭବ ହୋଇପାରେ । ତୁ ତ ଅତି ଅଞ୍ଚଳ ଓ ଶାନ୍ତଶିଷ୍ଟ ପିଲା । କେବେହେଲେ କାହାରିକୁ ତୁ ପଦେହେଲେ କଟୁକଥା ବି କହୁନାହିଁ ।"

ସୁକନ୍ୟା ଏଥିରେ ଲଜ୍ଜିତ ହୋଇ କହିଲି—"ପିତା ! ଏହି ଅପରାଧ ମୁଁ ଜାଣିଶୁଣି କରି ନାହିଁ । ବାଳସୁଲଭ ଚପଳତା ବଶତଃ ଅଜାଣତରେ ମୁଁ ଏହି

ଅକ୍ଷମଣୀୟ ଅପରାଧ କରିଅଛି । ଗୋଟିଏ ଉଚ୍ଚ ସ୍ଥାନରେ ମନୁଷ୍ୟ ଆକୃତିର ଏକ ଉଇହୁଙ୍କା ମୋର ଦୃଷ୍ଟି ଗୋଚର ହେବାରୁ ମୁଁ ତାହା ନିକଟକୁ ଯାଇ ତାକୁ ଭଲଭାବେ ନିରୀକ୍ଷଣ କଲି । ଛିଦ୍ର ପଥଦେଇ ଖଦ୍ୟୋତ ସଦୃଶ ଦୁଇଟି ଉଜ୍ଜ୍ୱଳ ବସ୍ତୁ ସେହି ହୁଙ୍କା ଭିତରେ ଥିବାର ମୋତେ ଦେଖାଗଲା । ତାହା କ'ଣ ବସ୍ତୁ ଜାଣିବା ପାଇଁ ମୋର ଅତ୍ୟନ୍ତ କୌତୂହଳ ଜାତ ହେବାରୁ ମୁଁ ଦୁଇଟି କଣ୍ଟା ଆଣି ତାକୁ କେଞ୍ଚି ଦେଲି, ସଙ୍ଗେ ସଙ୍ଗେ ତହିଁରୁ ରକ୍ତଧାର ବହିବାକୁ ଲାଗିଲା । ସେତେବେଳେ ମୋତେ ପ୍ରତୀତ ହେଲା ଯେ ଏହା ସେହି ମହାମୁନି ପରମ ତପସ୍ୱୀ ଭଗବାନ ଚ୍ୟବନଙ୍କର ଆଖି ।"

ଏକଥା ଶୁଣିବା କ୍ଷଣି ରାଜାଙ୍କର ମୁଖ ମ୍ଳାନ ପଡ଼ିଗଲା । ସେ ପୁତ୍ରମାନଙ୍କୁ ଓ ମନ୍ତ୍ରୀକୁ ସଙ୍ଗରେ ନେଇ ଅତିଶୀଘ୍ର ମୁନିଙ୍କ ନିକଟରେ ଯାଇ ପହଞ୍ଚିଲେ । ମୁନିଙ୍କ ଶରୀର ଉଇ ହୁଙ୍କାରେ ଆଚ୍ଛାଦିତ ହୋଇଥିଲା । ଜଣା ପଡୁଥିଲା, ସତେ ଯେପରି ସେ ଉଇ ହୁଙ୍କା ଭିତରେ ବସି ରହିଛନ୍ତି । ରାଜା ମଧୁର ବାଣୀରେ ମୁନିଙ୍କୁ ସ୍ତୁତି କଲେ । ରାଜାଙ୍କ ସ୍ତୁତି ଶୁଣି ମୁନି ପଚାରିଲେ—"ମହାନୁଭବ ! ଆପଣ କିଏ ? ମୋତେ କାହିଁକି ସ୍ତୁତି କରୁଛନ୍ତି ?"

ଏହାଶୁଣି ରାଜା ହାତଯୋଡ଼ି କହିଲେ—"ବ୍ରହ୍ମନ୍ ! ମୁଁ ମନୁପୁତ୍ର ଶର୍ଯ୍ୟାତି । ମହର୍ଷେ ! ମୋର ଅବୋଧ କନ୍ୟା ଅଜାଣତରେ ଆପଣଙ୍କୁ ଅପମାନିତ କରିଛି, ଆପଣଙ୍କ ନେତ୍ରହାନି କରିଛି । ପ୍ରଭୋ ! ଆପଣ ମୋ ଅନୁଚରମାନଙ୍କ ପ୍ରତି ସଦୟ ହୁଅନ୍ତୁ, କୃପାକରି ମୋ ଅଜ୍ଞାତରେ ହୋଇଥିବା ଏହି ଅପରାଧ ପାଇଁ ମୋତେ କ୍ଷମା କରନ୍ତୁ । ମୁଁ ଆପଣଙ୍କ ପାଦତଳେ ନତମସ୍ତକ ହୋଇ ପ୍ରଣାମ କରି ଆପଣଙ୍କୁ ଦୁଃଖ ଜଣାଉଛି ଓ ନିଜ କନ୍ୟାର ଅପରାଧ ପାଇଁ ଅତ୍ୟନ୍ତ ଲଜ୍ଜିତ ହୋଇ ଦୁଃଖର ସହିତ ଆପଣଙ୍କ ନିକଟରେ କ୍ଷମା ପ୍ରାର୍ଥନା କରୁଛି । ବ୍ରହ୍ମନ୍ ! ଆପଣ ଦୀନବତ୍ସଳ ଅଟନ୍ତି, ଅପକାର କରୁଥିବା ଲୋକମାନଙ୍କୁ କ୍ଷମା କରନ୍ତି । ସେମାନଙ୍କର କୌଣସି ଅପକାର କରନ୍ତି ନାହିଁ ।"

ରାଜା ମୁନିଙ୍କଠାରୁ ଅନୁମତି ନେଇ ତାଙ୍କ ଉପରେ ଆଚ୍ଛାଦିତ ହୋଇଥିବା ଉଇ ହୁଙ୍କାକୁ ଭାଙ୍ଗି ଦେଇଥିଲେ । ନଖାଇ ନପିଇ ସମାଧିସ୍ଥ ହୋଇଥିବା କାରଣରୁ ମୁନିଙ୍କ ରକ୍ତମାଂସ ଶୁଷ୍କ ହୋଇ ଯାଇଥିଲା । ସ୍ଥାନେ ସ୍ଥାନେ ତାଙ୍କ ଚର୍ମକୁ ଉଇମାନେ ଚରି ଯାଇଥିଲେ । ବୃଦ୍ଧାବସ୍ଥା ହେତୁ ତାଙ୍କର ସମସ୍ତ ଶରୀର ଜରାଜୀର୍ଣ୍ଣ ହୋଇ ଯାଇଥିଲା । ଶରୀରର ସମସ୍ତ ଅସ୍ଥି ଗଣା ଯାଇପାରୁଥିଲା । ଶରୀରରେ କିଛି ନଥିଲା, ଗୁଞ୍ଜଭଳି କେବଳ ଅସ୍ଥିଗୁଡ଼ିକ ଯୋଗେ ମନୁଷ୍ୟାକୃତି କଙ୍କାଳଟି ରହିଥିଲା । ମୁନିଙ୍କର ମୁଖ ଗମ୍ଭୀର ହୋଇଥିଲା । ଫୁଟି ଯାଇଥିବା ନେତ୍ରରୁ ରକ୍ତ ବହିଆସି ଜମିଯାଇ ଶୁଖି ଯାଇଥିଲା ।

ସେ ବଡ଼ କଷ୍ଟ ଭୋଗ କରୁଥିଲେ । ଗମ୍ଭୀରତା ପୂର୍ବକ ସେ ପଚାରିଲେ—"ତୁମ କନ୍ୟା କେତେ ବଡ଼ ?"

ରାଜା ବିନୀତ ଭାବରେ କହିଲେ—"ପ୍ରଭୋ ! ଏବେ ତ ସେ ବିବାହ ଯୋଗ୍ୟା ହୋଇ ଯାଇଛି । ବାଲ୍ୟାବସ୍ଥା ଅତିକ୍ରମ କରି ସେ ବର୍ତ୍ତମାନ ଯୁବାବସ୍ଥାରେ ପଦାର୍ପଣ କରିଛି ।"

ମୁନି ପଚାରିଲେ—"ଏ ପର୍ଯ୍ୟନ୍ତ ତାହାର ବିବାହ କାହିଁକି କରିନାହଁ ?"

ରାଜା କହିଲେ—"ନା ଭଗବାନ୍ ! ଏ ପର୍ଯ୍ୟନ୍ତ ମୁଁ ତାହାର ବିବାହ କରି ପାରି ନାହିଁ । ମୁଁ ଏବେ ଚିନ୍ତା କରୁଛି, ତା ପାଇଁ ଉପଯୁକ୍ତ ପାତ୍ରଟିଏ ମିଳିଗଲେ ଶୀଘ୍ର ହାତକୁ ଦୁଇହାତ କରିଦେବି ।"

ମୁନି ପଚାରିଲେ—"ତାହାହେଲେ କ'ଣ ଏ ପର୍ଯ୍ୟନ୍ତ କୌଣସିଠାରୁ କୌଣସି ପ୍ରସ୍ତାବ ଆସି ନାହିଁ ?"

ରାଜା କହିଲେ—"ନା ଭଗବାନ୍ ! ଏପର୍ଯ୍ୟନ୍ତ ତା ଅନୁରୂପ କୌଣସି ଯୋଗ୍ୟ ବରର ସନ୍ଧାନ ମୁଁ ପାଇନାହିଁ ।"

ମୁନି କହିଲେ—"ସେ ମୋ ଆଖି କାହିଁକି ଫୁଟାଇ ଦେଲା ?"

ରାଜା କହିଲେ –"ମହାରାଜ ! ଜାଣିଶୁଣି ସେ ଆଖି ଫୁଟାଇ ନାହିଁ, ବାଲ୍ୟ ଚପଳତା ବଶତଃ ସେ ଜୁଳୁଜୁଳିଆ ପୋକ ମନେକରି ତହିଁରେ କଣ୍ଟା ଫୋଡ଼ିଦେଲା ।"

ମୁନି କହିଲେ—"ଏହାକୁ କଣ ବାଲ୍ୟ ଚପଳତା କୁହାଯାଏ ? ସେ ତ ସ୍ତନ୍ୟପାୟୀ ଶିଶୁ ନୁହେଁ । ତୁମେ କହୁଛ ଯେ, ସେ ବିବାହ ଯୋଗ୍ୟା ହୋଇଛି । ତେଣୁ ବାଳିକା ବୋଲି ତାକୁ କିପରି କହୁଛ ? ମନେକର ତାହା ଯଦି ଜୁଳୁଜୁଳିଆ ପୋକ ବୋଲି ଜାଣୁଥିଲା, ତାହାର କ'ଣ ପ୍ରାଣ ନାହିଁ ? କଣ୍ଟା ଫୋଡ଼ିଦେଲେ କଣ ସେ ମରିଯିବ ବୋଲି ସେ ଜାଣି ନଥିଲା ?"

ରାଜା ନିରୁତ୍ତର ହୋଇ କହିଲେ—"ହଁ, ମହାରାଜ ! ସେ ଅପରାଧ କରିଛି, ବିନା କାରଣରେ ଏପରି ଚପଳତା ପ୍ରକାଶ କରିଛି ।"

ମୁନି କହିଲେ—"ଯଦି ଅପରାଧ କରିଛି, ତେବେ ତ କର୍ମଫଳ ଭୋଗ କରିବ । ମୋ ଠାରୁ ତୁମେ କଣ ଆଶା କରୁଛ ?"

ରାଜା କହିଲେ—"ମହାରାଜ ! ମୋର ଏକମାତ୍ର କନ୍ୟାଯୋଗେ ମୋ ସମସ୍ତ ସାଥୀ ବିପଦଗ୍ରସ୍ତ । ପ୍ରତ୍ୟେକଙ୍କର ମଳମୂତ୍ର ନିରୋଧ ହୋଇଯାଇଛି । ସମସ୍ତେ ଯନ୍ତ୍ରଣା ଭୋଗ କରୁଛନ୍ତି । ପ୍ରତ୍ୟେକେ ଉଦର ବ୍ୟଥାରେ ଛଟପଟ ହେଉଛନ୍ତି ।"

ମୁନି କହିଲେ—"ମୋ ଆଖିରେ କଣ ପୀଡ଼ା ହେଉ ନାହିଁ ?"

ରାଜା କହିଲେ—"ଭଗବାନ୍ ! ଆପଣ ତ ସର୍ବ ସମର୍ଥ ଅଟନ୍ତି, ଯାହା ଚାହିଁବେ ତାହା କରି ପାରିବେ । ମୁଁ ତ ଆପଣଙ୍କ ଆଖି ଲଗାଇ ପାରିବ ନାହିଁ, ଆପଣ ଯାହା ଆଜ୍ଞା ଦେବେ ତାହା କରିବା ପାଇଁ ପ୍ରସ୍ତୁତ ଅଛି । ଆପଣ ଯଦି ଆଜ୍ଞା କରନ୍ତି, ତେବେ ଶହିଶହି ଦାସଦାସୀଙ୍କୁ ଆପଣଙ୍କ ସେବାରେ ନିଯୁକ୍ତ କରିବ । ସମସ୍ତ ସୁଖ ସାମଗ୍ରୀ ଆପଣଙ୍କ ନିକଟରେ ପହଞ୍ଚାଇ ଦେବି ।"

ମୁନି କହିଲେ—"ସେବକମାନେ ମୋର କି ଅପରାଧ କରିଛନ୍ତି ଯେ ମୁଁ ସେମାନଙ୍କ ସେବା ଗ୍ରହଣ କରିବ ? ତପସ୍ୱୀ ତ ନିଜେ ସେବକ । ସେ ସେବକମାନଙ୍କ ଦ୍ୱାରା କାର୍ଯ୍ୟ କରାନ୍ତି ନାହିଁ । ଯେ ଅପରାଧ କରିଛି, ସେହି କେବଳ ସେବା କରିବା ଉଚିତ । ଯେ ମୋତେ ନେତ୍ରହୀନ କରିଛି, ସେ ମୋତେ ନିଜ ନେତ୍ରର ଆଲୋକ ପ୍ରଦାନ କରିବା ଉଚିତ୍ । ଏହା ହିଁ ନ୍ୟାୟ ସଙ୍ଗତ, ଏହା ହିଁ ଧର୍ମ, ଏହା ହିଁ ନୀତି ।"

ରାଜା ବୁଦ୍ଧିମାନ ଥିଲେ । ତେଣୁ ସେ ମୁନିଙ୍କ ଅଭିପ୍ରାୟ ବୁଝି ପାରିଲେ । ସେ ନିଜ କନ୍ୟାକୁ କହିଲେ—"ମା ! ଋଷି ତୋତେ ହିଁ ଚାହୁଁଛନ୍ତି । ତୁ ଏଥିରେ ସମ୍ମତ ତ ?"

ସୁକନ୍ୟା କହିଲା—"ପିତା ! ଏହା ମୋ ପାଇଁ ଅତି ସୌଭାଗ୍ୟର କଥା । କାରଣ ଏତେବଡ଼ ତେଜସ୍ୱୀ ତପସ୍ୱୀ ତାଙ୍କର ସେବାରେ ନିଯୁକ୍ତ କରିବା ପାଇଁ ମୋତେ ଚାହୁଁଛନ୍ତି । ମୁଁ ମୋର ସର୍ବସ୍ୱ ସମର୍ପଣ କରି ଋଷିଙ୍କ ସେବାରେ ଚିରଦିନ ନିଜକୁ ନିୟୋଜିତ କରିବ । ଆପଣ ଚିନ୍ତା କରନ୍ତୁ ନାହିଁ । ମୋ ସକାଶେ ଅନ୍ୟମାନେ କ୍ଲେଶ ଭୋଗ ନ କରନ୍ତୁ । ଆପଣ ମୋତେ ମୁନିଙ୍କ ହସ୍ତରେ ପ୍ରଫୁଲ୍ଲ ମନରେ ସମର୍ପଣ କରି ଦିଅନ୍ତୁ ।" କନ୍ୟାର ଏ ପ୍ରକାର ଦୃଢ଼ତାପୂର୍ଣ୍ଣ ବଚନ ଶୁଣି ରାଜା ଅତ୍ୟନ୍ତ ଆନନ୍ଦିତ ହେଲେ । ବୃଦ୍ଧ ମୁନିଙ୍କୁ ନିଜର ପରମ ସୁକୁମାରୀ ଅଲିଅଳି କନ୍ୟାକୁ ପ୍ରଦାନ କରିବାରେ ତାଙ୍କ ମନରେ ଅବଶ୍ୟ ଦୁଃଖ ଜାତ ହେଲା, କିନ୍ତୁ ଉପାୟ କଣ ? ଗୋଟିଏ କନ୍ୟା ସକାଶେ ହଜାର ହଜାର ଲୋକ ଯେ ସଙ୍କଟାପନ୍ନ । ମୁନି ସ୍ପଷ୍ଟ ପ୍ରସ୍ତାବ କରି ନ ଥିଲେ, କିନ୍ତୁ ବୁଦ୍ଧିମାନ୍ ରାଜା ତାଙ୍କ ସଙ୍କେତରୁ ହିଁ ବୁଝି ପାରିଥିଲେ ଯେ ସେ କନ୍ୟାକୁ ଚାହୁଁଛନ୍ତି । ରାଜା ଏଥିପାଇଁ ମୁନିଙ୍କୁ କନ୍ୟା ଦାନ କରିବାକୁ ସନ୍ତୋଷ ମନରେ ସ୍ଥିର କରି ନେଇଥିଲେ । ଯାହାକୁ ହେଲେ ତ ସେ କନ୍ୟା ପ୍ରଦାନ କରି ଥାଆନ୍ତେ, ତପସ୍ୱୀ ବ୍ରାହ୍ମଣଙ୍କଠାରୁ ବଳି ଶ୍ରେଷ୍ଠ ପାତ୍ର ଆଉ କିଏ ହୋଇପାରେ ? ଏତିକି କଥା ଯେ ମୁନି, ବୃଦ୍ଧ, ହେଲେ ମଧ୍ୟ ସେଥିରେ କିଛି ଯାଏ ଆସେ ନାହିଁ । ତପସ୍ୟାର ସବୁ ପ୍ରକାର ସାମର୍ଥ୍ୟ ରହିଛି । ଏହିପରି ଚିନ୍ତା କରି ରାଜା ବିଧି ବିଧାନ ପୂର୍ବକ ଚ୍ୟବନ ମୁନିଙ୍କ ସହିତ ସୁକନ୍ୟାର ବିବାହ କରି ଦେଲେ ।

ମୁନି ସୁକନ୍ୟାଙ୍କୁ ପତ୍ନୀରୂପେ ପାଇ ଅତ୍ୟନ୍ତ ପ୍ରସନ୍ନ ହେଲେ । ଏବେ ତାଙ୍କ ନେତ୍ର ଓ ହୃଦୟର ବ୍ୟଥା ଅପସାରିତ ହେବାକୁ ଲାଗିଲା । ତାଙ୍କ କୃପାରୁ ରାଜାଙ୍କର ସମସ୍ତ ଲୋକ ଏବଂ ସୈନ୍ୟ ସାମନ୍ତଙ୍କର କଷ୍ଟ ଦୂର ହେଲା । ସମସ୍ତଙ୍କ ବାୟୁ ସ୍ଥିର ହୋଇ-ଗଲା ଓ ପ୍ରତ୍ୟେକ ଆରୋଗ୍ୟ ହୋଇଗଲେ । ସମସ୍ତେ ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇ ଯିବାରୁ ରାଜା ମୁନିଙ୍କ ଚରଣ ବନ୍ଦନା କଲେ ଓ ତାଙ୍କଠାରୁ ଅନୁମତି ନେଇ ନିଜ ରାଜଧାନୀକୁ ଫେରି ଆସିବାକୁ ପ୍ରସ୍ତୁତ ହେଲେ । ରାଜାଙ୍କ ପ୍ରତ୍ୟାବର୍ତ୍ତନ ଦେଖି ସୁକନ୍ୟା ଅଧୈର୍ଯ୍ୟ ହୋଇ ପଡ଼ିଲେ, ସେ ପିତାଙ୍କୁ କୁଣ୍ଢାଇ ଧରି ଅବୋଧ ଶିଶୁଙ୍କ ଭଳି କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲେ । ରାଣୀମାନେ ମଧ୍ୟ କ୍ରନ୍ଦନ କରି ବନ ଭୂମି ମୁଖରିତ କଲେ । ସେ ସମୟର ଦୃଶ୍ୟ ଅତି କାରୁଣ୍ୟମୟ ଥିଲା । ରାଜାଙ୍କ ହୃଦୟ ମଧ୍ୟ ଦୁଃଖରେ ପୂର୍ଣ୍ଣ ହୋଇଯାଇଥିଲା । ଯେଉଁ କନ୍ୟା ରାଜମହଲ ଭିତରେ ଅତି ଯତ୍ନରେ ଲାଳିତ ପାଳିତ ହୋଇ ଆସିଥିଲେ, ଆଜି ତାଙ୍କୁ ନିର୍ଜନ ବନ ମଧ୍ୟରେ ବୃଦ୍ଧ ଚ୍ୟବନ ମୁନିଙ୍କ ସହିତ ଏକାକିନୀ ଛାଡ଼ି ଚାଲିଯାଉଥିବାରୁ ତାଙ୍କ ଚିତ୍ତ ଚଞ୍ଚଳ ହୋଇ ଉଠିଥିଲା । ତଥାପି ଏ ସମସ୍ତ ଭାଗ୍ୟର ବିଡ଼ମ୍ବନା ବୋଲି ବୁଝିପାରି ସମସ୍ତ ଦୁଃଖ ସହ୍ୟକରି ନେଇଥିଲେ । ସେ ନିଜ ଆଖିରୁ ଲୁହ ପୋଛି କନ୍ୟାର ଶିର ଉପରେ ହାତ ରଖି ଅତି ସ୍ନେହରେ କହିଲେ— "ମା ! ଏବେ ତୋର ସ୍ୱାମୀ, ଇଷ୍ଟ ଓ ସର୍ବସ୍ୱ, ସ୍ୱୟଂ ଭଗବାନ ଚ୍ୟବନ ଅଟନ୍ତି । ତୁ ପ୍ରମାଦ ନ କରି ନିରଳସ ହୋଇ ଅତି ଯତ୍ନ ସହକାରେ ନିଜର ଏହି ସର୍ବଜ୍ଞ ସ୍ୱାମୀଙ୍କୁ ଶ୍ରଦ୍ଧା ପୂର୍ବକ ସେବା କରିବୁ । ଏହାଙ୍କ ସେବା କରିବାଦ୍ୱାରା ତୋର ସମସ୍ତ ମନୋରଥ ପୂର୍ଣ୍ଣ ହେବ ।"

ପିତାଙ୍କ କଥାକୁ ସୁକନ୍ୟା ମୌନ ହୋଇ ସ୍ୱୀକାର କଲା । ଏହାପରେ ସେ ମାତାଙ୍କୁ ସାକ୍ଷାତ କଲା । ଏହିପରି ଭାବରେ ସେ ମାତା ପିତାଙ୍କୁ ସାକ୍ଷାତ୍ କରି ତାଙ୍କ ପଛେ ପଛେ ଆଶ୍ରମ ଫାଟକ ପର୍ଯ୍ୟନ୍ତ ଗଲା । ଯେତେବେଳେ ସମସ୍ତେ ଦୂରକୁ ଚାଲିଗଲେ, ସେତେବେଳେ ସେ ନିଜ ପତିଙ୍କ ନିକଟକୁ ଫେରି ଆସିଲା ଓ ନିଜର ରାଜକୀୟ ବସ୍ତ୍ର ପରିବର୍ତ୍ତେ ଆଶ୍ରମରେ ଯେପରି ବଲ୍‌କଲ ପରିଧାନ କରାଯାଏ ସେହିପରି ବସ୍ତ୍ର ପରିଧାନ କଲା । ଏବଂ ପୂର୍ବ ବସ୍ତ୍ରମାନ ଫିଙ୍ଗି ଦେଲା । ସେହି ଶୁଭାନନା ସୁକନ୍ୟା ଶ୍ରଦ୍ଧାର ସହିତ ନିଜ ସ୍ୱାମୀଙ୍କୁ, ଅଗ୍ନିଙ୍କୁ ଓ ଆଗତ ଅତିଥି ଅଭ୍ୟାଗତଙ୍କୁ ନିରନ୍ତର ଉଦାରତା ପୂର୍ବକ ସେବା କରିବାରେ ନିଯୁକ୍ତ ହେଲା । ସେ ନିଜକୁ ରାଜକନ୍ୟା ବୋଲି କେବେହେଲେ ଅଭିମାନ କଲା ନାହିଁ । ତପସ୍ୱୀ ବ୍ରାହ୍ମଣ ସାଧାରଣତଃ କ୍ରୋଧୀ ସ୍ୱଭାବର ହୋଇଥାଆନ୍ତି । ବୃଦ୍ଧାବସ୍ଥା ହେଲେ କ୍ରୋଧ ବୃଦ୍ଧି ପାଇବା ତ ସ୍ୱାଭାବିକ । ମୁନି କଥା କଥାକେ କୁପିତ ହୋଇ ଯାଉଥିଲେ । କିନ୍ତୁ ସୁକନ୍ୟା କେବେହେଲେ କୌଣସି କଥାର ପ୍ରତିଉତ୍ତର ନ କରି ତାଙ୍କର ସମସ୍ତ ଆଦେଶ ଶିରୋଧାର୍ଯ୍ୟ କରୁଥିଲା । ବ୍ୟଗ୍ରତା ପ୍ରକାଶ ନ କରି ସେ ତାଙ୍କର ସେବା କରୁଥିଲା । ଏହିପରି ଭାବରେ ତପସ୍ୱୀ ପତିଙ୍କର ସେବା

କରି କରି ସୁକନ୍ୟାର ବହୁଦିନ ଅତିବାହିତ ହୋଇଗଲା । ତାହାର ତପସ୍ୟା ମୁନିଙ୍କ ତପସ୍ୟା ଠାରୁ ବଳି ପଡ଼ିଲା । ପତିବ୍ରତ ପାଳନ ରୂପକ ତପସ୍ୟା ଏଭଳି ଯେ ସେ ପ୍ରକାର ଅନ୍ୟ କୌଣସି ତପ ହୋଇ ନ ପାରେ ।

ଶ୍ରୀ ଶୁକ କହିଲେ—"ରାଜନ୍ ! ସନ୍ତୋଷ ଓ ସେବାର ଫଳ ମଧୁର ହୋଇଥାଏ । ଏବେ ସୁକନ୍ୟା ସେବାକରିବାରେ ସଫଳ ହେବାର ଉପଯୁକ୍ତ ସମୟ ଆସି ଉପସ୍ଥିତ ହେଲା । ସେ ବିଷୟରେ ମୁଁ ଆପଣଙ୍କୁ ଶୁଣାଉ ଅଛି । ଆପଣ ମନଧ୍ୟାନ ଦେଇ ଏହି ପୁଣ୍ୟ ପ୍ରସଙ୍ଗ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

କନ୍ୟା ଫୋରୀ ଆଁଖି ଭୟୋ ହୌଂ ଅନ୍ଧୋ ଭୂପତି ।
ନେତ୍ରହୀନ କରି ଜଗତ ମାଁହି ପାବେ ଦୁଖ ନିତ ପ୍ରତି ।।
ଧର୍ମ କର୍ମ କସ କହୁଁ ପୁଣ୍ୟ ପଥ କୈସେ ପେଖୁଁ ।
କନ୍ୟା କରୌ ପ୍ରଦାନ ନେତ୍ର ଜକେତେଂ ଦେଖୁଁ ।।

ସୁନି ନୃପ ଅତି ବିଚଲିତ ଭୟୋ, ପରି କନ୍ୟା ସହମତ ଭଈ ।
ସମୁଝି ବଲବଲ ଭୂପନେ, ମୁନିକୁଁ ପୁତ୍ରୀ ଦୈ ଦଈ ।



# ଚ୍ୟବନ ମୁନି ବୃଦ୍ଧରୁ ତରୁଣ ହେଲେ

**କସ୍ୟଚିତ୍ ତ୍ୱଥ କାଲସ୍ୟ ନାସତ୍ୟାବାଶ୍ରମାଗତୌ ।**
**ତୌ ପୂଜୟିତ୍ୱା ପ୍ରୋବାଚ ବୟୋ ମେ ଦତ୍ତମୀଶ୍ୱରୌ ॥**

(ଶ୍ରୀ:ଭା: ୯ମ ସ୍କନ୍ଧ, ୩ୟ ଅ; ୧୧ଶ ଶ୍ଳୋକ)

## ଛପ୍ପୟ

ଜରଠେଁ କନ୍ୟାଦାନ ଗୟେ ଭୂପତି ରଜଧାନୀ ।
ପତିସେବା ହୀ ଧରମ ସୁକନ୍ୟା ଉତ୍ତମ ମାନୀ ॥
ଅମର ବୈଦ୍ୟ ଇକ ଦିବସ ଚ୍ୟବନ ମୁନି ଆଶ୍ରମ ଆୟେ ।
କରି ସେବା ସତ୍କାର ମହାମୁନି ବଚନ ସୁନାୟେ ॥
ଅତି ପ୍ରସିଦ୍ଧ ସୁରଭିଷକ୍ ତୁମ୍ , ତୌଉ ହୌଂ ଅତି ଦୁଖ ସହୁଁ ।
କରୌ ବୃଦ୍ଧ ତେଂ ଯୁବକ୍ ଯଦି, ଯୋ ମାଁଗୌ ସୋଇ ଦଉଁ ॥

ବ୍ୟବହାରରେ ଆଦାନ ପ୍ରଦାନ ହୋଇଥାଏ, ତୁମେ ଏହା ଦିଅ ତା ବଦଳରେ ଆମେ ଏହା ଦେବୁ । ଯେଉଁଠାରେ ଆଦାନ ପ୍ରଦାନ ଥାଏ, ସେଠାରେ ତାହାକୁ ବ୍ୟବହାର ବୋଲି କୁହାଯାଏ । ଯେଉଁଠାରେ ବ୍ୟବହାର ଅଛି ସେଠାରେ ଅଳ୍ପ ଦେଇ ଅଧିକ ପାଇବାର କାମନା ରହିଛି । ଯେଉଁଠାରେ କାମନା ଅଛି, ସେଠାରେ କ୍ରୋଧ ରହିଛି, ଯେଉଁଠି ଉଭୟ ପ୍ରକାର କ୍ରୋଧ ରହିଛି, ସେଠାରେ ବଳବାନ୍ କ୍ରୋଧୀର ବିଜୟ ସୁନିଶ୍ଚିତ ଓ ଦୁର୍ବଳ ପରାହତ ଏବଂ ଅପମାନିତ । ଏ ସାରା ଦୁନିଆଁ ବ୍ୟବହାର ବା ଆଦାନ ପ୍ରଦାନରେ ଚାଲିଅଛି, ମନୁଷ୍ୟ ଦେବତାମାନଙ୍କୁ ନୈବେଦ୍ୟ ପ୍ରଦାନ କରେ, ସେଥିପାଇଁ ଦେବତାମାନେ ମନୁଷ୍ୟମାନଙ୍କର ସୁଖଶାନ୍ତି ଓ ସମୃଦ୍ଧିର ବ୍ୟବସ୍ଥା କରନ୍ତି । ପିତା ପୁତ୍ରର ପାଳନ ପୋଷଣ କରନ୍ତି, ପୁନଶ୍ଚ ସେ ଆଶାରଖି ଥାଆନ୍ତି ଯେ ବୃଦ୍ଧାବସ୍ଥାରେ ତାଙ୍କର ସେବା କରିବ । ଜୀବିକା ନିର୍ବାହ ଆଦାନ ପ୍ରଦାନ ଉପରେହିଁ ନିର୍ଭର କରେ । ଯଦି ଆଦାନ ପ୍ରଦାନ ନହୋଇ ଥାଆନ୍ତା, ତେବେ ବୁଦ୍ଧିଜୀବୀ କ୍ଷୁଧାରେ ମୃତ୍ୟୁବରଣ କରନ୍ତେ ଓ ଶ୍ରମଜୀବୀ ନିଷ୍କ୍ରିୟ ହୋଇ ପଡ଼ନ୍ତେ । କୌଣସି ଏକ ବୃତ୍ତି କରୁଥିବା

ବ୍ୟକ୍ତି ଅନ୍ୟକୁ ସୁଖ ସମ୍ବନ୍ଧୀୟ ସାମଗ୍ରୀ ଦେଇ ସେ ତାଠାରୁ ନିଜର ଆବଶ୍ୟକୀୟ ବସ୍ତୁ ଲାଭକରେ । ଏହାଦ୍ୱାରା ପ୍ରତ୍ୟେକଙ୍କର ଜୀବନ ନିର୍ବାହ ସୁଖମୟ ହୋଇଥାଏ ।''

ଶ୍ରୀ ଶୁକଦେବ କହିଲେ—''ହେ ରାଜନ ! ଅନ୍ଧ ଓ ବୃଦ୍ଧ ଚ୍ୟବନ ମୁନି ସେହି ସୁନ୍ଦରୀ ସୁକୁମାରୀ ରାଜକନ୍ୟାଙ୍କୁ ପାଇ ଯେପରି ଗୃହୀ ଥିଲେ ସେପରି ସୁଖୀ ହୋଇପାରିଲେ ନାହିଁ । ବୃଦ୍ଧମାନଙ୍କର ସାଧାରଣତଃ ଲାଳସା ଅଧିକ, କିନ୍ତୁ ସେମାନଙ୍କର ଇନ୍ଦ୍ରିୟ ଗୁଡ଼ିକ ନିସ୍ତେଜ ହୋଇ ପଡ଼ିଥାନ୍ତି । ମନ ଶିଥିଳ ହୋଇ ନଥାଏ । ବୃଦ୍ଧଙ୍କ ପାଇଁ ଯୁବତୀ ସ୍ତ୍ରୀ ଏକପ୍ରକାର ବିପତ୍ତିର କାରଣ ହୁଏ । ଯଦି ଚ ସୁକନ୍ୟା ନିଜର ଶ୍ରଦ୍ଧା ଓ ସେବା ଦ୍ୱାରା ସର୍ବଦା ଭୃଗୁନନ୍ଦନ ତପସ୍ୱୀ ଚ୍ୟବନଙ୍କୁ ପ୍ରସନ୍ନ କରାଇବା ପାଇଁ ଚେଷ୍ଟାକରୁଥିଲେ କିନ୍ତୁ ବୃଦ୍ଧମୁନି କୌଣସିଥିରେ ପ୍ରସନ୍ନ ରହୁନଥିଲେ । ସେ ଗୃହୀ ଥିଲେ, କିପରି ନିଜର ତପସ୍ୟା ପ୍ରଭାବରେ ତରୁଣ ହୋଇ ଯାଆନ୍ତେ, କିନ୍ତୁ ସେ ଜାଣି ଜାଣି ଏ କାର୍ଯ୍ୟରେ ନିଜର ତପଃଶକ୍ତିକୁ ବ୍ୟୟ କରିବାକୁ ଇଚ୍ଛା କରୁ ନଥିଲେ । ଦୈବଯୋଗକୁ ଥରେ ଦେବତାମାନଙ୍କର ବୈଦ୍ୟ ଅଶ୍ୱିନୀକୁମାର ଦୁଇଭାଇ ମୁନିଙ୍କ ଆଶ୍ରମକୁ ଆସିଲେ । ସେ ଦୁହିଙ୍କର ପରିଚୟ ପାଇ ମୁନି ଉଭୟଙ୍କର ଅତି ଆଦର ସତ୍କାର କଲେ । **ବୈଦ୍ୟଙ୍କ ଦର୍ଶନ ଅଶୁଭ ବୋଲି ଶାସ୍ତ୍ରରେ କୁହାଯାଇଛି,** ଯାତ୍ରା କାଳରେ, ଶ୍ରାଦ୍ଧ କାଳରେ ଓ ଅନ୍ୟାନ୍ୟ ଶୁଭ କାର୍ଯ୍ୟରେ ଯଦି ବୈଦ୍ୟ ଆସି ଉପସ୍ଥିତ ହୁଅନ୍ତି ତେବେ ସେହି କର୍ମ ଅସମ୍ପୂର୍ଣ୍ଣ ହୁଏ, ଯଦିଚ ବୈଦ୍ୟଙ୍କ ସମ୍ବନ୍ଧରେ ଏ ପ୍ରକାର ଅଶୁଭ ଭାବ ରହିଛି, ତଥାପି ଦୁଃଖୀ, ଆତୁର, ରୁଗ୍ଣ ତଥା ଅସୁସ୍ଥ ବ୍ୟକ୍ତିଙ୍କ ପାଇଁ ବୈଦ୍ୟ ହେଉଛନ୍ତି ଜୀବନ ଦାତା । ସେହିପରି ଲୋକ କେବଳ ବୈଦ୍ୟଙ୍କୁ ସମ୍ମାନିତ ଓ ଆଦର ସତ୍କାର କରନ୍ତି । ଚ୍ୟବନ ମୁନି ସହଜେ ଅନ୍ଧ ଓ ବୃଦ୍ଧ । ତେଣୁ ବୈଦ୍ୟଙ୍କୁ ଆଦର ସତ୍କାର କରିବା ସ୍ୱାଭାବିକ ଥିଲା । ଦ୍ୱିତୀୟତଃ ସେମାନେଥିଲେ ଅତିଥି । ଚଣ୍ଡାଳଟିଏ ଯଦି ଅତିଥି ରୂପେ ଆପଣଙ୍କ ଘରକୁ ଆସେ, ତେବେ ତାଙ୍କୁ ମଧ୍ୟ ଭଗବାନ ଜ୍ଞାନକରି ଆଦର ସତ୍କାର କରିବା ଧର୍ମ । ଏଥିପାଇଁ ମୁନି ଅମର ବୈଦ୍ୟଙ୍କୁ ଅତି ଶ୍ରଦ୍ଧାର ସହିତ ସ୍ୱାଗତ ସତ୍କାର କରିଥିଲେ । କୁଶଳ ପଚାରସାରି ଅଶ୍ୱିନୀକୁମାର ଦୁଇଜଣ ମୁନିଙ୍କୁ ପଚାରିଲେ—'ହେ ମୁନିବର ! ଏହି ସୁନ୍ଦରୀ ଯୁବତୀ ଜଣକ କିଏ ?''

ଏକପ୍ରକାର ବ୍ରୀଡ଼ା ଭଙ୍ଗୀ ପ୍ରଦର୍ଶନ ପୂର୍ବକ ଚ୍ୟବନ ମୁନି କହିଲେ— ''ମହାଭାଗ ! ଆପଣମାନେ କଣ ଜାଣନ୍ତି ନାହିଁ ଯେ ମୁଁ ବିବାହ କରିଅଛି । ଏ ହେଉଛନ୍ତି ମୋର ଧର୍ମପତ୍ନୀ ।''

ଅଶ୍ୱିନୀକୁମାର ହସି ହସି କହିଲେ—''ଆଚ୍ଛା ! ତାହାହେଲେ ଏ ବୃଦ୍ଧାବସ୍ଥାରେ ଆପଣ ବିବାହ କରିବାକୁ କିପରି ଇଚ୍ଛା କଲେ ? ରାମନାମ ଜପ କରୁ କରୁ ଏ ଜଞ୍ଜାଳରେ ପୁଣି କାହିଁକି ପଡ଼ିଲେ ?''

ଚ୍ୟବନମୁନି କପାଳରେ ହାତମାରି କହିଲେ—"କଣ କରିବ ବୈଦ୍ୟବର ! ଭାଗ୍ୟ ସବୁକିଛି କରାଏ । ମୁଁ ତ ସ୍ୱପ୍ନରେ ସୁଦ୍ଧା ଭାବିନଥିଲି ଯେ ପୁନଶ୍ଚ ମୋତେ ସଂସାର ଜଞ୍ଜାଳରେ ପଶିବାକୁ ପଡ଼ିବ । ସଂସ୍କାର ଅତ୍ୟନ୍ତ ବଳବାନ୍ ।"

ଅଶ୍ୱିନୀକୁମାର ମୁନିଙ୍କୁ ଆଶ୍ୱାସନାଦେଇ କହିଲେ,"ଆସ୍ତ ଠିକ୍ ଅଛି, ଏଥିରେ କିଛି ଚିନ୍ତା କରିବାର ନାହିଁ । ଆପଣଙ୍କଭଳି ସଦାଗୃହୀ ଋଷି ମହର୍ଷିମାନେ ଯଦି ଗୃହସ୍ଥ ଧର୍ମରୁ ପୃଥକ ହୋଇଯିବେ, ତେବେ ସୁସନ୍ତାନ ଉତ୍ପନ୍ନ ହେବେ କିପରି ? ବାସ୍ତବରେ ଦେଖିବାକୁ ଗଲେ ଆପଣଙ୍କ ଭଳି ସଦାଗୃହୀ ସଂଯମୀ ତପସ୍ୱୀ ମୁନିଗଣ ହିଁ ଗୃହସ୍ଥ ଧର୍ମର ଅଧିକାରୀ ଅଟନ୍ତି । ଇନ୍ଦ୍ରିୟ ଲୋଲୁପ କୌଣସି ବ୍ୟକ୍ତି ଧର୍ମପାଳନ କରି ନପାରନ୍ତି । ଆପଣ ଆନନ୍ଦ ମନରେ ଧର୍ମପୂର୍ବକ ଗାର୍ହସ୍ଥ୍ୟ ଧର୍ମ ପାଳନ କରନ୍ତୁ, ପୁତ୍ର ପୌତ୍ର ବୃଦ୍ଧି କରନ୍ତୁ ।"

ମମତା ବିଜଡ଼ିତ ସ୍ୱରରେ ମୁନି କହିଲେ—"ମୁଁ ଧର୍ମ ପାଳନ କରିବି କିପରି ? ଆପଣତ ମୋତେ ସାହାଯ୍ୟ କରୁ ନାହାନ୍ତି । ମୁଁ ଶୁଣିଛି ଆପଣ ସର୍ବ-ସମର୍ଥ ଅଟନ୍ତି । ଆୟୁର୍ବେଦ ବିଦ୍ୟାରେ ଆପଣ ପାରଙ୍ଗମ । ଆପଣ ପତଳା ଲୋକକୁ ସ୍ୱାସ୍ଥ୍ୟବାନ କରି ପାରନ୍ତି, ରୋଗୀକୁ ନିରୋଗ, ମୋଟାକୁ ପତଳା, ଦୁଃଖୀକୁ ସୁଖୀ ଓ ବୃଦ୍ଧଙ୍କୁ ତରୁଣ କରିବାରେ ସମର୍ଥ ଅଟନ୍ତି । ଆପଣ ଯଦି ମୋତେ ବୃଦ୍ଧରୁ ତରୁଣ କରି ନ ପାରନ୍ତି, ତେବେ ମୋ ସହିତ ଆପଣଙ୍କର ମିତ୍ରତା କି ପ୍ରୟୋଜନରେ ଆସିବ ? ଆପଣ ତାହା କରି ପାରିଲେ ଆମେ ଉଭୟେ ପ୍ରକୃତ ଦମ୍ପତି ହୋଇଯିବୁ ଓ ଏହା ଦ୍ୱାରା ତୁମ୍ଭମାନଙ୍କର ପୁଣ୍ୟହେବ ।"

ଅଶ୍ୱିନୀ କୁମାର ହସି ହସି କହିଲେ—"ଦେଖନ୍ତୁ ମହାରାଜ !" ଆହାରେ ବ୍ୟବହାରେ ଚ ତ୍ୟକ୍ତ ଲଜ୍ଜା ସୁଖୀ ଭବେତ୍ । ମିତ୍ରତା ମିତ୍ରତାରେ ହିଁ ରହେ । ବ୍ୟବହାରରେ, ଜୀବିକାର୍ଜ୍ଜନରେ ଓ ବୌଦ୍ଧିକ ବୃତ୍ତିରେ କେବଳ ମିତ୍ରତା ଦ୍ୱାରା କାମ ଚଳେ ନାହିଁ । ବ୍ୟବହାର ତ ବ୍ୟବହାର ଢଙ୍ଗରେ ଚାଲେ । ଆହୁରି ମଧ୍ୟ ଆପଣ ଜାଣନ୍ତି ଯେ, ଯେ କୌଣସି ଲୋକ ସହଜରେ ମିତ୍ର ହୋଇ ପାରନ୍ତି, କିନ୍ତୁ ବଣିଆ ଓ ବୈଦ୍ୟ କାହାରି କେବେ ମିତ୍ର ହୋଇଥିବାର ଆପଣ ଦେଖିଛନ୍ତି କି ? କଥାରେ କହନ୍ତି—

"ଝଗ୍ରା ମଜୁଗ୍ରା ରୈଖାକାମ୍,
ଇସ୍ ହାଥ ଦେନା ଉସ ହାଥ ଲେନା ।"

ଘୋଡ଼ା ଯଦି ଘାସ ସହିତ ମିତ୍ରତା କରନ୍ତି, ତେବେ ଖାଇବେ କଣ ? ଆମେ ଅବଶ୍ୟ ବୃଦ୍ଧରୁ ତରୁଣ କରି ପାରିବୁ, ଏକ ଅଙ୍ଗ କାଟି ଅନ୍ୟ ଅଙ୍ଗ ଲଗାଇ ପାରିବୁ, ଅକାଳରେ ମୃତ୍ୟୁ ବରଣ କରିଥିବା ଲୋକକୁ ବଞ୍ଚାଇ ଦେଇ ପାରିବୁ, ରୋଗୀକୁ ନିରୋଗ

କରି ପାରିବୁ ଓ ଆପଣଙ୍କୁ ଯୁବକରେ ପରିଣତ କରି ପାରିବୁ, କିନ୍ତୁ ଏହା କରିବା ଦ୍ୱାରା ଆମର ଲାଭ କଣ ହେବ ? ଆପଣ ତ୍ୟାଗୀ, ବୈରାଗୀ ହୋଇଥିଲେ ଆମେ ବିନା ମୂଲ୍ୟରେ ଚିକିତ୍ସା କରି ଥାଆନ୍ତୁ, ଆପଣ ଯେତେବେଳେ ଗୃହସ୍ଥ ହୋଇ ଯାଇଛନ୍ତି, ସେ କ୍ଷେତ୍ରରେ ନିଃଶୁଳ୍କ ଚିକିତ୍ସା କରିବା ଆମ ପକ୍ଷେ ଅପମାନର କାରଣ ହେବ ଓ ଏହା ମଧ୍ୟ ଆପଣଙ୍କୁ ଶୋଭା ପାଇବ ନାହିଁ ।''

ଚ୍ୟବନ ମୁନି କହିଲେ ''ଆପଣ ସେ ବିଷୟରେ ଆଦୌ ଚିନ୍ତା କରନ୍ତୁ ନାହିଁ । ଆପଣ ଯାହା ଚାହିଁବେ ମୁଁ ତାହା ଦେବି । ଆପଣ ଯେଉଁ ଦକ୍ଷିଣା ଚାହାନ୍ତି ତାହା ମୁଁ ଦେବାକୁ ପ୍ରସ୍ତୁତ ଅଛି । ମୋର ଏଥିରେ କୌଣସି ଆପତ୍ତି କରିବାର ନାହିଁ ।''

ଅଶ୍ୱିନୀ କୁମାର ଦ୍ୱୟ କହିଲେ—''ଦେଖନ୍ତୁ ମହାରାଜ ! ଆମେ ଟଙ୍କା ପଇସା ଦକ୍ଷିଣା ସ୍ୱରୂପ ନେବାକୁ ଚାହୁଁ ନାହୁଁ । ଯାହାର ଯେଉଁ ଦ୍ରବ୍ୟ ଆବଶ୍ୟକ, ତାହା ତାଙ୍କୁ ପ୍ରଦାନ କରିବା ସବୁଠାରୁ ବଡ଼ ଦକ୍ଷିଣା । ଆମର ସମ୍ମାନ ଆବଶ୍ୟକ । ଦେବରାଜ ଇନ୍ଦ୍ର ବୈଦ୍ୟ ବୃତ୍ତିକୁ ଅଧମ ବୃତ୍ତି ବୋଲି କହି ଆମକୁ ଦେବତାମାନଙ୍କ ପଙ୍‌କ୍ତିରୁ ବହିଷ୍କୃତ କରି ଅଛନ୍ତି । ଯଜ୍ଞ ଓ ଉତ୍ସବରେ ସେମାନେ ଆମକୁ ନିଜ ପଙ୍‌କ୍ତିରେ ବସାଇ ଏକାଠି ଭୋଜନ କରିବାକୁ ଦେଉ ନାହାନ୍ତି । ବୈଦ୍ୟ ବିଦ୍ୟା ଯଦି ଅଧମ ବିଦ୍ୟା, ଶୋକାକୁଳ ରୋଗୀମାନଙ୍କ ଠାରୁ ଅର୍ଥ ନେବାକୁ ହୋଇଥାଏ । ଏହା ଅତି ନିନ୍ଦାର ବିଷୟ ହେଲେ ମଧ୍ୟ ପେଟ ପୋଷିବାକୁ ତ ପୁଣି ପଡ଼ିବ । ଆହୁରି ମଧ୍ୟ ଆମେ ଲୋକଙ୍କର କେତେ ଉପକାର ନ କରୁଛୁ । କାନ୍ଦିବା ଲୋକର ମୁଖରେ ଆମେ ହସ ଫୁଟାଇ ପାରୁଛୁ, ଦୁଃଖୀଙ୍କୁ ସୁଖୀ କରି ପାରୁଛୁ । ରୋଗୀ ଆମକୁ ଦେଖିବା କ୍ଷଣି ତାର ରୋଗ ଯନ୍ତ୍ରଣା ଲାଘବ ହୋଇ ଯାଉଛି ଓ ସେ ଖୁସି ହେଉଛି । ତେଣୁ ଆମେ ଆପଣଙ୍କ ଠାରୁ ଏତିକି ଚାହୁଁ ଯେ, ଆପଣ ଆମକୁ ଦେବତାମାନଙ୍କ ପଙ୍‌କ୍ତିରେ ବସିବାର ଅଧିକାର ପ୍ରଦାନ କରନ୍ତୁ । ଯାଗ ଯଜ୍ଞ କରାଉଥିବା ବ୍ୟକ୍ତି ତ ଆପଣଙ୍କ ଭଳି ମୁନି ଋଷିଙ୍କ ଆବାହନରେ ହିଁ ଦେବତାମାନେ ଧାଇଁ ଆସନ୍ତି । ଆପଣ ଯଦି ଆମକୁ ପଙ୍‌କ୍ତିରେ ବସାଇ ଭୋଜ ପ୍ରଦାନ କରାନ୍ତି, ତେବେ ଆମକୁ ପଙ୍‌କ୍ତିରୁ ଉଠାଇଦେବାକୁ ସାମର୍ଥ୍ୟ କାହାର ?

ଏହି କଥା ଶୁଣି ଚ୍ୟବନ ମୁନି ଦୃଢ଼ତାର ସହିତ କହିଲେ - ''ଆଚ୍ଛା, ଠିକ ଅଛି ଏହି କଥା ତ ? ଏଇଟା ଏମିତି କେଉଁ ବଡ଼ କଥାଟାଏ ଯେ ଆପଣ ଏତେ ବ୍ୟସ୍ତ ହୋଇ ପଡ଼ୁଛନ୍ତି, ମୁଁ କଥା ଦେଉଛି । ଦେବତାଙ୍କ ପଙ୍‌କ୍ତିରେ କାହିଁକି ? ଆପଣଙ୍କୁ ଇନ୍ଦ୍ରଙ୍କ ସହିତ ଏକାଠି ବସାଇ ଖୁଆଇବି । ସମସ୍ତଙ୍କ ଆଗରେ ଆପଣଙ୍କ ଯଜ୍ଞ ଭାଗ ପ୍ରଦାନ କରାଯିବ, ମୁଁ ଆନନ୍ଦ ମନରେ ଏହା ସ୍ୱୀକାର କରୁଅଛି, ଆପଣ ମୋତେ ବୃଦ୍ଧରୁ ଯୁବକ କରି ଦିଅନ୍ତୁ ।''

ମୁନିଙ୍କ କଥା ଶୁଣି ଅଶ୍ୱିନୀ କୁମାର ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଏକ କୁଣ୍ଡ ନିର୍ମାଣ କଲେ । ସେଥିରେ ଅନେକ ପ୍ରକାର ଔଷଧ ପକାଇଲେ ଓ କହିଲେ— "ମୁନିବର ! ଗୃହିଣୀ ଆପଣଙ୍କ କାୟା କଳ୍ପ କରାଇ ନେବେ, ଆମେ ଆପଣଙ୍କୁ ପରମ ସୁକୁମାର ତରୁଣ ଯୁବକରେ ପରିଣତ କରିଦେବୁ ।"

ଏହା କହି ଜଣେ ମୁନିଙ୍କର ଏକ ହାତ ଧରିଲେ ଓ ଅନ୍ୟ ଭାଇ ଜଣକ ଅନ୍ୟ ହାତ ଧରିଲେ । ସେ ଦୁହେଁ ମୁନିଙ୍କୁ ସଙ୍ଗରେ ନେଇ ତିନି ଜଣ ଯାକ ସେହି ମହୌଷଧି ଦ୍ୱାରା ନିର୍ମିତ ସିଦ୍ଧ କୁଣ୍ଡ ମଧ୍ୟକୁ ପ୍ରବେଶ କଲେ । କୁଣ୍ଡରେ ପ୍ରବେଶ କରିବା ପୂର୍ବରୁ ମୁନିଙ୍କ ଶରୀର ଅତ୍ୟନ୍ତ କ୍ଷୀଣ, ଅସ୍ଥିକଙ୍କାଳ ସାର ଓ ରକ୍ତବାହୀ ଶିରାର ଜାଲ ମାତ୍ର ଥିଲା । ଅଶ୍ୱିନୀ କୁମାର କିଛି ସମୟ ପର୍ଯ୍ୟନ୍ତ ମୁନିଙ୍କୁ ସେହି କୁଣ୍ଡରେ ବୁଡ଼ାଇ ରଖିଲେ । କିଛି ସମୟ ପରେ ସେ ତିନିହେଁ ଭାସି ଉଠିଲେ । ସୁକନ୍ୟାର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ତିନି ପୁରୁଷଙ୍କର ଆକୃତି, ପ୍ରକୃତି, ରୂପ, ରଙ୍ଗ, ହସ ଓ ସ୍ୱର ଏକ ପ୍ରକାରର ଥିଲା । ତିନିଜଣ ଯାକ ଅତି ସୁନ୍ଦର ଥିଲେ । ତିନି ଜଣ ଯାକ ମଧ୍ୟ ଅତି ମନୋହର ସୁଗନ୍ଧ ଯୁକ୍ତ ପଦ୍ମ ଫୁଲର କମନୀୟ ମାଳା ଧାରଣ କରିଥିଲେ, ତିନି ଜଣଙ୍କର କର୍ଣ୍ଣରେ କନକର କୁଣ୍ଡଳ ଝଟକୁ ଥିଲା । ତିନିହେଁ ସୁନ୍ଦର ସୁନ୍ଦର ବସ୍ତ୍ର ଆଭୂଷଣରେ ସୁସଜ୍ଜିତ ହୋଇଥିଲେ । ତିନିହେଁ ସୂର୍ଯ୍ୟଙ୍କ ଭଳି ତପସ୍ୱୀ ଓ ପ୍ରଭାବାନ୍ ଥିଲେ । ସେ ଏକ ପ୍ରକାରର ଆକୃତି ବିଶିଷ୍ଟ ପରମ ପ୍ରଭାବାନ ପୁରୁଷଙ୍କୁ ଦେଖି ସୁମଧ୍ୟମା ସତୀ ସାଧ୍ୱୀ ସୁକନ୍ୟା କିଂକର୍ତ୍ତବ୍ୟବିମୂଢ଼ାଙ୍କ ପରି ହୋଇଗଲେ । ସେ ଏହି ତିନିଜଣଙ୍କ ମଧ୍ୟରୁ କିଏ ତାଙ୍କର ପତି, ତାହା ନିର୍ଣ୍ଣୟ କରି ପାରିଲେ ନାହିଁ ।"

ସେହି ତିନି ଜଣଙ୍କ ମଧ୍ୟରୁ ଜଣେ କହିଲେ—"ସୁମଧ୍ୟମେ ! ଆମ ତିନି ଜଣଙ୍କ ମଧ୍ୟରୁ ତୁମେ ଯାହାକୁ ଚାହଁ ବରଣ କରି ନିଅ ।"

ସୁକନ୍ୟା କହିଲେ—"ମହାନୁଭବେ ! ମୁଁ ତ କୁମାରୀ ନୁହେଁ ଯେ ସ୍ୱୟଂ ବର ନିର୍ବାଚନ କରିବି ? ମୁଁ ତ ଋଷିପତ୍ନୀ ମୋର ବର ବରଣ କରିବା ଉଚିତ ନୁହେଁ । ମୋର ପତି ଅଛନ୍ତି । କୃପାକରି ମୋର ପତିଙ୍କୁ ପୃଥକ୍ କରି ଦିଅନ୍ତୁ ।"

ସେମାନଙ୍କ ମଧ୍ୟରୁ ଜଣେ କହିଲେ—"ତୁମେ ନିଜେ ଯାହାଙ୍କୁ ପତି ବୋଲି ମନେ କରୁଛ, ତାଙ୍କ ହାତ ଧରି ନିଅ ।"

ଏକଥା ଶୁଣିବାକ୍ଷଣି ସୁକନ୍ୟା ଅତି ମଧୁର ବାଣୀରେ ଅଶ୍ୱିନୀ କୁମାରଙ୍କୁ ପିତା-ରୂପେ ସ୍ତୁତି କଲେ । ତାଙ୍କ ସ୍ତୁତିରେ ଦେବତାମାନଙ୍କର ବୈଦ୍ୟ ଅଶ୍ୱିନୀ କୁମାର ପ୍ରସନ୍ନ ହେଲେ ଓ କହିଲେ—"ସୁକନ୍ୟେ ! ଆମେ ତୁମର ପାତିବ୍ରତ୍ୟରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛୁ । ଏହି ହେଉଛନ୍ତି ତୁମର ପତି ଭଗବାନ୍ ଚ୍ୟବନ । ତୁମେ ସେ

କେବଳ ସେବା ସୁଶ୍ରୁଷା ତଥା ବିନୟ ପ୍ରଭାବରେ ନିଜର ପତିଙ୍କୁ ସନ୍ତୁଷ୍ଟ କରି ପାରିଥିଲ, ତାହା ନୁହେଁ, ବରଂ ନିଜର ସ୍ୱାମୀଙ୍କୁ ବୃଦ୍ଧରୁ ଯୁବକରେ ପରିଣତ କରିପାରିଲ । ତୁମର ଅକ୍ଷୟ ସୌଭାଗ୍ୟ ରହିବ ଓ ତୁମେ ତପସ୍ୱୀପୁତ୍ରର ଜନନୀ ହେବ।"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ଏହିପରି ଆଶୀର୍ବାଦ ପ୍ରଦାନ କରି ଅଶ୍ୱିନି କୁମାର ନିଜ ବିମାନରେ ବସି ସ୍ୱର୍ଗ ଲୋକକୁ ଯାତ୍ରା କଲେ ଓ ମୁନି ଚ୍ୟବନ ନିଜର ପତ୍ନୀ ସୁକନ୍ୟାଙ୍କ ସହିତ ପ୍ରେମ ଓ ଆନନ୍ଦରେ ବିହାର କରି କାଳଯାପନ କରିବାକୁ ଲାଗିଲେ ।"

## ଛପ୍ପୟ

କହେଂ ଅଶ୍ୱିନୀକୁମାର—ହମେଂହୂ ସୋମ ପିଆଓ ।
ସୋମ ମଖନିମହିଁ ସଦା ଦେବ ପଂଗତ ବୈଠାଓ ॥
ସ୍ୱୀକାରୀ ୟହ ବାତ କୁଣ୍ଡମହିଁ ଚ୍ୟବନ ନହୁବାୟେ ।
ଆୟୁର୍ବେଦ ପ୍ରଭାବ ବୃଦ୍ଧ ତେଂ ୟୁବକ ବନାୟେ ॥
ଭୟେ ଏକସେ ତୀନ୍ ନର, ବିନୟ ସୁକନ୍ୟାନେ କରୀ ।
ଅତି ପ୍ରସନ୍ନ ସୁରଭିଷକ୍ ହ୍ୱୈ, ଚ୍ୟବନ ଦୟେ ମାୟାହରୀ ॥



# ଚ୍ୟବନ ମୁନିଙ୍କର ପ୍ରତିଜ୍ଞା ପାଳନ

**ସୋମେନ ଯାଜୟନ୍ ବୀରଂ ଗ୍ରହଂ ସୋମସ୍ୟ ଚାଗ୍ରହୀତ୍ ।**
**ଅସୋମପୋରପ୍ୟଶ୍ୱିନୋଶ୍ଚ୍ୟବନଃ ସ୍ୱେନ ତେଜସା ॥**

(ଶ୍ରୀ : ଭା : ୯ମ ସ୍କନ୍ଧ, ୩ୟ : ଅ, ୨୪ଶ ଶ୍ଳୋକ)

**ଛପ୍‌ପୟ**

କରିକେଂ ମୁନିକୁଁ ତରୁଣ ଗୟେ ତୁକହାପୁର ଜବହୀ ।
ଆୟେ ନୃପ ଶର୍ଯ୍ୟାତି ଚ୍ୟବନ ମୁନି ଆଶ୍ରମ ତବହୀଂ ॥
ତରୁଣ ନିକଟ ନିଜ ସୁତା ନିରଖି ନୃପ ଅତି ଦୁଃଖ ପାୟୋ ।
ହ୍ୱୈ ପ୍ରସନ୍ନ ବୃତ୍ତାନ୍ତ ସୁକନ୍ୟା ସବ ସମୁଝାୟୋ ॥
ସୁତା ବଚନ ଶର୍ଯ୍ୟାତି ସୁନି, ମୁନି ତନୁ ଲଖି ପ୍ରମୁଦିତ ଭୟେ ।
ମଖ ହିତ କନ୍ୟା ସହିତ ମୁନି-ବରକୁଁ ଲୈ ନିଜପୁର ଗୟେ ॥

ବ୍ୟବହାରରେ ତାହାକୁ ସତ୍ୟ ବୋଲି କୁହାଯାଏ, ଯାହା ଯେ କହିଦେଇ-ଥାଏ, ଯେ ଯେଉଁ କଥାରେ ପ୍ରତିଜ୍ଞାବଦ୍ଧ ହୋଇଥାଏ, ଶକ୍ତି ଥିବା ପର୍ଯ୍ୟନ୍ତ ତାହା ଅବଶ୍ୟ ପାଳନ କରିଥାଏ । ଯେ କାର୍ଯ୍ୟ ହାସଲ କରିବା ସମୟରେ ବିନୀତ ହୋଇ କାର୍ଯ୍ୟ ସାଧନ ହୋଇଯିବା ପରେ ଆଦୌ ପଚ୍ଚରେ ନାହିଁ, ଏ ପ୍ରକାର ସ୍ୱାର୍ଥପର ଲୋକ କଦାପି ବ୍ୟବହାରରେ ସଫଳକାମ ହୁଅନ୍ତି ନାହିଁ । ବିଶ୍ୱାସ ଉପରେ ବ୍ୟବହାର କରାଯାଏ । ଯାହାକୁ ଲୋକମାନେ ଅଧିକ ବିଶ୍ୱାସ କରି ଯାଇଛନ୍ତି ବା ଯାହାଙ୍କ ପ୍ରତି ଲୋକଙ୍କର ଆସ୍ଥା ଅଛି, ସେ ନିର୍ଦ୍ଧନ ହୋଇଥିଲେ ମଧ ଧନୀ । ଯାହାଙ୍କ ଉପରୁ ଲୋକଙ୍କର ବିଶ୍ୱାସ ତୁଟି ଯାଇଛି, ସେ ଧନୀ ହୋଇଥିଲେ ବି ନିର୍ଦ୍ଧନ । ବିଶ୍ୱାସ ସେତିକବେଳେ ଆସିଥାଏ, ଯେତେବେଳେ-କି ଆମେ ଯାହାକୁ ଯାହା କହିଥାଉ, ତାହା କଥା ଅନୁସାରେ ପାଳନ କରୁଁ ।

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ଯେତେବେଳେ ଅଶ୍ୱିନୀକୁମାର ମହାମୁନିଙ୍କୁ ତରୁଣରେ ପରିଣତ କରି ଦେବଲୋକକୁ ପ୍ରତ୍ୟାବର୍ତ୍ତନ କଲେ, ସେତେ-

ବେଳେ ମହର୍ଷି ନିଜର ପ୍ରିୟ ସୁକୁମାରୀ ରାଜକୁମାରୀ ସୁକନ୍ୟାଙ୍କ ସହିତ ଦେବତାମାନଙ୍କ ଭଳି ବିହାର କରିବାକୁ ଲାଗିଲେ । ସେତେବେଳେ ଉଭୟଙ୍କର ତରୁଣ ଅବସ୍ଥା ଥିଲା । ଉଭୟଙ୍କ ମଧ୍ୟରେ ପରସ୍ପର ପ୍ରତି ଅନୁରାଗ ମଧ୍ୟ ଥିଲା । ତପ ପ୍ରଭାବରୁ ସେ ବୈଭବଶାଳୀ ଥିଲେ । ତାଙ୍କର ଏହି ଐଶ୍ୱର୍ଯ୍ୟକୁ ଦେଖି ଇନ୍ଦ୍ର ଈର୍ଷାନ୍ୱିତ ହେବାକୁ ଲାଗିଲେ । ସ୍ୱର୍ଗ-ଲୋକର ଦେବୀ ତଥା ଅପ୍ସରାଗଣ ସୁକନ୍ୟାଙ୍କ ଭାଗ୍ୟର ଭୂରି ଭୂରି ପ୍ରଶଂସା କରିବାକୁ ଲାଗିଲେ ଓ ତାଙ୍କ ତୁଳନାରେ ନିଜର ରୂପ, ସୌନ୍ଦର୍ଯ୍ୟ ଓ ଶୀଳକୁ ତୃଣବତ୍ ତୁଚ୍ଛଜ୍ଞାନ କଲେ ।"

ଏଣେ ମହାରାଜ ଶର୍ଯାତିଙ୍କ ମନରେ ଏକ ଯଜ୍ଞ କରିବାର ଇଚ୍ଛା ବଳବତୀ ହୋଇଥାଏ । ସେ ଚିନ୍ତା କଲେ ବହୁଦିନରୁ ମୁଁ ସୁକନ୍ୟାକୁ ଦେଖିନାହିଁ । ତା ଖବର ଅନ୍ତର ମୋତେ ଜଣା ନାହିଁ । ମୁଁ ନିର୍ଜନ ଅରଣ୍ୟ ମଧ୍ୟରେ ଭାଗ୍ୟ ଉପରେ ନିର୍ଭର କରି ତାକୁ ଛାଡ଼ି ଆସିଥିଲି । ଯୁବାବସ୍ଥା ଅତି କନ୍ଦର୍ପ ଅବସ୍ଥା ସୁକନ୍ୟା ରାଜମହଲ ମଧ୍ୟରେ ଅତି ସୁଖରେ ଲାଳିତପାଳିତ ହୋଇଥିଲା । ମୋତେ ଜଣାନାହିଁ ଯେ, ସେ ସେଠାରେ ପ୍ରସନ୍ନ ଚିତ୍ତରେ ଅଛି ବା ଦୁଃଖରେ ଅଛି । ଯାଏଁ, ଟିକିଏ ତାକୁ ନିଜ ଆଖିରେ ଦେଖି ଆସେ ଓ ଝିଅ ଓ ଜ୍ୱାଇଁ ଉଭୟଙ୍କୁ ଯଜ୍ଞକୁ ବରଣ କରି ଆଣେ । ଶୁଣାଯାଏ, ଚ୍ୟବନ ଋଷି କର୍ମକାଣ୍ଡରେ ଅତି ନିପୁଣ । ସେ ବେଦଜ୍ଞ, ତପୋନିଧି ତଥା ସର୍ବସମର୍ଥ ଅଟନ୍ତି । ନହେଲାବେଳକୁ ତାଙ୍କୁ ହିଁ ଯଜ୍ଞ କର୍ମରେ ଆଚାର୍ଯ୍ୟ କରିଦେବି । ସେ ବିଧିବିଧାନ ଅନୁସାରେ ଯଜ୍ଞ କର୍ମ ସମ୍ପାଦନା କରାଇବେ । ଏହିପରି ଚିନ୍ତା କରି ସେ ରାଣୀଙ୍କ ସହିତ ମୁନିଙ୍କୁ ଦେଖିବାପାଇଁ ବାହାରିଲେ । ମୁନିଙ୍କ ଆଶ୍ରମର ଶୋଭା ସେତେବେଳେ ଅତି ଚିତ୍ତାକର୍ଷକ ଥିଲା । ପୂର୍ବପରି ଝାଡ଼ ଜଙ୍ଗଲ ପୂର୍ଣ୍ଣ ନଥିଲା । ଧାଡ଼ି ଧାଡ଼ି ବୃକ୍ଷ ଲଗାଯାଇ ଶୋଭା ବର୍ଦ୍ଧନ କରୁଥିଲା । ପାଟଳି, ପାରିଜାତ, ଚମ୍ପା ଓ ଗନ୍ଧରାଜ ଆଦି ସୁବାସିତ ପୁଷ୍ପ ଗଛ ରାସ୍ତାର ଉଭୟ ପାର୍ଶ୍ୱରେ ଲଗାଯାଇ ଥିଲା । ସେହି ସବୁ ପୁଷ୍ପର ସୁଗନ୍ଧରେ ଆଶ୍ରମଟି ମହକି ଉଠୁଥିଲା । ଆମ୍ବ, ପଣସ, ଜାମୁ, ସେଓ, ପିଜୁଳି ଆଦି ଫଳବାନ୍ ବୃକ୍ଷରାଜି ଫଳ ଭାରରେ ନଇଁଆସି ଏପରି ଶୋଭା ପାଉଥିଲେ, ଯେତେ ଯେପରି ମୁନିଙ୍କ ବିନମ୍ରୀ ଶିଷ୍ୟ ସର୍ବଥା ଅତିଥି ସେବା ପାଇଁ ଉତ୍ସାହର ସହିତ ସେମାନଙ୍କ ଆଗମନର ପ୍ରତୀକ୍ଷାରେ ନତମସ୍ତକ ହୋଇ ଦଣ୍ଡାୟମାନ ହୋଇଛନ୍ତି । ଆଶ୍ରମରେ ବ୍ରାହ୍ମୀ ଶ୍ରୀଙ୍କର ସାମ୍ରାଜ୍ୟ ବିସ୍ତାର ହୋଇଥିଲା । ସ୍ଥାନେ ସ୍ଥାନେ ଦେବପୀଠ ନିର୍ମିତ ହୋଇଥିଲା । ଯଜ୍ଞଶାଳାରେ ସୁଗନ୍ଧ ବହନ କରି ଗନ୍ଧବହ କପୋତ ବର୍ଣ୍ଣର ଧୂମ୍ରକୁଣ୍ଡଳୀ ଆକାରରେ ଆକାଶକୁ ଉଠୁଥିଲା ଓ ସୁଗନ୍ଧ ନିଧିକୁ ଊର୍ଦ୍ଧ୍ୱଦେଶରେ ଦଶଦିଗକୁ ବିତରଣ କରୁଥିଲା । ଆଜି ସେହି ଆଶ୍ରମକୁ ଦେଖି ରାଜା ବିସ୍ମୟ, ଆନନ୍ଦ ଓ ଶଙ୍କାର ସହିତ ତାହା ନିରୀକ୍ଷଣ କରି କରି ବୁଲୁଥିଲେ । ଏହି ସମୟରେ ନିଜ ସମ୍ମୁଖରେ ସେ ପୁଷ୍ପଲତା କୁଞ୍ଜରେ ଲମ୍ପା ପୋଛା ହୋଇଥିବା ନିର୍ମଳ ଚଉତରା ଉପରେ ଥିବା ପର୍ଣ୍ଣକୁଟୀର ସମୀପରେ

ଦେବାଙ୍ଗନାଙ୍କ ଭଳି ବସ୍ତ୍ରାଭୂଷଣ ଦ୍ୱାରା ସୁସଜ୍ଜିତ ନିଜର କନ୍ୟାକୁ ଦେଖିଲେ । ତା ସହିତ ଏକ ତରୁଣ ଦେବକୁମାର ସଦୃଶ ପୁରୁଷ ବସି ହସ-ବିନୋଦ କରୁଥିଲେ । ସରସତାର ସାଗର ଉଚ୍ଛୁଳି ଉଠୁଥିଲା । ନିଜ ପିତା ଆସୁଥିବାର ଦୂରରୁ ଦେଖିପାରି ସୁକନ୍ୟା ନିଜ ପତିଙ୍କ ପାଖରୁ ଉଠିପଡ଼ିଲା । ସେ ନିଜର ବସ୍ତ୍ରଭୂଷଣ ସଜାଡ଼ି ନେଇ ଅଧୋମୁଖ ହୋଇ ଆଗେଇ ଆସିଲା । ଛଳ ଛଳ ନେତ୍ରରେ ସେ ପିତାଙ୍କ ଚରଣରେ ପ୍ରଣାମ କଲା, କିନ୍ତୁ ସେହି କନ୍ୟା ସୁକନ୍ୟାର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ପ୍ରଣାମ କଲାପରେ ମଧ୍ୟ ଆଜି ତାର ପିତା ତାକୁ ଆଶୀର୍ବାଦ କରୁନାହାନ୍ତି ପଦେ ହେଲେ କଥା କହୁ ନାହାନ୍ତି, ତାକୁ ନିଜ ହୃଦୟରେ ଆଲିଙ୍ଗନ କରି ତାହାର ଶିର ଆଘ୍ରାଣ କରୁନାହାନ୍ତି କିମ୍ବା ସ୍ନେହରେ ଆଜି ତା କେଶକୁ ଆଉଁସୁ ନାହାନ୍ତି । ସେ କେବଳ କ୍ରୁଦ୍ଧ ସର୍ପ ଭଳି ସୁକନ୍ୟା ଆଡ଼କୁ ଚାହିଁ ଠିଆ ହୋଇ ରହିଛନ୍ତି । ଏହା ଦେଖି ସୁକନ୍ୟା ଭୟଭୀତ ହୋଇଗଲା । ସେ ଲଜ୍ଜା ଓ ଦୁଃଖରେ ବାରମ୍ବାର ଭୂମିକୁହିଁ ଚାହିଁବାରେ ଲାଗିଲା । ବାପାଙ୍କ ପଛରେ ଠିଆ ହୋଇଥିବା ନିଜର ମାତାଙ୍କୁ ପ୍ରଣାମ କରିବାକୁ ମଧ୍ୟ ସେ ସାହସ କଲା ନାହିଁ ।

ପିତା ଅତ୍ୟନ୍ତ ଦୁଃଖବଶତଃ ରାଗରେ ଜର୍ଜ୍ଜରିତ ହୋଇ କଡ଼ା କଡ଼ା ସ୍ୱରରେ କହିଲେ—"ସୁକନ୍ୟା ! ମୁଁ ଜାଣିଥିଲି ତୁ ଆମ କୁଳର କୀର୍ତ୍ତି ଉଜ୍ଜ୍ୱଳ କରିବୁ, ଋଷିପତ୍ନୀ ହୋଇ ଆମ ଯଶକୁ ବିସ୍ତାର କରିବୁ, କିନ୍ତୁ ମୁଁ ଦେଖୁଛି, ତୁ ତ ଆମ କୁଳରେ କଳଙ୍କ ଲଗାଇ ଦେଇଛୁ । ତୁ ଏତେ କୁଳୀନ କୁମାରୀ ହୋଇ ଟିକିଏ ହେଲେ ସଂଯତ ହୋଇ ପାରିଲୁ ନାହିଁ । ତୋର ପତି ବୃଦ୍ଧହେଲେ କଣ ହେଲା, ସେ ତ ଜଣେ ଋଷିଥିଲେ । ତପସ୍ୟାର ସମୁଦ୍ର ଥିଲେ,ସେ ତପସ୍ୟା ପ୍ରଭାବରେ ଯାହା ଚାହିଁଥାଆନ୍ତେ ତାହା କରିପାରି ଥାଆନ୍ତେ । ଯଦି ତୁ ଶ୍ରଦ୍ଧା ସହକାରେ ତାଙ୍କର ସେବା କରିଥାନ୍ତୁ, ତେବେ ତୋର ସକଳ ମନୋରଥ ପୂର୍ଣ୍ଣହୋଇ ପାରିଥାଆନ୍ତା । ଉଭୟ ଲୋକରେ ତୁ ସୁଖ ଶାନ୍ତି ପାଇ ପାରିଥାଆନ୍ତୁ । ଇହ ଲୋକରେ ଐଶ୍ୱର୍ଯ୍ୟ ଭୋଗକରି ପରଲୋକରେ ପୁଣ୍ୟର ଅଧିକାରିଣୀ ହୋଇ ପାରିଥାନ୍ତୁ । ତାଙ୍କର ସେବା କରିବା ତୋର ପରମ ଧର୍ମଥିଲା । ତୁ ତାହା ନକରି ଲାଳସା ବଶବର୍ତ୍ତୀ ହୋଇ ଏହି ପର ପୁରୁଷ ସହିତ ସମ୍ବନ୍ଧ ସ୍ଥାପନ କଲୁ ? ସେ ଅନ୍ଧ ତଥା ବୃଦ୍ଧ ମୁନିଙ୍କୁ ତୁ ବଞ୍ଚନା କଲୁ ? ବିଷୟ ପ୍ରତି ଆସକ୍ତ ହୋଇ ତୁ ସେହି ଦେବପ୍ରତିମ ମୁନିଙ୍କୁ ପରିତ୍ୟାଗ କରିଦେଲୁ ? ଛି, ଛି, ଏହା ଅତ୍ୟନ୍ତ ଦୁଃଖର କଥା । ଆଜିଠାରୁ ମୁଁ ଜାଣିଲି ତୁ ମୋର କନ୍ୟା ନୋହୁ କି ମୁଁ ତୋର ପିତାନୁହେଁ । ତୋର ମନକୁ ଯାହା ଆସୁଛି, ତୁ ତାହା କର ।"

ସୁକନ୍ୟା ପ୍ରଥମେ ପିତାଙ୍କ କ୍ରୋଧର କାରଣ ଜାଣି ନପାରି ଥିବାରୁ ସେ ଅତ୍ୟନ୍ତ ଦୁଃଖିତ ହୋଇଥିଲା । କିନ୍ତୁ ଯେତେବେଳେ ସେ ଜାଣିଲା ଯେ ପିତା ଏହି ମହାତ୍ମାଙ୍କୁ ଚିହ୍ନିନପାରି ସନ୍ଦେହରେ ମୋତେ ତିରସ୍କାର କରୁଛନ୍ତି, ସେତେବେଳେ ସେ

ହସି ହସି ବେଦମ ହୋଇଗଲି । ସେ ହସ ହସ ବଦନରେ କହିଲି—"ବାପା ! ଆପଣ କଣ କହି ଯାଉଛନ୍ତି ? ଆପଣ କଣ ଚିହ୍ନି ପାରୁନାହାନ୍ତି ? ଯାହାଙ୍କ ହାତରେ ଆପଣ ମୋତେ ସମର୍ପଣ କରିଥିଲେ, ଏ ହେଉଛନ୍ତି ସେହି ଭୃଗୁନନ୍ଦନ ଭଗବାନ ଚ୍ୟବନ । ଏହି ହିଁ ଆପଣଙ୍କର ଜାମାତା ।"

ରାଜା ଚମକିପଡ଼ି ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ—"ସତେ ! ଭଗବାନ୍ ଚ୍ୟବନ ମୁନି ସ୍ୱୟଂ ନିଜର କାୟାକଳ୍ପ କରି ନେଇଛନ୍ତି ? ମା ! ତୁ ବଡ଼ ଭାଗ୍ୟଶାଳିନୀ ଅଟୁ । ଏହା କହି ସେ ପ୍ରଥମେ କନ୍ୟାକୁ ଆଲିଙ୍ଗନ କଲେ ଓ ସେଠାରୁ ଧାଇଁଯାଇ ମୁନିଙ୍କ ପାଦ ଧରି ପକାଇଲେ । ସୁକନ୍ୟା ମାତାଙ୍କୁ ପ୍ରଣାମକରି ଆଶ୍ରମକୁ ପାଛୋଟି ଆଣିଲି । ମହାମୁନି ଚ୍ୟବନ ଉଠି ଆସି ମହାରାଜ ଶର୍ଯ୍ୟାତିଙ୍କର ସତ୍କାର କଲେ । ତାଙ୍କୁ ଅର୍ଘ୍ୟ ପ୍ରଦାନ କଲେ । ଫଳ ମୂଳରେ ତାଙ୍କର ସତ୍କାର କରି ସୁନ୍ଦର ଆସନରେ ନେଇ ବସାଇଲେ । ରାଣୀ ମଧ୍ୟ ତାଙ୍କ ସମୀପରେ ବସିଲେ ।"

ସେତେବେଳେ ରାଜା କହିଲେ—"ଭଗବାନ୍ ! ଏହି କାୟାକଳ୍ପ କିପରି କଲେ ?"

ମୁନି ହସି ହସି କହିଲେ—"ମହାରାଜ ! ଆପଣଙ୍କ କନ୍ୟାକୁହିଁ ସେ କଥା ପଚାରନ୍ତୁ ।"

ରାଜା ପଚାରିବାରୁ ସୁକନ୍ୟା ଆମୂଳଚୂଳ ସବୁକଥା କହିଗଲି । ଅଶ୍ୱିନୀକୁମାର କିପରି ଆସିଲେ, କିପରି ଆଦାନ ପ୍ରଦାନ ବିଷୟ ସାବ୍ୟସ୍ତ ହେଲା ଓ କିପରି ଔଷଧ କୁଣ୍ଡ ମଧ୍ୟରେ ସେମାନେ ସ୍ନାନ କଲେ ଏବଂ କନ୍ୟାର ପାତିବ୍ରତ୍ୟ କିପରି ପରୀକ୍ଷା କଲେ, ସମସ୍ତ କଥା ନିଜ କନ୍ୟା ମୁହଁରୁ ଶୁଣି ଶର୍ଯାତିଙ୍କର ହର୍ଷର ସୀମା ରହିଲା ନାହିଁ । ତାଙ୍କ ନୟନରୁ ପ୍ରେମାଶ୍ରୁ ବହିବାକୁ ଲାଗିଲା । ସେ ନିଜର କନ୍ୟାକୁ ବାରମ୍ବାର ସ୍ନେହରେ ଆଲିଙ୍ଗନ କଲେ ଓ କହିଲେ—"ମା ! ଯଥାର୍ଥରେ ତୁ ମୋର କନ୍ୟା ଅଟୁ । ତୁମୋତେ 'ପୁଂ' ନାମକ ନରକରୁ ଉଦ୍ଧାର କରିଦେଲୁ । ମୁଁ ତୋତେ ଆଶୀର୍ବାଦ କରୁଛି, ଯେତେଦିନ ପୃଥିବୀରେ ଚନ୍ଦ୍ର ସୂର୍ଯ୍ୟ ଆତଯାତ ହେଉଥିବେ, ସେ ପର୍ଯ୍ୟନ୍ତ ତୋର କୀର୍ତ୍ତି ବ୍ୟାପ୍ତ ରହିଥିବ । ପତିବ୍ରତାମାନଙ୍କ ମଧ୍ୟରେ ତୁ ସର୍ବଶ୍ରେଷ୍ଠ ବିବେଚିତ ହେବୁ । ତୋର ଏହି କଥା ଅମର ହେବ ଓ ପ୍ରଳୟକାଳ ପର୍ଯ୍ୟନ୍ତ ତାହା ସମସ୍ତେ ଗାନ କରୁଥିବେ ।"

ଏହା କହି ସେ ନିଜର ଜାମାତା ଭଗବାନ୍ ଚ୍ୟବନଙ୍କୁ କହିଲେ—"ବ୍ରହ୍ମନ୍ ! ଆପଣ ମୋ ଦ୍ୱାରା ସୋମଯାଗ କରାଇବେ ଓ ସେହି ଯଜ୍ଞରେ ଅଶ୍ୱିନୀକୁମାରଙ୍କୁ ଦେବ ଗଣଙ୍କ ସହିତ ଯଥେଷ୍ଟ ସୋମପାନ କରାଇ ନିଜର ପ୍ରତିଜ୍ଞା ପୂର୍ଣ୍ଣ କରିବେ । ମୁଁ

ଆପଣଙ୍କର ସେବକ ମାତ୍ର । ଆପଣ ଯେପରି ଯଜ୍ଞ କରାଇବେ, ମୁଁ ସେପରି କରିବି । ଯେତେ ସାମଗ୍ରୀ ଲୋଡ଼ିବେ, ଯେତେ ଏକତ୍ରିତ କରିବି । ଏବେ ଏଥିରେ ବିଳମ୍ବ କରିବାର ଆଉ କୌଣସି କାରଣ ନାହିଁ ।''

ଭଗବାନ ଚ୍ୟବନ କହିଲେ—''ରାଜନ୍ ! ମୁଁ ଆପଣଙ୍କ ଯଜ୍ଞ ଅବଶ୍ୟ କରାଇବି । ଆପଣଙ୍କ ଯଜ୍ଞରୁ ହିଁ ଏହି ନୂତନ ବ୍ୟବସ୍ଥା ପ୍ରଚଳନ କରାଯିବ । ଏହାଦ୍ୱାରା ଆପଣଙ୍କର ଯଶ ଜଗ ଜଗତ୍ରେ ବ୍ୟାପ୍ତ ହେବ । ଏହା ମଧ୍ୟ ଏକ ପରମ ରମଣୀୟ ଐତିହାସିକ ଘଟଣା, ଆପଣଙ୍କ ଯଜ୍ଞରେ ଯାହାକି ଘଟିବ ଓ ପ୍ରତ୍ୟେକଙ୍କର ଏହା ଆଲୋଚ୍ୟ ବିଷୟ ହେବ ।''

ଶ୍ରୀ ଶୁକଦେବ କହିଲେ—''ହେ ରାଜନ୍ ! ମହାରାଜ ଶର୍ଯାତି ମଥାନତ କରି ମୁନିଙ୍କ କଥାକୁ ଅଭିନନ୍ଦିତ କଲେ । ସେ ନିଜ କନ୍ୟା ଓ ଜାମାତାଙ୍କୁ ଅତି ଆଦର ସତ୍କାର ସହିତ ନିଜ ରାଜଧାନୀକୁ ନେଇ ଆସିଲେ । ସେଠାକୁ ଯାଇ ସେ ଖୁବ୍ କମ୍ ସମୟ ମଧ୍ୟରେ ମୁନିଙ୍କ ଆଜ୍ଞାନୁସାରେ ଯଜ୍ଞର ସମସ୍ତ ସାମଗ୍ରୀ ଯୋଗାଡ଼ କରି ରଖିଲେ । ଏହାପରେ ମୁନି ଅନେକ ବେଦଜ୍ଞ ବ୍ରାହ୍ମଣଙ୍କୁ ଆମନ୍ତ୍ରିତ କରି ସେମାନଙ୍କୁ ପୃଥକ୍ ପୃଥକ୍ କାର୍ଯ୍ୟଭାର ଅର୍ପଣ କଲେ । ଦେଶ ଦେଶାନ୍ତରରୁ ଅନେକ ନୃପତି ସେହି ଯଜ୍ଞ ଦେଖିବା ପାଇଁ ଆସିଥିଲେ । ମହାରାଜ ଶର୍ଯାତି ଉଦାରତାର ପରାକାଷ୍ଠା ପ୍ରଦର୍ଶନ କରୁଥିଲେ । ଯେ ଯାହା ମାଗୁଥିଲେ ସେ ତାହା ପ୍ରଫୁଲ୍ଲ ଚିତ୍ତରେ ଦାନ କରୁଥିଲେ । ଯେତେବେଳେ ସୋମପାନର ଅବସର ଆସିଲା, ସେଦିନ ମହାମୁନି ଚ୍ୟବନ ଚଷକ ପାନରେ ଭରିକରି ଇନ୍ଦ୍ରଙ୍କ ସହିତ ଅଶ୍ୱିନୀ କୁମାରଙ୍କୁ ସୋମ ପ୍ରଦାନ କରିବାକୁ ଲାଗିଲେ ।''

ଏହା ଦେଖି ଇନ୍ଦ୍ର କ୍ରୋଧରେ କହିଲେ—''ମୁନିବର ! ଆପଣ ଅଶ୍ୱିନୀକୁମାରଙ୍କୁ କାହିଁକି ସୋମ ପ୍ରଦାନ କରୁ ଅଛନ୍ତି ? ସୋମଲତା ହେଉଛି ଏକ ପରମ ପବିତ୍ର ଲତା । ଶୁକ୍ଳ ପକ୍ଷରେ ତହିଁରେ ଏକ ଏକ ପତ୍ର ବୃଦ୍ଧିପାଏ ଓ ପୂର୍ଣ୍ଣିମାକୁ ସେଥିରେ ୧୫ଟି ପତ୍ର ହୋଇଯାଏ । ପୁନଶ୍ଚ କୃଷ୍ଣ ପକ୍ଷରେ ଗୋଟିଏ ଗୋଟିଏ ପତ୍ର ଝଡ଼ି ଯାଇ ଅମାବାସ୍ୟାକୁ ତାହା ପତ୍ରହୀନ ହୋଇଯାଏ । ତାହାକୁ ଛେଚି ସେହି ରସକୁ ମନ୍ତ୍ରଦ୍ୱାରା ଯଜ୍ଞ ସମୟରେ ଦେବତାମାନେ ହିଁ ପାନ କରିପାରନ୍ତି । ତହିଁର ଯାହା ଅବଶିଷ୍ଟ ରହେ ସୋମଯାଜି ପୁରୁଷ ତାହା ପାନ କରନ୍ତି । ଅଶ୍ୱିନୀକୁମାରଙ୍କୁ ତ ଆଜି ପର୍ଯ୍ୟନ୍ତ କେହି ହେଲେ ଯଜ୍ଞରେ ଦେବତାମାନଙ୍କ ସହିତ ସୋମଭାଗ ଦେଇ ନଥିଲେ । ଆପଣ ଏହି ନୂତନ ପ୍ରଥା କାହିଁକି ପ୍ରଚଳନ କରୁ ଅଛନ୍ତି ?''

ଏ କଥା ଶୁଣି ଚ୍ୟବନ ମୁନି ଦୃଢ଼ତାର ସହିତ କହିଲେ—''କାହିଁକି, ଅଶ୍ୱିନୀକୁମାର କଣ ଦେବତା ନୁହନ୍ତି ? ଏ ହେଉଛନ୍ତି ସମସ୍ତଙ୍କଠାରୁ ଅଧିକ ସୁନ୍ଦର ତେଜସ୍ୱୀ ଦେବତା ! ଏ ଆୟୁର୍ବେଦର ଜ୍ଞାତା ଓ ଯଜ୍ଞଭାଗର ପ୍ରକୃତ ଅଧିକାରୀ ଅଟନ୍ତି ।

ଏ ପର୍ଯ୍ୟନ୍ତ ଏହାଙ୍କୁ ଯଜ୍ଞରେ ଭାଗ ମିଳୁ ନଥିଲା, ତେଣୁ ଏହାଙ୍କ ପ୍ରତି ଅନ୍ୟାୟ ବିଚାର କରାଯାଇ ଥିଲା । ଏବେ ମୁଁ ସେହି ଅନ୍ୟାୟକୁ ଆଉ ପ୍ରଶ୍ରୟ ଦେବି ନାହିଁ । ଏ ଦୁହିଙ୍କୁ ଦେବତାମାନଙ୍କ ପଙ୍‌କ୍ତିରେ ବସାଇ ନିଶ୍ଚୟ ସୋମପାନ କରାଇବି ।"

ଇନ୍ଦ୍ର କହିଲେ—"ଦେଖନ୍ତୁ ମୁନିବର ! ବୃଥା କନ୍ଦଳ ସୃଷ୍ଟି କରନ୍ତୁ ନାହିଁ ! ଏହା ଭଲ କଥା ନୁହେଁ । ଅଶ୍ୱିନୀକୁମାର କୌଣସି ମତେ ସୋମପାନର ଅଧିକାରୀ ହୋଇ ନ ପାରନ୍ତି । ବୈଦ୍ୟବିଦ୍ୟା ବା ଆୟୁର୍ବେଦ ଅଧମ ଅଟେ । ଏ ଦୁହେଁ ସ୍ୱର୍ଗ . ଲୋକରେ ଚିକିତ୍ସା କରନ୍ତି । ବୈଦ୍ୟମାନଙ୍କୁ କୌଣସି ଯଜ୍ଞରେ ଭାଗ ମିଳେ ନାହିଁ । ଶୁଭ କର୍ମରେ ଏମାନେ ଯୋଗଦେବା ମଧ୍ୟ ନିଷେଧ । ଆଉ ମଧ୍ୟ ଏ ଦୁହେଁ ମର୍ତ୍ତ୍ୟଲୋକରେ ଛଦ୍ମବେଶରେ (ବେଶ ବଦଳାଇ) ଘୁରି ବୁଲନ୍ତି । ସେଠାର ଲୋକଙ୍କୁ ମଧ୍ୟ ଚିକିତ୍ସା କରନ୍ତି । ଆପଣ ନିଜେ କହନ୍ତୁନା, ଏପରି ପୁରୁଷଙ୍କୁ ଯଜ୍ଞରେ ଭାଗଦେବା ଦ୍ୱାରା ଯଜ୍ଞ ଭାଗର ମହତ୍ତ୍ୱ ରହିବ କି ?"

ଏହା ଶୁଣି ମୁନି ଦୃଢ଼ତାର ସହିତ କହିଲେ—"ଦେଖନ୍ତୁ ଦେବେନ୍ଦ୍ର ! ମୁଁ ଅଯଥାରେ ବାଦ ବିବାଦ ବଢ଼ାଇବାକୁ ଚାହୁଁ ନାହିଁ । ଅଶ୍ୱିନୀକୁମାରଙ୍କୁ ଯଜ୍ଞଭାଗ ପ୍ରଦାନ କରି ଯଜ୍ଞଭାଗର ମହତ୍ତ୍ୱକୁ ହ୍ରାସ କରାଯିବ ନାହିଁ ବରଂ ବୃଦ୍ଧି କରାଯିବ । ମୁଁ ଏହି ବୈଦ୍ୟ ପ୍ରବରଙ୍କୁ ବଚନ ଦେଇଛି, ତେଣୁ ମୁଁ ଏହାଙ୍କୁ ଯଜ୍ଞରେ ସୋମପାନ କରାଇବି, ଏହା ମୋର ଦୃଢ଼ ସଂକଳ୍ପ । ତୁମ ଦେବତାମାନଙ୍କ ପଙ୍‌କ୍ତିରେ ହିଁ ଏହାଙ୍କୁ ବସାଇ ମୁଁ ସୋମରସ ପାନ କରାଇବି । ତୁମର ଯାହା କରିବାର ଅଛି, ତାହା କରିପାର ।"

ଏତିକ ଶୁଣିବାକ୍ଷଣି ଇନ୍ଦ୍ର ଅତ୍ୟନ୍ତ କ୍ରୁଦ୍ଧ ହୋଇ ଯଜ୍ଞର ଯଜମାନ ଶର୍ଯ୍ୟାତିଙ୍କୁ ମାରିବା ପାଇଁ ବଜ୍ର ଉତ୍ତୋଳନ କଲେ । ରାଜା ତ ପୂର୍ବରୁ ଭୟ କରୁଥିଲେ ଯେ, ମୋର ଏହି ଜାମାତାଙ୍କ ଯୋଗେ କିଛିନା କିଛି ଅନର୍ଥ ସୃଷ୍ଟି ହେବ, କିନ୍ତୁ ଚ୍ୟବନ ମୁନି ତ ନିଶ୍ଚିନ୍ତ ଥିଲେ । ସେ ସଙ୍ଗେ ସଙ୍ଗେ ଏକ ହୁଙ୍କାର କଲେ । ତତ୍‌କ୍ଷଣାତ୍ ଇନ୍ଦ୍ରଙ୍କର ବାହୁ ଯେଉଁଠି ଥିଲା ସେହିଠାରେ ସ୍ତମ୍ଭିତ ହୋଇଗଲା । ସେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିଲେ । ବଜ୍ର ପ୍ରହାର କରିବାତ ଦୂରର କଥା, ସେ ନିଜର ବାହୁକୁ ହଲାଇବି ପାରିଲେ ନାହିଁ । ମହା ମୁନି ଏତିକରେ ସନ୍ତୁଷ୍ଟ ନ ହୋଇ ଯଜ୍ଞ ଅଗ୍ନିରେ ହବନ କରି ତହିଁରୁ ଏକ କୃତ୍ୟା ଉତ୍ପନ୍ନ କରିବାକୁ ବିଚାର କଲେ । ସେ ଏହା ଚିନ୍ତା କରୁକରୁ ଗୋଟାଏ ଅତି ବିରାଟ ଭୟାନକ ଅସୁର ଯଜ୍ଞକୁଣ୍ଡ ମଧ୍ୟରୁ ବାହାରି ପଡ଼ିଲା । ତାର ମୁଖ ଥିଲା ପର୍ବତର ଗୁମ୍ଫା ସଦୃଶ, ସେ ଲହଲହ ଜିହ୍ୱା ଚାଳନା କରୁଥିଲା । ତାର କାନ ଦୁଇଟି ଥିଲା କୁଲାପରି, ଦାନ୍ତ ଥିଲା ଲଙ୍ଗଳ ଲୁହା ପରି ଓ ନାସିକା ଥିଲା ପର୍ବତ ଗହ୍ୱର ଭଳି । ତିନି ଯୋଜନା ଲମ୍ବ ବିଶିଷ୍ଟ ତ୍ରିଶୂଳ ଧରି ସେହି 'ମଦ' ନାମକ ଅସୁର ଯଜ୍ଞକୁଣ୍ଡରୁ

ଉତ୍ପନ୍ନ ହୋଇଥିଲା । ତାକୁ ଦେଖିବା କ୍ଷଣି ଦେବଗଣ ଭୟରେ ବରଡ଼ା ପତ୍ରପରି ଥରିବାକୁ ଲାଗିଲେ । ସମସ୍ତେ ମନେକଲେ ଏହି ତୁଚ୍ଛ କଥା ଉପରେ ତିନି ଲୋକ ସଂହାର ହେବାକୁ ଯାଉଛି । ତେଣୁ ସବୁ ଦେବତାମାନେ ମିଳି ଏକ ସ୍ୱରରେ କହିଲେ— "ମୁନିବର ! ଆମ୍ଭମାନଙ୍କର କୌଣସି ଆପତ୍ତି ନାହିଁ । ଅଶ୍ୱିନୀକୁମାର ଆମ୍ଭମାନଙ୍କ ସଙ୍ଗରେ ବସି ସର୍ବଦା ସୋମପାନ କରି ପାରନ୍ତି । ଆମ୍ଭେମାନେ ଆଜିଠାରୁ ତାଙ୍କ ଯଜ୍ଞଭାଗର ଅଧିକାରୀ ବୋଲି ସ୍ୱୀକାର କରିନେଲୁ ।"

ମୁନି କହିଲେ—ତୁମ୍ଭେମାନେ ତ କେବଳ ଏହା କହୁଛ, କିନ୍ତୁ ତୁମ ରାଜାତ କିଛି କହୁ ନାହାନ୍ତି ?"

ସଙ୍ଗେ ସଙ୍ଗେ ଇନ୍ଦ୍ର ଲଜ୍ଜିତ ହୋଇ କହିଲେ ମୁନିବର ! ଆପଣଙ୍କ ତପଶକ୍ତି ସମ୍ମୁଖରେ କାହାର ମନା କରିବାର ସାମର୍ଥ୍ୟ ଅଛି ? ଆପଣ ମନରେ ଯାହା କଳ୍ପିତ କରିନେବେ ତାହା ସଙ୍ଗେ ସଙ୍ଗେ ହୋଇ ପାରିବ । ମହର୍ଷି ! ମୁଁ ଏହି ଅଶ୍ୱିନୀକୁମାରଙ୍କୁ ଆଜିଠାରୁ ସୋମପାନର ଅଧିକାରୀ ବୋଲି ସ୍ୱୀକାର କଲି । ଏ ଦୁହେଁ ସ୍ୱଚ୍ଛନ୍ଦରେ ଯଜ୍ଞରେ ଆମ୍ଭମାନଙ୍କ ସହିତ ସୋମରସ ପାନ କରିବେ ।"

ଏହା ଶୁଣିବା ମାତ୍ରେ ମୁନିଙ୍କର କ୍ରୋଧ ଶାନ୍ତ ହେଲା । ସେ ଇନ୍ଦ୍ରଙ୍କ ହସ୍ତ ସ୍ତମ୍ଭନ ନିବାରଣ କରିଦେଲେ । ଇନ୍ଦ୍ର ଆଶ୍ୱସ୍ତ ହେଲେ । ଏହା ଦେଖି ସେହି ଭୟଙ୍କର ଅସୁର ମୁନିଙ୍କୁ କହିଲା—"ମୁନିବର ! ମୋତେ ଆଦେଶ କରନ୍ତୁ, ମୁଁ କଣ କରିବ ? ଆପଣ ମୋତେ କାହିଁକି ସୃଷ୍ଟି କଲେ ? ମୋତେ ରହିବା ପାଇଁ କେଉଁଠି ସ୍ଥାନ ଦିଅନ୍ତୁ ।"

ସେତେବେଳେ ମୁନି ଇନ୍ଦ୍ରଙ୍କୁ ସମ୍ମତ କରାଇ ତାକୁ ୫ଟି ସ୍ଥାନରେ ରହିବା ପାଇଁ ଆଦେଶ ଦେଲେ । କହିଲେ ତୁ ଏହି ପାଞ୍ଚଟି ସ୍ଥାନରେ ରହିବୁ । ପ୍ରଥମତଃ ଯୁବାବସ୍ଥାରେ ମଦୋନ୍ମତ୍ତ କରାଇବା ପାଇଁ ଯୁବକମାନଙ୍କ ପାଖରେ ରହିବୁ । ଏହାଦ୍ୱାରା ସେମାନଙ୍କର ବିବେକ ରହିବ ନାହିଁ । ହାତୀର ଗଣ୍ଡଦେଶରୁ ମଧ୍ୟ ଏହି ମଦ ଥିମ୍ ଥିମ୍ ହୋଇ ଝରୁଥାଏ । ଦ୍ୱିତୀୟ ସ୍ଥାନ ସ୍ତ୍ରୀ ପ୍ରସଙ୍ଗରେ । ଏହି ସମୟରେ ମନୁଷ୍ୟ ମଦାନ୍ଧ ହୋଇ ପରାଧୀନ ହୋଇଯାଏ । ମଦନ ସହିତ ଯେଉଁଠାରେ ମଦର ସଂଯୋଗ ହେବ, ସେଠାରେ ପ୍ରାଣୀ ଆତ୍ମବିସ୍ମୃତ ହୋଇଯିବ । ତୃତୀୟରେ ଦ୍ୟୁତକ୍ରୀଡ଼ା ସମୟରେ, ଯେଉଁଠାରେ ୧୦ଜଣ ଜୁଆଡ଼ି ଏକତ୍ରିତ ହୁଅନ୍ତି ସେଠାରେ ତାଙ୍କର ଆଗପଛ ବିଚାର ରହେ ନାହିଁ । ସେମାନଙ୍କ ଶିରରେ—ସେ ସ୍ଥଳରେ ଅବସ୍ଥାନ କରିବୁ । ଚତୁର୍ଥ ସ୍ଥାନ ହେଉଛି, ସୁରାପାନ କରାଯାଉଥିବା ସ୍ଥାନ । ଯେଉଁଠାରେ ମାତାଲଙ୍କ ପାଦ ପଡ଼ି ନଥାଏ, ମନୁଷ୍ୟର ବିବେକ ସେ ସ୍ଥାନରେ ନଷ୍ଟ ହୁଏ ନାହିଁ । ପଞ୍ଚମ ସ୍ଥାନ ଶିକାର କରିବା

ସମସ୍ତରେ ପ୍ରାଣୀଙ୍କୁ ଯାଇ ମଦମତ୍ତ କରାଇବ । ଏହି ପ୍ରକାର 'ମଦ'କୁ ଯେତେବେଳେ ପାଞ୍ଚଟି ସ୍ଥାନ ମିଳିଗଲା, ସେ ସେହି ସେହି ସ୍ଥାନରେ ଆସି ରହିବାକୁ ଲାଗିଲା । ଏଥିପାଇଁ ବିବେକବାନ୍ ପୁରୁଷ ଏହି ସବୁ ପରିସ୍ଥିତିର ସମ୍ମୁଖୀନ ନହେବା ପାଇଁ ସଚେଷ୍ଟ ତଥା ସାବଧାନ ହେବା ଆବଶ୍ୟକ ।

ଇନ୍ଦ୍ରଙ୍କଠାରୁ ସ୍ୱୀକୃତି ମିଳି ଯିବାରୁ ଅଶ୍ୱିନୀ କୁମାର ଆଜି ପ୍ରଥମ କରି ସମସ୍ତ ଦେବତାଙ୍କ ସହିତ ମନଇଚ୍ଛା ସୋମପାନ କଲେ ଓ ମୁନି ଚ୍ୟବନଙ୍କ ଯଶ ମୁକ୍ତ କଣ୍ଠରେ ଗାନ କଲେ । ମହାରାଜ ଶର୍ଯ୍ୟାତିଙ୍କ କୀର୍ତ୍ତି ମଧ୍ୟ ସର୍ବତ୍ର ବ୍ୟାପ୍ତ ହୋଇଗଲା । ତାଙ୍କର ସେହି ଯଜ୍ଞକୁ ଏକ ବିଶେଷ ମହତ୍ତ୍ୱପୂର୍ଣ୍ଣ ଯଜ୍ଞ ବୋଲି ବିଚାର କରାଗଲା ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବାନ ଚ୍ୟବନ ଏହି ପ୍ରକାରେ ଶର୍ଯ୍ୟାତିଙ୍କ କନ୍ୟା ସୁକନ୍ୟାଙ୍କୁ ବିବାହ କରି ଏକ ଅଦ୍ଭୁତ କାର୍ଯ୍ୟ କରିଥିଲେ । ସୁକନ୍ୟାଙ୍କ ଗର୍ଭରୁ ମହାମୁନି ଦଧୀଚି ଜନ୍ମଗ୍ରହଣ କରି ତିନି ଲୋକରେ ଯଶସ୍ୱୀ ହୋଇ ପାରିଥିଲେ । ତାଙ୍କ ଯଶ ଅଦ୍ୟାବଧି ବିଶ୍ୱବ୍ୟାପ୍ତ ହୋଇ ରହି ଅଛି ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପ୍ରସଙ୍ଗ କ୍ରମେ ମୁଁ ଆପଣଙ୍କୁ ଶର୍ଯ୍ୟାତି କନ୍ୟା ସୁକନ୍ୟାଙ୍କ ଚରିତ ସଂକ୍ଷେପରେ କହିଲି । ଏବେ ଆପଣ ଶର୍ଯ୍ୟାତିଙ୍କ ପୁତ୍ର ପୌତ୍ରଙ୍କ କଥା ଶ୍ରବଣ କରନ୍ତୁ ।"

## ଛପ୍ପୟ

ସୋମ ଯୋଗ କରବାଇ ଭୂପକୋ ମାନ ବଢାୟୋ ।
ସୁର ବୈଦ୍ୟନ ବୁଲବାଇ ସୋମରସ ତିନହୁଁ ପିଆୟୋ ॥
ତାନେଯା ସୁରପତି ବଜ୍ର କରେଯା ଜବ ସ୍ତମ୍ଭିତ କରକୁଁ ।
ସୋମପାନ ଅଧିକାର ସୁରନି ଦୀୟୋ ବୈଦ୍ୟନକୁଁ ॥
ଲଖି ପ୍ରଭବ ମୁନି ଚ୍ୟବନକୋ, ସବକୁଁ ଅତି ବିସ୍ମୟ ଭୟୋ ।
ତନୟା ନୃପ ଶର୍ଯାତକୀ, କୋ ଚରିତ୍ର ପାବନ କହ୍ୟୋ ॥



# ଶର୍ଯ୍ୟାତିଙ୍କ ପୁତ୍ର-ମାନଙ୍କ କଥା

**ଉତ୍ତାନବର୍ହିରାନର୍ତ୍ତୋ ଭୂରିଷେଣ ଇତି ତ୍ରୟଃ ।**
**ଶର୍ଯ୍ୟାତେରଭବନ୍ ପୁତ୍ରା ଆନର୍ତ୍ତାଦ୍ ରେବତୋଽଭବତ୍ ।।**

( ଶ୍ରୀ: ଭା: ୯ମ ସ୍କନ୍ଧ, ୩ୟ: ଅ: ୨୭ ଶ୍ଳୋକ )

## ଛପ୍ପୟ

ଅବ ମନୁସୁତ ଶର୍ଯ୍ୟାତି ବଂଶ ଶୁଭ ସୁନହୁ ଭକ୍ତିଯୁତ ।
ଭୂରିଷେଣ ଉତ୍ତାନବର୍ହି ଆନର୍ତ୍ତ ଭୟେ ସୁତ ।।
ଛୋଟେ ସୁତ ଆନର୍ତ୍ତ ଦ୍ୱାରକା ଜିନନ ବସାଇ ।
ରେବତ ସୁତ ତିନ ଭୟେ ତାସୁ ଶତ ସୁତ ସୁଖଦାଈ ।।
ଜ୍ୟେଷ୍ଠ କକୁଦ୍ମୀ ସବତେଂ, ଜନକ ରେବତୀ କେ ଭୟେ ।
ସୁତା ରେବତୀ ସଙ୍ଗ ଲୈ, ଖୋଜନ ବର ବିଧି ଢିଗଁ ଗୟେ ।।

ସମୁଦ୍ର ଯେପରି ଅଗାଧ, ଅତଳ ଓ ଅପାର କାଳ ମଧ୍ୟ ସେହିପରି ନିରବଧି । ଯାହାର ନିକୃଷ୍ଟ ଘଡ଼ା ଅଛି, ସେ ତହିଁରେ ସମୁଦ୍ରରୁ ପାଣି ଭରି ନେଇ ଆସେ । ସେହି ପାଣିକୁ ଏକ ଘଡ଼ା ପାଣି କୁହାଯାଏ । ଯାହାର ଘଡ଼ା ବଡ଼ ସେ ସେହି ବଡ଼ଘଡ଼ା ଭରି ନିଏ । ଜଳର ନିଜର କୌଣସି ମାପ ନାହିଁ କିମ୍ବା ପରିମାଣ ନାହିଁ । କାଳର ପରିମାଣ ସେହି ପ୍ରକାର । ସୂର୍ଯ୍ୟୋଦୟ ଠାରୁ ପୁନଃ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ସମୟକୁ ଆମେ ଏକ ଦିନ କହୁ । ସମୟକୁ କେହି ଏକ ପକ୍ଷ, ଓ କେହି କଳ୍ପ ବୋଲି କହୁଥାଆନ୍ତି । ଦିନ, ଘଣ୍ଟା ମାସ, ବର୍ଷ, କଳ୍ପ ଏସବୁ ପ୍ରାଣୀ ମାନଙ୍କର କଳ୍ପନା । କାଳରେ ଏ ସବୁ କିଛି ନାହିଁ । ତାହା ସଦା ଏକରସ ବିଶିଷ୍ଟ, ଅନାଦି, ଅବ୍ୟକ୍ତ ଓ ନିତ୍ୟ ଅଟେ । ତହିଁରେ ଖଣ୍ଡ ନାହିଁ କିମ୍ବା ଭାଗ ନାହିଁ । ସେ ଏକ ରସରେ ରହି କ୍ରୀଡ଼ା କରୁଅଛି । ପ୍ରାଣୀ ତାକୁ ନେଇ ମୃତ୍ୟୁ ବରଣ କରୁଛନ୍ତି । ତଥା ଜନ୍ମ ଅତିବାହିତ କରୁଛି । ସେ କାଳକୁ ଜୟ କରିବାକୁ ଇଚ୍ଛା କରୁଛି, କିନ୍ତୁ ଭଗବତ୍ ଭକ୍ତ ଓ ବୈଜ୍ଞାନିକଗଣଙ୍କ ବ୍ୟତୀତ ଆଜି ପର୍ଯ୍ୟନ୍ତ କେହି ହେଲେ କାଳ ଉପରେ ବିଜୟ ହାସଲ କରି ନାହାନ୍ତି । ସେ ସମସ୍ତଙ୍କୁ

ନିଜର ଆବର୍ତ୍ତିରେ ପକାଇ ଲୀନ କରୁଅଛି । ନିର୍ଦ୍ଦୟ ହୋଇ ସମସ୍ତଙ୍କୁ ନିଜ ଗର୍ଭକୁ ନିକ୍ଷେପ କରୁଅଛି । ଯାହାକୁ ଗ୍ରାସ କରୁଛି, ସେ ରୋଦନ କରୁଛି । ଅନ୍ୟମାନେ ହସୁଛନ୍ତି ଓ ଏତେ ବଡ଼ ବୋଲି ଗର୍ବ କରୁଛନ୍ତି । ସେମାନେ ଭୁଲି ଯାଉଛନ୍ତି ଯେ, ତାଙ୍କ ସମ୍ମୁଖରେ କାଳ ବିକଟାଳ ମୂର୍ତ୍ତି ଧରି ଦଣ୍ଡାୟମାନ ହୋଇଛି, ଦିନେ ନା ଦିନେ ସେମାନଙ୍କୁ ମଧ୍ୟ ସେ ଗ୍ରାସ କରିବ । ଏହା ଜାଣିଥିଲେ ବି ଲୋକେ ଅନ୍ଧ ହେଉଛନ୍ତି, ସେ ଆଡ଼କୁ ଆଦୌ ଧ୍ୟାନ ଦେଉ ନାହାନ୍ତି । କାଳର ଗତିକୁ ଲକ୍ଷ୍ୟ କରୁ ନାହାନ୍ତି । ଏହା ହିଁ ମାୟାଧରଙ୍କର ମାୟା । ଏହା ହିଁ ଦୈବର ଗୁଣମୟୀ ବିଚିତ୍ର ଲୀଳା ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମନୁପୁତ୍ର ଶର୍ଯ୍ୟାତିଙ୍କ କନ୍ୟା ସୁକନ୍ୟାର ଚରିତ ତ ମୁଁ କହିଲି । ଏବେ ଆପଣ ତାଙ୍କ ପୁତ୍ରମାନଙ୍କ ବଂଶ ବର୍ଣ୍ଣନା ଶୁଣନ୍ତୁ । ମହାରାଜ ଶର୍ଯ୍ୟାତିଙ୍କର ତିନି ପୁତ୍ର ଥିଲେ । ସେମାନଙ୍କର ନାମ ଯଥାକ୍ରମେ ଉତ୍ତାନବର୍ହି, ଆନର୍ତ୍ତ ଓ ଭୂରିଷେଣ । ପ୍ରଖ୍ୟାତ ହୁଏ, ଏମାନଙ୍କ ମଧ୍ୟରୁ ଆନର୍ତ୍ତଙ୍କ ବଂଶ ହିଁ ରହି ଆସିଥିଲା । ମହାରାଜ ଆନର୍ତ୍ତଙ୍କର ରେବତ ନାମକ ପୁତ୍ର ଜାତ ହୋଇଥିଲା । ଏହି ରେବତ ହିଁ ଆନର୍ତ୍ତ ଦେଶର ରାଜଧାନୀ ଦ୍ୱାରକା ବା କୁଶସ୍ଥଳୀ ସ୍ଥାପନ କରିଥିଲେ । ମହାରାଜ ରେବତ ଅତ୍ୟନ୍ତ ପ୍ରତାପଶାଳୀ, ତେଜସ୍ୱୀ ଓ ସାମର୍ଥ୍ୟବାନ୍ ଥିଲେ । ତାଙ୍କର ୧୦୦ ପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ କକୁଦ୍ମୀ ଜ୍ୟେଷ୍ଠ ଥିଲେ । କକୁଦ୍ମୀଙ୍କର ଏକ କନ୍ୟା ଥିଲା । ତାହାର ନାମ ରେବତୀ । ସେହି ରେବତୀଙ୍କର ବିବାହ ଏହା ଅଷ୍ଟବିଂଶ ଦ୍ୱାପର ଶେଷରେ ଭଗବାନ କୃଷ୍ଣଚନ୍ଦ୍ରଙ୍କର ଜ୍ୟେଷ୍ଠଭ୍ରାତ ଶେଷାବତାର ଭଗବାନ ବଳରାମଙ୍କ ସହିତ ହୋଇଥିଲା ।"

ଏକଥା ଶୁଣି ଶୌନକ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ହେ ସୂତ ! ସମୟ ସମୟରେ ତ ଆପଣ ଏପରି କଥା କହୁଛନ୍ତି, ଯାହାକି ବୁଦ୍ଧି ବହିର୍ଭୂତ ହୋଇ ପଡୁଛି । ଦେଖନ୍ତୁ, ଆପଣ ଏବେ ବୈବସ୍ୱତ ମନ୍ୱନ୍ତର ବିଷୟରେ ବର୍ଣ୍ଣନା କରୁଅଛନ୍ତି, ବିବସ୍ୱାନଙ୍କ ପୁତ୍ର ଶ୍ରାଦ୍ଧଦେବ, ଏହାଙ୍କୁ ବୈବସ୍ୱତ ମନୁ ମଧ୍ୟ କୁହାଯାଏ । ସେ ହେଉଛନ୍ତି ଏହି ମନ୍ୱନ୍ତରର ଅଧିପତି । ତାଙ୍କର ଇକ୍ଷ୍ୱାକୁ ଆଦି ଦଶ ପୁତ୍ର ମନ୍ୱନ୍ତରର ପ୍ରଥମ ସତ୍ୟ ଯୁଗରେ ଜନ୍ମ ହୋଇଥିଲେ । ଏବେ ଅଷ୍ଟବିଂଶ କଳିଯୁଗ । ଅର୍ଥାତ୍ ସେହି ଦିନଠାରୁ ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏହି ଚାରିଯୁଗ ୨୮।୨୮ ଥର ଭୋଗ ହୋଇ ଗଲାଣି । ଏକ ଚତୁର୍ଯୁଗ ଦେବତାଙ୍କ ବର୍ଷ ଅନୁସାରେ ୧୨୦୦୦ ବର୍ଷ । ଅର୍ଥାତ୍ ମନୁଷ୍ୟଙ୍କ ବର୍ଷ ଅନୁସାରେ ୩୨୦୦୦୦୦ ବର୍ଷରେ ଚାରିଯୁଗ ହୁଏ । ଏହା ୨୮ ଥର ଭୋଗ ହୋଇଯାଇଛି । ତେଣୁ ଏପର୍ଯ୍ୟନ୍ତ ସମୁଦାୟ ୮୯୦୦୦୦୦୦ ବର୍ଷ ଭୋଗ ହୋଇ ଯାଇଛି । ଆଠ କୋଟି ବର୍ଷ ପୂର୍ବରୁ ଜନ୍ମ ହୋଇଥିବା ରେବତୀଙ୍କର ବିବାହ ଏହି ଦ୍ୱାପର ଯୁଗର ଶେଷ ଭାଗରେ ବଳଦେବଙ୍କ ସହିତ କିପରି ହେଲା ? ଏହି କଥାର ତାତ୍ପର୍ଯ୍ୟ କିଛି ବୁଝାପଡୁନାହିଁ । କୃପାକରି ଏହା ଆମକୁ ବୁଝାଇ ଦିଅନ୍ତୁ ।"

ଏହାଶୁଣି ସୂତ କହିଲେ—"ମହାରାଜ ! କାଳର ଗଣନା ତ କରିବା ସମ୍ଭବ ନୁହେଁ । କାଳର ବିଭାଗ ମଧ୍ୟ ନାହିଁ । ଆମ୍ଭେମାନେ ନିଜ ନିଜର ସୁବିଧା ପାଇଁ କାଳକୁ ବିଭକ୍ତ କରିଥାଉଁ । ଏହା ଏକ ଦିନ, ଏହା ଏକ ପକ୍ଷ, ଏହା ଏକମାସ, ଏହା ଅୟନ, ଏହା ବର୍ଷ, ଏହା ଯୁଗ, ଏହା ଚତୁର୍ଯୁଗ, ଏହା ସମ୍ବତ୍ସର ବା ଏହା କଳ୍ପ ଏହିପରି ଆମେ କାଳକୁ ବିଭକ୍ତ କରିଥାଉଁ । ସ୍ୱୟଂ କାଳରେ ଏହି ଭେଦ ନାହିଁ । ଅନ୍ନରାଶି ଜମା ହୋଇଛି । କେହି କୌଣସି ପାତ୍ରରେ ଓ କେହି କୌଣସି ମାପରେ ତାହା ତୋଳି ନିଅନ୍ତି, ମାପନ୍ତି । ସ୍ୱୟଂ କଳ୍ପନା କରି ନିଅନ୍ତି ଯେ ଏହା ଏକ ମହଣ ହେଲା । କିନ୍ତୁ ଅନ୍ନରେ ଏପରି କୌଣସି ବିଭାଗ ସ୍ୱୟଂ ନଥାଏ । ଆମ୍ଭେମାନେ ଯାହାକୁ ଏକ ଦିନ ବୋଲି କହୁ, ବହୁ ସଂଖ୍ୟାରେ ଏ ପ୍ରକାର ସୂକ୍ଷ୍ମ ଜୀବ ରହିଛନ୍ତି ଯେ କି ଦିନ ଭିତରେ ଅନେକ ଥର ମରି ଯାଆନ୍ତି ଓ ଅନେକ ବାର ଜନ୍ମ ହୁଅନ୍ତି । ଆମର ଏକ ଦିନ ସେମାନଙ୍କ ପାଇଁ ଅନେକ ଜନ୍ମ ସହିତ ସମାନ । ଆମେ ଯାହାକୁ ଶୁକ୍ଳପକ୍ଷ ଓ କୃଷ୍ଣପକ୍ଷ ବୋଲି କହୁ, ପିତୃ ଲୋକ ମାନଙ୍କର ତାହା ଏକ ଅହୋରାତ୍ର । ଆମେ ଯେଉଁ ବାରମାସ ସମଯୁକ୍ତ ଏକବର୍ଷ ବୋଲି କହୁ, ଦେବତା ମାନଙ୍କର ତାହା ଏକ ଦିନ । ୭୧ ଥରରୁ କିଛି ଅଧିକ ଚତୁର୍ଯୁଗ ଅତୀତ ହେଲେ ତାହାକୁ ମନୁଙ୍କର ଆୟୁ କୁହାଯାଏ । ଅର୍ଥାତ୍ ୧୦୦ ବର୍ଷ । ଚତୁର୍ଯୁଗ ଏକ ହଜାରଥର ବିତିଗଲେ ତାହା ବ୍ରହ୍ମାଙ୍କର ଏକ ଦିନ ହୁଏ । ଭଗବାନଙ୍କର ତାହା ଏକ ନିମେଷ ମାତ୍ରା ନୁହେଁ । ଏହିପରି ସମସ୍ତେ ନିଜ ନିଜର ସୁବିଧା ଓ ଇଚ୍ଛା ଅନୁସାରେ କାଳର କଳ୍ପନା କରି ଅଛନ୍ତି । ଗୋଟିଏ ପକ୍ଷୀ ୧୦ ବିନ୍ଦୁ ପାଣି ପିଏ ଓ ତହିଁରେ ତାହାର ପେଟ ଭରିଯାଏ । ହାତୀ ୧୦ ମାଠିଆ ପାଣି ପିଇଯାଏ, ଅଗସ୍ତ୍ୟ ଋଷି ସମୁଦ୍ରର ସମସ୍ତ ଜଳ ଚଳୁ କରି ଦେଇଥିଲେ, ତଥାପି ତାଙ୍କର ପେଟ ପୁରି ନଥିଲା । ଯେପରି ପାତ୍ର ହୋଇଥାଏ, ତଦନୁସାରେ ତହିଁରେ ନ୍ୟୂନାଧିକ ବସ୍ତୁ ରହିବାର କଳ୍ପନା କରାଯାଏ । ଋଷିମାନଙ୍କ ପାଇଁ, ଅଂଶାବତାର—ମନୁ ଓ ମନୁପୁତ୍ରଙ୍କ ପାଇଁ ଦଶ-କୋଡ଼ିଏ ହଜାର ବର୍ଷର ସମୟ କିଛି ନୁହେଁ, କିନ୍ତୁ ସାଧାରଣ ମନୁଷ୍ୟ ସତ୍ୟ ଯୁଗରେ ୪୦୦ ବର୍ଷ ବଞ୍ଚୁଥିଲେ । କଳିରେ ୧୦୦ ବର୍ଷ । ଏହି ପ୍ରକାରେ ସାଧାରଣ ଲୋକଙ୍କର କଥା ଧାର୍ଯ୍ୟ ଲେଖା ହୋଇ ନଥାଏ । ଯେଉଁମାନେ ବିଶିଷ୍ଟ ପୁରୁଷ, ଯେଉଁମାନଙ୍କର ଆୟୁ ସାଧାରଣତଃ ମନୁଷ୍ୟଙ୍କଠାରୁ ବହୁତ ଅଧିକ, ସେହିମାନଙ୍କର ଚରିତ୍ର ହିଁ କେବଳ ପୁରାଣରେ ରହିଛି । ଏହିକଥା ପ୍ରସଙ୍ଗ ବଶତଃ ସାଧାରଣ ଲୋକଙ୍କ କ୍ଷେତ୍ରରେ ମଧ୍ୟ ଉଲ୍ଲେଖ ହୋଇଥାଏ । କାଳ ଆବଦ୍ଧ ନୁହେଁ । ଆମ୍ଭମାନଙ୍କର ନିଜ ନିଜର କଳ୍ପନା ଅନୁସାରେ ଆମେ ତାହା ଆବଦ୍ଧ କରିଥାଉଁ । ଯେପରି କୂପମଣ୍ଡୁକ କୂପକୁ ହିଁ ବିଶ୍ୱ ବ୍ରହ୍ମାଣ୍ଡ ବୋଲି ଜ୍ଞାନ କରେ, ସେହିପରି ଆମ୍ଭେମାନେ ୧୦୦ ବର୍ଷ ବିଶିଷ୍ଟ ଆମ୍ଭମାନଙ୍କର ଆୟୁକୁ ବହୁତ ବୋଲି ଜ୍ଞାନ କରୁଁ । ଏହାହିଁ ଭଗବାନଙ୍କର କ୍ରୀଡ଼ା । ଏହା ହିଁ କାଳ

ସ୍ୱରୂପ ଶ୍ରୀହରିଙ୍କର ମୋହିନୀ ମାୟା । ପ୍ରାଣୀ ଏଥିରେ ଭୁଲିଯାଇ ମୁଁ—ମୋର, ତୁ—ତୋର କହି ରହିଥାଏ । ଏ ସମ୍ବନ୍ଧରେ ଅନେକ ଏକ ଦୃଷ୍ଟାନ୍ତ ଶୁଣନ୍ତୁ ।"

ଥରେ ଭଗବାନ୍ ଗଙ୍ଗା ତଟରେ ବସି ଥାଆନ୍ତି, ନାରଦ ଆସି ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ଓ ତାଙ୍କ ଚରଣରେ ପ୍ରଣାମ କରି କହିଲେ—' ପ୍ରଭୋ ! ଜୀବଗଣ ଆପଣଙ୍କର ଭଜନ କାହିଁକି କରନ୍ତି ନାହିଁ ?"

ଭଗବାନ କହିଲେ—"ନାରଦ ! ଏମାନେ ମୋ ମାୟାରେ ମୋହିତ ହୋଇ ରହିଛନ୍ତି ।"

ନାରଦ କହିଲେ—"ମହାରାଜ ! ମୁଁ ସବୁ କିଛି ଦେଖିଛି, କିନ୍ତୁ ଆପଣଙ୍କ ମାୟାକୁ କେବେହେଲେ ଦେଖିନାହିଁ । ସେ କାଳୀ ବା ଗୋରୀ, ସୁନ୍ଦରୀ ବା କୁତ୍ସିତା, ମୁଁ ତାହା ଜାଣେ ନାହିଁ । ଦୟାକରି ଆପଣ ମୋତେ ଥରେ ସେହି ମାୟାକୁ ଦେଖାନ୍ତୁ ।

ଏହାଶୁଣି ଭଗବାନ୍ ହସି ହସି କହିଲେ—"ନାରଦ ! ତୁମେ ହେଉଛ ବ୍ରହ୍ମଋଷି । ମାୟାତ ଘର, ଦ୍ୱାର, ସ୍ତ୍ରୀ, ପରିବାର, ଅର୍ଥ, ପ୍ରତିଷ୍ଠା ଆଦି ଇଚ୍ଛା କରିଥିବା ବ୍ୟକ୍ତିଙ୍କ ଆଦର ରହେ । ତୁମେ ଏହି ହାଟଚମଟି କାରିଣୀ, ପ୍ରତାରଣା କାରିଣୀକୁ ଦେଖି କି ଲାଭ ପାଇବ ? ଏହାକୁ ଦର୍ଶନ କରିବା ମାତ୍ରେ ତ ଉନ୍ମାଦ ଜାତ ହୁଏ । ଏଥିପାଇଁ ଏହାକୁ ଆଦୌ ନ ଦେଖିବା ଉଚିତ୍ । ତାହା ଆଡୁ ଆଖି ଫେରାଇ ନେବା ଉଚିତ୍ । ତୁମେ ରାମ ନାମ ଉଚ୍ଚାରଣ କର, ଏ ମାୟା ଫାସ୍ୱା ଚକ୍ରରେ କାହିଁକି ପଶିବ ?

ନାରଦ କହିଲେ – "ନା, ପ୍ରଭୋ ! ଥରେ ମାତ୍ର ମୋତେ ମାୟାକୁ ଦେଖାଇ ଦିଅନ୍ତୁ । ମାୟାକୁ ନ ଜାଣିଲେ ହେବ ନାହିଁ । ତାହାକୁ ଥରେ ମାତ୍ର ଦେଖିବା ପାଇଁ ମୋର ଭାରି ଇଚ୍ଛା ହେଉଛି ।"

ଭଗବାନ କହିଲେ—"ଆଚ୍ଛା, ଠିକ୍ ଅଛି, ଯାଅ ଗଙ୍ଗାରେ ସ୍ନାନ କରି ଆସ । ମୁଁ ତୁମକୁ ମୋର ମାୟା ଦର୍ଶନ କରାଇବ ।"

ଏତିକି ଶୁଣିବା ମାତ୍ରେ ନାରଦ ନିଜ ବୀଣାକୁ ଗଙ୍ଗା କୂଳରେ ରଖି, ରାମାବଳୀ ଚଦରଟିକୁ ଦେହରୁ କାଢ଼ି ପକାଇ, ଶିଖା ଖୋଲି ଗଙ୍ଗା ଜଳରେ ଗାଧୋଇବାକୁ ପଶିଲେ । ଯେତେବେଳେ ସେ ଏକ ବୁଡ଼ା ଦେଇ ଉଠନ୍ତି, ସେତେବେଳେ ଦେଖନ୍ତି ତ ସେ ଗୋଟାଏ ସ୍ତ୍ରୀଲୋକ ହୋଇ ଯାଇଛନ୍ତି । ସେ ପର୍ଯ୍ୟନ୍ତ ଜାଣି ଥାଆନ୍ତି ଯେ ସେ ନାରଦ ଅଟନ୍ତି, କିନ୍ତୁ ଏ କିଏ ? ତାଙ୍କ ଶରୀର ଯେ ବଦଳି ଯାଇଛି । ଅଙ୍ଗେ ଅଙ୍ଗେ ଯୌବନର ମାଦକତା ଭରି ଯାଇଛି । ଠିକ୍ ସେହି ସମୟରେ ସେଠାରେ ତାଲ-

ଧ୍ୱଜ ନାମକ ଜଣେ ରାଜା ଆସି ପହଞ୍ଚିଗଲେ । ସେ ତାଙ୍କ ସହିତ ହସି ହସି ପ୍ରେମାଳାପ କରିବାକୁ ଲାଗିଲେ । ଆଉ ବିଶେଷ ଭାବ ପ୍ରକାଶର କୌଣସି ଆବଶ୍ୟକତା ରହିଲା ନାହିଁ । ଉଭୟେ ପ୍ରେମ ପାଶରେ ଛନ୍ଦାଛନ୍ଦି ହୋଇ ପଡ଼ିଲେ । ରାଜା ତାଙ୍କୁ ବିବାହ କଲେ । ଏବେ ନାରଦ ହେଲେ ରାଣୀ । କ୍ରମେ ତାଙ୍କର ଗୋଟିକ ପରେ ଗୋଟିଏ ପୁତ୍ର କନ୍ୟା ଜାତ ହେଲେ । ଏହିପରି ଭାବରେ ତାଙ୍କଠାରୁ ଦଶଟି ପୁତ୍ର ଓ ବାରଟି କନ୍ୟା ଜାତ ହେଲେ । ସେ ପୁତ୍ରମାନଙ୍କୁ ବିବାହ କରାଇଲେ ଓ କନ୍ୟାମାନଙ୍କୁ ଉପଯୁକ୍ତ ପାତ୍ର କରଣ ଉଦ୍ଦେଶ୍ୟରେ ସ୍ୱୟମ୍ବର କରାଇ ବିବାହ କରାଇଲେ । ପୁତ୍ର-ମାନଙ୍କର ପିଲାକବିଲା ମଧ୍ୟ ହୋଇଗଲେ । ଏହି ସମୟରେ ରାଜାଙ୍କର ମୃତ୍ୟୁ ହେଲା । ତାଙ୍କର କେଶ ପକ୍ୱ ହୋଇଗଲା । ବୃଦ୍ଧା ପୁଅ, ନାତି, ଅଣନାତି,ପଣନାତି ମାନଙ୍କ ମୁଖ ଦେଖିଲେ । ପରେ ବୃଦ୍ଧା ମଧ୍ୟ ସମସ୍ତଙ୍କୁ ଶୋକ ସାଗରରେ ଭସାଇ ଦେଇ ଦେହ ତ୍ୟାଗ କଲେ । ତାଙ୍କର ପୁଅ, ନାତି, କୁଟୁମ୍ବ ପରିଜନଙ୍କ ସହିତ ତାଙ୍କୁ ଖୁବ୍ ଜାକ୍ ଯମକରେ ଦାହ କରିବା ପାଇଁ ଗଙ୍ଗା କୂଳକୁ ନେଇ ଗଲେ । ଏମାନେ ସବୁ ସେଠାକୁ ଯାଇ ଚିତାଗ୍ନି ସ୍ଥାପନ କରିବା ପୂର୍ବରୁ ଶଙ୍ଖାଡ଼ି ଉପରେ ଶୁଆଇ ଦେଲେ । ଅଗ୍ନି ସଂଯୋଗ କରାଗଲା । ଚିତାଗ୍ନି ଧୁ ଧୁ ହୋଇ ଜଳିବାକୁ ଲାଗିଲା ।

ସେହି ସମୟରେ ନାରଦ ଦେଖିଲେ, ସେ ପୂର୍ବରୁ ଯେଉଁଠି ସ୍ନାନ କରିବା ସମୟରେ ବୁଡ଼ିଥିଲେ । ସେଠାରୁ ଶୀଘ୍ର ପାଣି ଚହଲାଇ ଉଠୁଅଛନ୍ତି । ସେ ତିନିଥର ବୁଡ଼ି ଅଘମର୍ଷଣ ମନ୍ତ୍ର ପାଠକରୁ ଥାଆନ୍ତି । ଏତିକ ସମୟ ମଧ୍ୟରେ ହିଁ ଏ ସବୁ କାଣ୍ଡ ଘଟି ଯାଇଛି । ସେ ଦେଖିବାକୁ ପାଇଲେ ଗଙ୍ଗା କୂଳରେ ହଜାର ହଜାର ରାଜାଙ୍କର ଲୋକବାକ ଠିଆ ହୋଇ ଗୋଟିଏ ଶବକୁ ଦାହ କରୁ ଅଛନ୍ତି ।

ନାରଦ ସେମାନଙ୍କ ନିକଟକୁ ଯାଇ ପଚାରିଲେ -- "ଭାଇମାନେ ! ତୁମ୍ଭେମାନେ ଏଠାରେ କାହାକୁ ଦାହ କରୁଅଛ ?"

ଏହା ଶୁଣି ସେମାନଙ୍କ ମଧ୍ୟରୁ ସବୁଠାରୁ ଜଣେ ବଡ଼ ରାଜା କହିଲେ— "ଆମର ଜଣେ ଅତିବୃଦ୍ଧା ମାତା ଥିଲେ । ତାଙ୍କୁ ୧୦୦୦ ବର୍ଷରୁ ଅଧିକ ବୟସ ହୋଇଥିଲା । ଆମେ ସବୁ ହେଉଛୁ ତାଙ୍କର ପୁଅ ନାତି ଅଣନାତି ଓ ପଣନାତି । ଏତେ ବଡ଼ପରିବାରକୁ ଗ୍ରସ୍ତ, ଆମ୍ଭ ମାନଙ୍କୁ ଶୋକ ସାଗରରେ ଭସାଇ ଦେଇ ସେ ଆଜି ଦେହ ତ୍ୟାଗ କଲେ । ସେ ଆମ୍ଭମାନଙ୍କର ସାହା ଭରସା ଥିଲେ । ସମସ୍ତଙ୍କର ଯତ୍ନ ନେଉଥିଲେ । ଆମ୍ଭେମାନେ ଏବେ କିଂକର୍ତ୍ତବ୍ୟ ବିମୂଢ଼ । ଆମ୍ଭମାନଙ୍କର ଭାଗ୍ୟ ବଡ଼ ମନ୍ଦ । ସେ ଆମ ପରିବାରର ଏକମାତ୍ର ବୟୋବୃଦ୍ଧା ଥିଲେ । ସେ ବି ଚାଲିଗଲେ ।" ଏହା ଶୁଣି ନାରଦ ହସି ଉଠିଲେ ଓ ଭଗବାନଙ୍କ ନିକଟକୁ ଯାଇ କହିଲେ—"ଧନ୍ୟ

ମହାପ୍ରଭୁ ! ଆପଣଙ୍କ ମାୟା ତ ବଡ଼ ବିଚିତ୍ର । ଏହାକୁ ଅତିକ୍ରମ କରିବା ଅତ୍ୟନ୍ତ କଷ୍ଟସାଧ୍ୟ ।"

ସୂତ କହିଲେ—"ମୁନିଗଣ ! ଭଗବାନ୍‌ଙ୍କର ମାୟା ବଶତଃ ରେବତୀଙ୍କର ଉତ୍ପତ୍ତି ଏହି ପ୍ରକାର ପୂର୍ବ ସତ୍ୟ ଯୁଗରେ ହୋଇଥିଲା ଓ ତାଙ୍କର ବିବାହ ଏହି ଅଷ୍ଟବିଂଶ ଦ୍ୱାପର ଯୁଗର ଶେଷ ଭାଗରେ ହେଲା । ତାଙ୍କ ବିବାହ ସମ୍ବନ୍ଧରେ ଏକ ବିଚିତ୍ର ଘଟଣା ଘଟିଥିଲା ।"

ଶୌନକ ପଚାରିଲେ—"ହେ ସୂତ ! କୃପାକରି ରେବତୀଙ୍କର ବିବାହ ବିଷୟରେ ଆମ୍ଭମାନଙ୍କୁ କହନ୍ତୁ ।"

ସୂତ କହିଲେ—' ଆଗ୍ରା ଠିକ୍ ଅଛି, ମୁଁ ଆପଣମାନଙ୍କୁ ସେ ସମ୍ବନ୍ଧରେ କହୁଅଛି । ଆପଣମାନେ ମନଯୋଗ ସହକାରେ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ତପ ପ୍ରଭାବରେଂ ବ୍ରହ୍ମଲୋକମହିଁ ପହୁଁଚେ ଭୂପତି ।
ନିରଖେଥା ସୁରସ ସମାଜ ହୋଇ ସଙ୍ଗୀତ ମଧୁର ଅତି ॥
ଗାବେଂ ଗୁନ ଗୋବିନ୍ଦ ଚତୁର ଗନ୍ଧର୍ବ ତହାଁ ସବ ।
ନୃତ୍ୟ ଅପସରା କରେଂ ଅନବସର ସମୁଝେଂଯା ନୃପ ତବ ॥
କଛୁକ ଦେର ଠାଢ଼େ ରହେ, ଜବ ସମାପ୍ତ ଗାୟକ ଭୟେ ।
ତବ ପ୍ରଣାମ କରି କକୁଦ୍‌ମୀ, ନିଜ କାରଜ ବିଧି ସନ କହେଂଯା ॥



# ରେବତୀଙ୍କର ବଳରାମ ସହିତ
# ବିବାହ

ସୁତାଂ ଦତ୍ତ୍ୱାନବଦ୍ୟାଙ୍ଗୀଂ ବଳାୟ ବଳଶାଳିନେ ।
ବଦର୍ଯ୍ୟାଖ୍ୟଂ ଗତୋରାଜା ତପ୍ତୁଂ ନାରାୟଣାଶ୍ରମମ୍ ।।

(ଶ୍ରୀ: ଭା: ୯ମ ସ୍କ: ୩ୟ ଅ: ୩୬ ଶ୍ଲୋକ)

**ଛପପୟ**

ପ୍ରଭୋ ! ରେବତୀ ସୁତା ଭଇ ଲକ୍ଷ୍ମୀ ଅତି ପ୍ୟାରୀ ।
କିନ୍ତୁ ଯୋଗ ବର ମିଲେଯା ନହୀଂ ଅବହୀ ୟହ କ୍ୱାଁରୀ ।।
କିହି ସଁଗ ଆୟସୁ କରୈଂ ତାହି ସଁଗ ଯାହି ବିବାହୁଁ ।
ହଁସି କମଲାସନ କହେଁ—ନୃପତି ଅବ କହା ବତାଉଁ ।।
ଚଉହୁଁ ଯୁଗ ଛବୀସ ଇକ, ବାର ବୀତି ଭୂପତି ! ଭୟେ ।
ପୁତ୍ର ପୌତ୍ର ପୀଢ଼ୀ ସହସ, ନଷ୍ଟ ଭୂପ ସୁତ ସବ ଭୟେ ।।

ସମୟର ଗତି ଅନୁସାରେ ସ୍ୱଭାବ, ଆକୃତି, ପ୍ରକୃତି, ରୂପ, ରଙ୍ଗ, ସ୍ଥିତି, ସହିଷ୍ଣୁତା, ଶୀଳ, ଓ ସଦାଚାରର ସବୁ କିଛି ବଦଳି ଯାଏ । ବିଗତ ଏହି ୫୦ ବର୍ଷ ମଧ୍ୟରେ ଅନେକ ପରିବର୍ତ୍ତନ ଘଟିଯାଇଛି । ୫୦ ବର୍ଷ ପୂର୍ବରୁ ଯେତେ ଲମ୍ବା-ଚୌଡ଼ା, ହୃଷ୍ଟପୁଷ୍ଟ ପୁରୁଷଥିଲେ ବର୍ତ୍ତମାନ ଆଉ ସେଭଳି ନାହାନ୍ତି । ପଚାଶ ବର୍ଷ ପୂର୍ବରୁ ଲୋକଙ୍କର ଯେପରି ହଜମ ଶକ୍ତି ଓ ସହନ ଶକ୍ତିଥିଲା, ତାହା ବର୍ତ୍ତମାନ ଦେଖିବାକୁ ମିଳୁନାହିଁ । ଯେଭଳି ଧର୍ମ ଭାବନା ଆଜିଠାରୁ ଦଶବର୍ଷ ପୂର୍ବେ ଲୋକମାନଙ୍କର ଥିଲା, ତାହା ଏବେ ଆଉନାହିଁ । ତମୋଗୁଣୀ ଲୋକ ଏହାକୁ ଉନ୍ନତି ବୋଲି କହୁଛନ୍ତି ଓ ଏହାକୁ ହିଁ ବିକାଶ ବୋଲି କହିବାରେ ଲାଗିଛନ୍ତି । ବାସ୍ତବରେ ଏହା ବିକାଶ ନୁହେଁ, ହ୍ରାସ । କିନ୍ତୁ ଅବିଦ୍ୟା ମାୟାର ପ୍ରଭାବ ହେଉଛି ଅସତ୍‌ରେ ସତ୍ ବୁଦ୍ଧି ଓ ଅଧର୍ମରେ ଧର୍ମ ବୁଦ୍ଧିକୁ ସ୍ୱୀକାର କରାଇବା । ସମୟର ଗତି ଅନୁସାରେ, ଭୋଗ ଲାଳସା ଓ ଭୋଗ

ସାମଗ୍ରୀ ବୃଦ୍ଧି ପାଇ ପାଇ ଚାଲିଛି । ଭୌତିକବାଦ ବୃଦ୍ଧି ପାଉଛି । ସତ୍ୟ, ଧର୍ମ, ପରମାର୍ଥ ଦିଗରେ ବଳ ଓ ପୌରୁଷ କ୍ଷୀଣ ହୋଇ ହୋଇ ଚାଲିଛି । ଯେତେବେଳେ ଏହା ଅବନତିର ପରାକାଷ୍ଠାରେ ପହଞ୍ଚିବ, ସେତେବେଳେ ଏକ ମୂହୂର୍ତ୍ତରେ ଉନ୍ନତି ଆସି ପହଞ୍ଚିବ । ଏହା ହିଁ ସଂସାର ଚକ୍ର । ଏହା ଅବଶ୍ୟ ଧୀରେ ଧୀରେ ଆସୁ ଅଛି, କିନ୍ତୁ ନୂତନତା ସହସା ଆସିଯାଉଛି । ଏହି ଉତ୍ଥାନ ପତନର କ୍ରମ ଅନାଦି, ଅନନ୍ତକାଳ ପର୍ଯ୍ୟନ୍ତ ଏହିପରି ତାହା ଚାଲିଥିବ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବର୍ତ୍ତମାନ ମୁଁ ରେବତଙ୍କର ଜ୍ୟେଷ୍ଠ ପୁତ୍ର କକୁଦ୍ମୀଙ୍କର କନ୍ୟା ରେବତୀଙ୍କ ଚରିତ ବର୍ଣ୍ଣନା କରୁଛି । ମହାରାଜ କକୁଦ୍ମୀଙ୍କର ୧୦୦ ପୁତ୍ର ଓ ଏକମାତ୍ର କନ୍ୟା ଥିଲେ । କନ୍ୟାର ନାମଥିଲା ରେବତୀ । ମହାରାଜ କକୁଦ୍ମୀ ଏକମାତ୍ର ସେହି ଅଲିଅଳି କନ୍ୟାକୁ ଭାରି ସ୍ନେହ କରୁଥିଲେ । ରେବତୀ ଅପେକ୍ଷାକୃତ ଅଧିକ ଡେଙ୍ଗାଥିଲେ । ଆଜିକାଲିର ମନୁଷ୍ୟମାନେ ଯେପରି ୩୩ ହାତ, ସେହିପରି ସତ୍ୟ ଯୁଗର ମନୁଷ୍ୟ ୨୮ ହାତ ଉଚ୍ଚତା ବିଶିଷ୍ଟ ଥିଲେ । ପୁନଶ୍ଚ ଏହି ମନୁଷ୍ୟ ତ୍ରେତା ଯୁଗକୁ ୭ ହାତ ହୋଇଥିଲେ । ଏହି କଳି ଯୁଗରେ ମନୁଷ୍ୟମାନଙ୍କ ଉଚ୍ଚତା ହାରାହାରି ୩୩ ହାତ । ଏହି ପ୍ରକାରେ ମନୁଷ୍ୟର ଉଚ୍ଚତା କ୍ରମେ କ୍ରମେ ହ୍ରାସ ହୋଇ ହୋଇ ଚାଲିଛି । ପିତାଙ୍କ ସଦୃଶ ପୁତ୍ର ହେଉନାହାନ୍ତି । ରେବତୀଙ୍କ ଜନ୍ମ ମନ୍ୱନ୍ତରର ପ୍ରଥମ ସତ୍ୟଯୁଗରେ ହୋଇଥିଲା । ଆମ ହାତରେ ନିୟମାନୁସାରେ ସେ ୨୮ ହାତ ଉଚ୍ଚତା ବିଶିଷ୍ଟ ହେବାର କଥା, କିନ୍ତୁ ସେ ତାହାଠାରୁ ଆହୁରି ଅଧିକ ଉଚ୍ଚ ଥିଲେ । ସବୁ ଯୁଗରେ ମନୁଷ୍ୟ ନିଜ ହାତରେ ୩୩ ହାତ ହୋଇଥାଆନ୍ତି । ଛୋଟ ଶିଶୁ ତା ହାତରେ ୩୩ ହାତ ଓ ବୃଦ୍ଧ ବ୍ୟକ୍ତି ସବୁ ଯୁଗରେ ନିଜ ନିଜ ହାତରେ ପ୍ରତ୍ୟେକ ୩୩ ଥିଲେ । ହାତ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଶରୀର ମଧ୍ୟ ବୃଦ୍ଧି ପାଇଥାଏ । ରେବତୀ ତା ସମସାମୟିକ କୁମାରୀ ମାନଙ୍କ ମଧ୍ୟରେ ଅଧିକ ଡେଙ୍ଗାଥିଲେ । ଅଧିକାଂଶ କୁମାରୀ ଶୀଘ୍ର ଶୀଘ୍ର ଖଜୁରୀ ଗଛଭଳି ଡେଙ୍ଗା ହୋଇ ଯାଉଥିବାର ଦେଖାଯାଏ । ଯେଉଁ ଯୁବକମାନେ ବାମନାକାର ହୋଇ ଥାଆନ୍ତି, ସେମାନେ ନିଜ ନିଜ ଅବସ୍ଥାନୁସାରେ ଦ୍ୱିଗୁଣ ବୟସର ହୋଇଥିଲେ ବି ଖଜୁରୀ ଗଛଭଳି ଉଚ୍ଚତା ବିଶିଷ୍ଟ ଯୁବତୀଙ୍କୁ ଦେଖିବାମାତ୍ରେ ଭୟଭୀତ ହୋଇ ଆଆନ୍ତି । ରେବତୀଙ୍କ ଉଚ୍ଚତା ଦେଖି ବହୁତ ରାଜକୁମାର ତାଙ୍କୁ ପସନ୍ଦ କରୁନଥିଲେ । ଅନେକ ରାଜକୁମାର ତାଙ୍କୁ ଦେଖିବାକୁ ଆସି ଫେରିଯାଉଥିଲେ । ଅନେକେ କହୁଥିଲେ – "ଆମେ ଆମ ସମସ୍ତ ମହଲର ଦ୍ୱାରକୁ ଭାଙ୍ଗି ତାକୁ ପୁନରାୟ ଉଚ୍ଚା କରିବାକୁ ପଡ଼ିବ । ଏତେ ଲମ୍ବା ବୋହୂକୁ ଆମେ ନେଇ କେଉଁଠି ଥୋଇବୁ ? ତାଙ୍କୁ ଦେଖିବା ପାଇଁ କେତେ ଡେଙ୍ଗା ରାଜକୁମାର ମଧ୍ୟ ଆସିଥିଲେ । ରାଜା ମଧ୍ୟ ନିଜ କନ୍ୟା ପାଇଁ ଉପଯୁକ୍ତ ବର ଖୋଜୁଥିଲେ । ୨-୪ ଜଣ ରାଜକୁମାର ତାଙ୍କ ଉପଯୁକ୍ତ ପ୍ରତୀତ ହେଲେ । ପ୍ରତ୍ୟେକଙ୍କ-ଠାରେ କୌଣସି ନା କୌଣସି ବିଶେଷ ଗୁଣଥିଲା । ଭୋଜନ କାଳରେ ଆମ ସମ୍ମୁଖରେ

ନାନାପ୍ରକାର ସୁନ୍ଦର ସୁନ୍ଦର ଖାଦ୍ୟ ସାମଗ୍ରୀ ବଢ଼ା ଯାଇଥିଲେ ଯେପରି ଆମେ ସର୍ବ ପ୍ରଥମେ କେଉଁ ଖାଦ୍ୟ ଖାଇବୁ ତାହା ସ୍ଥିର କରିପାରୁ ନାହିଁ, ସେହିପରି ମହାରାଜ ନିଜେ ନିର୍ଣ୍ଣୟ କରି ପାରିଲେ ନାହିଁ ଯେ କାହା ସହିତ ନିଜ କନ୍ୟାକୁ ବିବାହ ଦେବେ ।

ରାଜା ଅତ୍ୟନ୍ତ ପ୍ରତାପଶାଳୀ, ଧର୍ମାତ୍ମା ଓ ଯୋଗବିଦ୍ୟା ନିପୁଣ ଥିଲେ । ଇଚ୍ଛାନୁସାରେ ସ୍ୱଶରୀରରେ ବିଭିନ୍ନ ଲୋକକୁ ଯାଇପାରୁଥିଲେ । କେବଳ ସେତିକି ନୁହେଁ, ନିଜ ଯୋଗପ୍ରଭାବରେ ଯାହାକୁ ନେବାକୁ ଇଚ୍ଛା କରୁଥିଲେ ତାକୁ ମଧ୍ୟ ସଙ୍ଗରେ ନେଇଯାଇ ପାରୁଥିଲେ ।

ଦିନେ ରାଜା ଚିନ୍ତାକଲେ—"ମୁଁ ବ୍ରହ୍ମ ଲୋକକୁ ଯିବି ଓ ବ୍ରହ୍ମାଙ୍କୁ କହିବି, କନ୍ୟାକୁ କାହା ସହିତ ବିବାହ ଦେବାକୁ ହେବ ସେ ସ୍ୱୟଂ ନିର୍ଣ୍ଣୟ କରିବେ । ସେ ସର୍ବଜ୍ଞ ଅଟନ୍ତି, ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ତିନିକାଳର କଥା ତାଙ୍କୁ ଜଣା । ସେ ଏହାର ଭାଗ୍ୟ ବିଚାର କରି ଯାହାଙ୍କସହିତ ବିବାହ ଦେବାକୁ କହିବେ ମୁଁ ତାଙ୍କ ସହିତ କନ୍ୟାର ବିବାହ କରାଇବି ।"

ଏହିପରି ଚିନ୍ତାକରି ମହାରାଜ କକୁଦ୍ମୀ ରେବତୀଙ୍କ ସଙ୍ଗରେ ନେଇ ନିଜ ସାମର୍ଥ୍ୟରେ ବ୍ରହ୍ମ ଲୋକରେ ଯାଇ ପହଞ୍ଚିଲେ । ସେସମୟରେ ସେ ଦେଖିଲେ ସେଠାରେ ବ୍ରହ୍ମାଙ୍କ ନିକଟରେ ସଙ୍ଗୀତର ଏକ ବିଶେଷ ସମାରୋହ ହେଉଅଛି । ଉତ୍ତମ ସଙ୍ଗୀତଜ୍ଞ ଗନ୍ଧର୍ବଗଣ ସେଠାକୁ ଆସିଛନ୍ତି । ମୁନି, ଋଷି ଓ ଦେବତାମାନଙ୍କ ଦ୍ୱାରା ସଭା ମଣ୍ଡପ ଭରି ଯାଇଛି । ହୁ ହୁ ଗନ୍ଧର୍ବ ଅତି ମଧୁର ସ୍ୱରରେ ତାଳମାନ ଧରି ଗୀତ ଗାଉଛନ୍ତି । ମହାରାଜ କକୁଦ୍ମୀ ଏହା ଉପଯୁକ୍ତ ଅବସର ନୁହେଁବୋଲି ମନେକରି ମଝିରେ କିଛି କହିଲେ ନାହିଁ । ଦୂରରୁ ପିତାମହ ବ୍ରହ୍ମାଙ୍କୁ ପ୍ରଣାମକରି ଗୋଟିଏ ସ୍ଥାନରେ ବସି ପଡ଼ିଲେ ଅନେକ ସମୟ ଧରି ଗାନ ଶୁଣିବାରେ ମଜ୍ଜିଗଲେ । ଗାନ କରିବାରେ ଗନ୍ଧର୍ବ ଖୁବ୍ ନିପୁଣ ଥିଲେ । ଏହା ଥିଲା ସର୍ବଶେଷ ଗାନ । ହୁହୁଙ୍କ ପରେ ଆଉ କିଏ ଅବା ଗାଇ ପାରନ୍ତେ ? ହୁହୁ ଏକ ଏକ ସଙ୍ଗୀତାଂଶକୁ ନେଇ ବିଭିନ୍ନ ସ୍ୱର ଓ ଲୟରେ ଗାନ କରୁଥିଲେ । ସମସ୍ତେ ତନ୍ମୟ ହୋଇ ତାହା ଶ୍ରବଣ କରୁଥିଲେ । କିଛି ସମୟପରେ ସଙ୍ଗୀତ ସମାରୋହ ଶେଷ ହେଲା । ଆଗତ ଦେବଗଣଙ୍କୁ ବ୍ରହ୍ମା କୁଶଳ ପ୍ରଶ୍ନ କଲେ । ମହାରାଜ କକୁଦ୍ମୀ ମଧ୍ୟ ବ୍ରହ୍ମାଙ୍କୁ ପ୍ରଣାମ କଲେ ଓ ନିଜର କନ୍ୟାକୁ ପ୍ରଣାମ କରାଇଲେ । ଏହାପରେ ସେ ହାତଯୋଡ଼ି ବ୍ରହ୍ମାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇରହିଲେ ।

ବ୍ରହ୍ମା ହସିକରି କହିଲେ—"ଜହୋ ! ରାଜନ ! ଆପଣ କେତେବେଳେ ଆସିଲେ ?"

ରାଜା ନିନସ୍ୱର ସହିତ କହିଲେ—"ପ୍ରଭୋ ! ମୁଁ ଏବେ ଆସିଲି ! ଅଧମୁହୂର୍ତ୍ତେ ବି ହୋଇନାହିଁ, ହୁହୂ ତାଙ୍କର ଗୀତ ଗାଇବା ଆରମ୍ଭ କଲାବେଳେ ମୁଁ ଆସି ପହଞ୍ଚିଲି ।"

ବ୍ରହ୍ମା ପ୍ରସନ୍ନ ହୋଇ କହିଲେ—"ଆସିଲ ଭଲ ହେଲା । ଆଉ ସମସ୍ତ କୁଶଳ ତ ? କୌଣସି ବିଶେଷ ପ୍ରୟୋଜନ ନେଇ ଏଠାକୁ ବୋଧହୁଏ ଆସିଛ ?"

ରାଜା ପ୍ରଫୁଲ୍ଲ ଚିତ୍ତରେ କହିଲେ—"ନା, ଭଗବାନ୍ ! ସେହିପରି କୌଣସି ବିଶେଷ ପ୍ରୟୋଜନ ନାହିଁ, ବହୁଦିନ ହେଲା ଆପଣଙ୍କ ଦର୍ଶନ ପାଇ ନ ଥିଲି, ତେଣୁ ଆପଣଙ୍କୁ ଦର୍ଶନ କରିବାକୁ ମନ ବ୍ୟାକୁଳ ହେବାରୁ ଚାଲି ଆସିଲି । ଏ ଝିଅକୁ ସଙ୍ଗରେ ନେଇ ଆସିଛି, ତା ସମ୍ବନ୍ଧରେ ମଧ ଆପଣଙ୍କୁ ପଚାରିବି !"

ବ୍ରହ୍ମା କହିଲେ—"ଅଚ୍ଛା, ଏ କନ୍ୟା ତାହାହେଲେ ତୁମର ନା ? ଏ ତ ଡେଙ୍ଗାରେ ବହୁତ ବଢ଼ି ଯାଇଛି, ତା'ର ବିବାହ ଏପର୍ଯ୍ୟନ୍ତ ହୋଇ ନାହିଁ ନା କ'ଣ ?"

କକୁଦ୍ମୀ କହିଲେ—'ହଁ ଆଜ୍ଞା ! ମୁଁ ସେହିକଥା କହିବାକୁ ତ ଚାହୁଁଥିଲି । ମୁଁ ଆପଣଙ୍କ ଠାରୁ ତା ବିଷୟରେ ପରାମର୍ଶ ନେବାକୁ ଆସିଥିଲି । ଝିଅର ବୟସ ବଳାଇ ଯାଇ ନାହିଁ, କିନ୍ତୁ ସେ ଝକୁଷ୍ଟ ଗଛ ପରି ବହୁତ ଡେଙ୍ଗା ହୋଇଯାଇଛି । ଅନ୍ୟାନ୍ୟ କୁମାରୀଙ୍କ ତୁଳନାରେ ସେ ଅପେକ୍ଷାକୃତ ଡେଙ୍ଗା । ରାଜକୁମାରଗଣ ତାକୁ ଦେଖିଛନ୍ତି କିନ୍ତୁ ଅଧିକ ଡେଙ୍ଗା ହୋଇଥିବା ଯୋଗେ ଡରି ଯାଉଛନ୍ତି । ଦୁଇ ଚାରିଜଣ ରାଜ-କୁମାରଙ୍କ ସହିତ ପ୍ରସ୍ତାବ ପଡ଼ିଛି । ମୁଁ ନିର୍ଣ୍ଣୟ କରି ପାରୁ ନାହିଁ ଯେ କାହା ସହିତ ତାହାର ବିବାହ କରିବି । ଆପଣ ଯାହାଙ୍କ ସହିତ ବିବାହ କରିବାକୁ ଆଜ୍ଞା ଦେବେ, ତାଙ୍କ ସହିତ ଏହାର ବିବାହ କରିଦେବି ।"

ବ୍ରହ୍ମା କହିଲେ—"ଅଚ୍ଛା, କୁହ ! ତୁମେ କେଉଁ କେଉଁ ରାଜକୁମାରଙ୍କ ସହିତ ପ୍ରସ୍ତାବ ପକାଇ ଚିନ୍ତିତ ଅଛ ଓ କେଉଁ ରାଜକୁମାରଙ୍କୁ ତୁମେ ଉପଯୁକ୍ତ ବୋଲି ମନେ କରୁଛ ?"

ଏହା ଶୁଣି ମହାରାଜ କକୁଦ୍ମୀ କହିଲେ—"ଭଗବାନ୍ ! ବିଦର୍ଭ ଦେଶର ରାଜକୁମାର ଉପଯୁକ୍ତ ଅଟନ୍ତି, ବୟସରେ ତ ସେ ମୋ କନ୍ୟାଠାରୁ ବହୁତ ବଡ଼, କିନ୍ତୁ ଉଚ୍ଚତାରେ ସେ କନ୍ୟାଠାରୁ କମ୍ । ପିଲାଟି ଦେଖିବାକୁ ସୁନ୍ଦର, କିନ୍ତୁ ଶ୍ୟାମଳ ବର୍ଣ୍ଣ । ମୁଁ ଚାହେଁ ବର ଗୌର ବର୍ଣ୍ଣ ହେବା ଉଚିତ୍ । ନିଷଧ ଦେଶର ରାଜ-କୁମାର ଉଚ୍ଚତାରେ ସମାନ୍, ସୁନ୍ଦର, କିନ୍ତୁ ତାଙ୍କର ଗୋଟିଏ ଆଖି ଟେରା । ତାଙ୍କ ପିତାଙ୍କ ରାଜ୍ୟ ଅତିକ୍ଷୁଦ୍ର କିନ୍ତୁ ପାଦଟି ଅତ୍ୟନ୍ତ ସୁଶୀଳ । ଅନ୍ୟ ଏକ ପାତ୍ର ହେଉଛନ୍ତି ଅନୁପ ଦେଶର ରାଜ-

କୁମାର ! ସେ ଦେଖିବାକୁ ଖୁବ୍ ସୁନ୍ଦର । ସମ ଉଚ୍ଚତା ବିଶିଷ୍ଟ, ପାତ୍ରଟି ମୋର ପସନ୍ଦ ହୋଇଛି, କିନ୍ତୁ ଏହାର ମା କହନ୍ତି ଯେ ପୁତ୍ରର ମାତା ଅତ୍ୟନ୍ତ କଳିହୁଡ଼ୀ ।"

ଏହା ଶୁଣି ବ୍ରହ୍ମା ହସି ହସି କହୁଥିଲେ—"ରାଜନ୍ ! ଆପଣ ଏପରି କଣ କହୁଛନ୍ତି, ଆପଣ ଯେଉଁମାନଙ୍କ ନାମ କହୁଛନ୍ତି, ସେମାନଙ୍କର ତ ପୁଅ, ନାତି, ନାତୁଣୀ, ଅଣନାତି, ପଣନାତି ହୋଇ ହଜାର ହଜାର ବର୍ଷ ବିତି ଗଲାଣି ।"

ରାଜା ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"କାହିଁକି ପିତାମହ ?"

ବ୍ରହ୍ମା କହିଲେ—"କାହିଁକି କ'ଣ ? ଯେତେବେଳ ପର୍ଯ୍ୟନ୍ତ ତୁମେ ଏଠାରେ ସଙ୍ଗୀତ ଶୁଣୁଥିଲ, ସେତିକି ସମୟ ମଧ୍ୟରେ ମର୍ତ୍ତ୍ୟ ଲୋକରେ ୨୭ ଥର ଚତୁର୍ଯ୍ୟୁଗ ବିତି ଗଲାଣି । ତୁମର ପୁତ୍ର, ପୌତ୍ରଙ୍କର ହଜାର ହଜାର ପୁରୁଷ ଅତୀତ ହେଲାଣି । ସେମାନେ ଆଉ ମର୍ତ୍ତ୍ୟ ଲୋକରେ ନାହାନ୍ତି । ତୁମ କୁଳରେ ବର୍ତ୍ତମାନ କେହି ନାହାନ୍ତି । ତୁମ ବଂଶଜ କେତେକ ରାଜା ରହି ଯାଇଥିଲେ, କିନ୍ତୁ ଯକ୍ଷ ସେମାନଙ୍କୁ ଅତ୍ୟନ୍ତ କ୍ଲେଶ ଦେଲା । ସେମାନେ ଭୟରେ କୁଶସ୍ଥଳୀକୁ ପରିତ୍ୟାଗ କରି ପଳାୟନ କଲେ । ତୁମ ନଗରୀ ବହୁ ଦିନରୁ ନଷ୍ଟଭ୍ରଷ୍ଟ ହୋଇ ଯାଇଛି । ତୁମେ ଏଠି ବସିଛ କ'ଣ ?"

ରାଜା ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ପିତାମହ ! ମୋ ବଂଶର ଲୋକମାନେ ଗଲେ କୁଆଡ଼େ ? ମୋ ରାଜନଗରକୁ ବର୍ତ୍ତମାନ ଅଧିକାର କରିଛି କିଏ ?"

ବ୍ରହ୍ମା ହସି ହସି କହିଲେ—"ରାଜନ୍ ! ତୁମର ଏବେ ଆଉ କଣ ଅଛି । ଏବେ ତ ସବୁ ଗୁଡ଼ ଗୋବରରେ ପରିଣତ ହୋଇ ଯାଇଛି । ଏବେ ତୁମେ ଯଦି ତୁମ ବଂଶଜଙ୍କ ନିକଟକୁ ଯାଅ, ତେବେ ସେମାନେ ତୁମକୁ ଭୂତ ପ୍ରେତ ବୋଲି ଜ୍ଞାନ କରିବେ ଓ ଭୟରେ ପଳାଇବେ । ସ୍ୱୟଂ ପରବ୍ରହ୍ମ ପରମାତ୍ମା । ନରରୂପ ଧାରଣ କରି ଏବେ ମର୍ତ୍ତ୍ୟଲୋକରେ ଅବତୀର୍ଣ୍ଣ ହୋଇଛନ୍ତି । ସେ ଲୀଳା କରିବା ପାଇଁ ମଥୁରାରୁ କୁଶସ୍ଥଳୀରେ ଅବସ୍ଥାନ କରୁଛନ୍ତି । ତୁମ ରାଜପ୍ରସାଦର ଇଟାର ଧୂଳିଟିକିଏ ବି ସେଠାରେ ନାହିଁ । ପୂର୍ବାପେକ୍ଷା ଭୂଭାଗ ଅଧିକ ଉଚ୍ଚ ହୋଇ ଯାଇଛି ! ଅତୀତର ଧୂଳିମାଟି କେତେ ତଳକୁ ଦବି ଯାଇଥିବ ତାହା କହି ହେବ ନାହିଁ । ଏବେ ସେ ସ୍ଥାନରେ ସ୍ୱର୍ଣ୍ଣମୟ ଦ୍ୱାରକା ପୁରୀ ନିର୍ମିତ ହୋଇଛି । ଭଗବାନ୍ ଶ୍ରୀମନ୍ନାରାୟଣଙ୍କର ଅଂଶଭୂତ ମହାବଳୀ ସଙ୍କର୍ଷଣ ଭଗବାନ୍ ବଳଦେବ ରୂପରେ ଶ୍ରୀ ହରିଙ୍କ ଅଗ୍ରଜ ହୋଇ ଅବତାର ଧାରଣ କରିଅଛନ୍ତି । ରାଜନ୍ ! ଏହି କନ୍ୟାରତ୍ନକୁ ସେହି ନରରତ୍ନଙ୍କୁ ପ୍ରଦାନ କର । ଏହି କନ୍ୟା ତାଙ୍କପାଇଁ ଉପଯୁକ୍ତ ସେ ପରମ ଦର୍ଶନୀୟ ଶୋଭାସମ୍ପନ୍ନ ଓ ବଳବାନ୍ ଅଟନ୍ତି । ତାଙ୍କର ପତ୍ନୀ ହୋଇ ଏ ସୁଖରେ କାଳ କାଟିବ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବ୍ରହ୍ମାଙ୍କର ବଚନ ଅଲୀକ ବା ଅସତ୍ୟ ପରି ବୋଧ ହେଉଥିଲେ ମଧ୍ୟ ବ୍ରହ୍ମବାକ୍ୟ କେବେ ଅନ୍ୟଥା ହୁଏ ନାହିଁ । ତାହାକୁ ଅସ୍ୱୀକାର କରାଯାଇ ନ ପାରେ । ରାଜା କକୁଦ୍ମୀ ଯୋଗ ବଳରେ କ୍ଷଣକ ମଧ୍ୟରେ କୁଶସ୍ଥଳୀରେ ଆସି ପହଞ୍ଚିଲେ । ଏତେ ଲମ୍ବା ଚୌଡ଼ା ପୁରୁଷଙ୍କୁ ଦେଖି ସେଠାରେ ସମସ୍ତେ ଡରିଗଲେ । ଦ୍ୱାପର ଯୁଗୀୟ ନରନାରୀ ମହାରାଜ କକୁଦ୍ମୀଙ୍କ ଦୃଷ୍ଟିରେ ଏପରି ଦେଖା ଯାଉଥିଲେ ଯେ, ସତେ ଯେପରି ମାଟିର ଛୋଟ ଛୋଟ କଣେଇ ଖେଳନା ଚଲବୁଲ କରୁଛନ୍ତି । ମୂଷା ଛୁଆଙ୍କ ଭଳି ପୁରୁଷଙ୍କୁ ଦେଖି ରାଜା ବଡ଼ ଆଶ୍ଚର୍ଯ୍ୟ ହେଲେ । ସେ ଏହାପରେ ଭଗବାନଙ୍କ ନିକଟରେ ଯାଇ ପହଞ୍ଚିଲେ । ଭଗବାନ ରାଜସଭାରେ ବିରାଜମାନ କରିଥିଲେ । ବଳଦେବ ମଧ୍ୟ ସେଠାରେ ବସିଥିଲେ । ସୁଧର୍ମା ସଭାରେ ଯେତେ ବଡ଼ ପୁରୁଷ ଯାଇ ପହଞ୍ଚନ୍ତୁ ନା କାହିଁକି ସମସ୍ତେ ଏକ ଉଚ୍ଚତା ବିଶିଷ୍ଟ ହୋଇ ଯାଆନ୍ତି । କୋଟି କୋଟି ଲୋକ ଯଦି ସେଠାକୁ ଯିବେ ତେବେ ସେମାନେ ସମସ୍ତେ ଏକ ପ୍ରକାର ଉଚ୍ଚତା ବିଶିଷ୍ଟ ହୋଇ ଯିବେ, କାରଣ ତାହା ବିଶ୍ୱକର୍ମାଙ୍କ ଆୟୋଜିତ ଦିବ୍ୟ ସଭାଥିଲା ।

ରାଜା କକୁଦ୍ମୀ ଭଗବାନ ଓ ବଳଦେବଙ୍କୁ ପ୍ରଣାମ କରି ବଳଦେବଙ୍କୁ କହିଲେ—"ପ୍ରଭୋ ! ଆପଣ ମୋର ଏହି କନ୍ୟାକୁ ପତ୍ନୀରୂପେ ଗ୍ରହଣ କରନ୍ତୁ ।"

ଏହା ଶୁଣି ସଭାସଦ୍‌ବର୍ଗ ମୁହଁରେ ଲୁଗା ଦେଇ ହସିବାକୁ ଲାଗିଲେ । ବଳଦେବ କହିଲେ—"ରାଜନ୍ ! ମୁଁ ଏତେ ଡେଙ୍ଗୀ ବୋହୁକୁ ନେଇ କଣ କରିବି ? ଆପଣ କିଏ, କେଉଁ ଲୋକରୁ ଆସିଛନ୍ତି ? ଆପଣ ପାହାଡ଼ ଠାରୁ ଅଧିକ ଉଚ୍ଚ ଏହି କନ୍ୟାକୁ ମୋ ଗଳାରେ କାହିଁକି ବଳପୂର୍ବକ ବାନ୍ଧିବାକୁ ଚାହୁଁଛନ୍ତି ।"

ରାଜା କକୁଦ୍ମୀ କହିଲେ—"ପ୍ରଭୋ ! ମୁଁ ଏହି ମର୍ତ୍ତ୍ୟ ଲୋକର ମନୁଷ୍ୟ । ଆପଣ ଏବେ ଯେଉଁ ସ୍ଥାନରେ ରାଜ୍ୟ ଶାସନ କରୁଛନ୍ତି, ଏକଦା ତାହା ମୋର ଅତ୍ୟନ୍ତ ସମୃଦ୍ଧିଶାଳୀନୀ ରାଜଧାନୀ ଥିଲା । ମହାରାଜ ! ମୁଁ ଆଜିଠାରୁ ଅଷ୍ଟବିଂଶ ପୂର୍ବ ସତ୍ୟ ଯୁଗରେ ଜନ୍ମଲାଭ କରି ଥିଲି । ମୁଁ ବୈବସ୍ୱତ ମନୁଙ୍କ ପୁତ୍ର ମହାରାଜ ଶର୍ଯ୍ୟାତିଙ୍କ ପ୍ରପୌତ୍ର ଅଟେ । ମୋର ପିତାଙ୍କ ନାମ ରେବତ, ପିତାମହଙ୍କ ନାମ ଆନର୍ତ୍ତ ଓ ପ୍ରପିତା-ମହଙ୍କ ନାମ ଶର୍ଯ୍ୟାତି ଥିଲା । ମହାରାଜ ଆନର୍ତ୍ତଙ୍କ ନାମାନୁସାରେ ଏହି ଦେଶର ନାମ ଏ ପର୍ଯ୍ୟନ୍ତ ଆନର୍ତ୍ତ ରହିଛି । ମୁଁ ବ୍ରହ୍ମଲୋକ ଯାଇ ସେଠାରେ କ୍ଷଣକ ପାଇଁ ସଙ୍ଗୀତ ଶୁଣିବାରେ ମଜ୍ଜିଗଲି । ଏତିକି ସମୟ ମଧ୍ୟରେ ଏହି ମର୍ତ୍ତ୍ୟ ଲୋକରେ ୨୭ଥର ଚତୁର୍ଯୁଗ ବିତି ଯାଇଛି । ମହାରାଜ ! ଏ କାଳର ଗତି ଅବାରିତ ଅଟେ । ତାହା କାହାରିକୁ ପ୍ରତୀକ୍ଷା କରେ ନାହିଁ । ପ୍ରାଣୀ ପ୍ରମତ୍ତ ହୋଇ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ରହେ । କିନ୍ତୁ କାଳ ଅପ୍ରମତ୍ତ ଭାବରେ ନିଜର କାର୍ଯ୍ୟ ସମ୍ପାଦନ କରିଚାଲେ । ମୋତେ ବ୍ରହ୍ମା ଅଜ୍ଞା

ଦେଲେ ଯେ ମୁଁ ମୋର ଏହି କନ୍ୟାକୁ ଆପଣଙ୍କ ସହିତ ବିବାହ ଦେବି । ଏବେ ଆପଣଙ୍କ ଯେପରି ଇଚ୍ଛା ସେପରି ଆଜ୍ଞା ଦିଅନ୍ତୁ ।"

ବଳଦେବ କହିଲେ—"ଭାଇ ! ଯେତେବେଳେ ବ୍ରହ୍ମା ଆଜ୍ଞା ଦେଇଛନ୍ତି, ସେପରି ସ୍ଥଳେ ଆମର ଆଉ କହିବାର କଣ ଅଛି ? ତାଙ୍କ ଆଜ୍ଞାକୁ ଅବଜ୍ଞା କରିବାର ସାମର୍ଥ୍ୟ କାହାର ? ତାହାହେଲେ ଠିକ୍ ଅଛି, ବିବାହର ଆୟୋଜନ କରାଯାଉ ।"

ଏହା ଶୁଣିବା ମାତ୍ରେ ଯାଦବମାନେ ହର୍ଷୋତ୍ଫୁଲ୍ଲ ହେଲେ । ଦ୍ୱାରକାକୁ ଆସିବା ପରେ ଏହାଥିଲା ସର୍ବ ପ୍ରଥମ ବିବାହୋତ୍ସବ । ଭଗବାନ୍ ଶ୍ରୀକୃଷ୍ଣଙ୍କର ମଧ୍ୟ ବିବାହ କରିବାପାଇଁ ଅତ୍ୟନ୍ତ ଆଗ୍ରହ ଥିଲା । କିନ୍ତୁ ଯେ ପର୍ଯ୍ୟନ୍ତ ବଡଭାଇଙ୍କର ବିବାହ ନ ହୋଇଛି, ସେ ପର୍ଯ୍ୟନ୍ତ ସାନ ଭାଇ ଅବା ବିବାହ କରନ୍ତେ କିପରି ? ତାଙ୍କୁ ଏଥିପାଇଁ "ପରିବେତ୍ତାପନେ" ପାପ ଲାଗିଥାଆନ୍ତା । ଏବେ ବଳଦେବଙ୍କ ବିବାହ ହେବା ଦ୍ୱାରା ଦାଟ ଖୋଲିଯିବ । ଯଥା ସମୟରେ ଭଗବାନ ବଳଦେବଙ୍କର ବିବାହ ଆୟୋଜନ ଚାଲିଲା । ଚାରି ପାଞ୍ଚଖଣ୍ଡ ଲେଖାଏଁ ଲମ୍ବା ଲମ୍ବା ବାଉଁଶ ଯୋଡ଼ାହୋଇ ମଣ୍ଡପ ପ୍ରସ୍ତୁତ ହେଲା । କାରଣ ଯଦି ୧୨-୧୪ ହାତ ଲେଖାଏଁ ଉଚ୍ଚତା ବିଶିଷ୍ଟ ବାଉଁଶ ଯୋଡ଼ା ହୋଇ ମଣ୍ଡପ ତିଆରି ହେବ, ତେବେ ରେବତୀ ହାତଗଣ୍ଠି ପଡ଼ିଲାବେଳେ ବେଦୀ ଉପରକୁ କିପରି ଯିବା ଆସିବା କରିବେ । ବ୍ରାହ୍ମଣମାନେ ମନ୍ତ୍ର ପାଠକଲେ । ଯେତେବେଳେ ରେବତୀ ବଳଦେବଙ୍କର ହାତଗଣ୍ଠି ପଡ଼ିବାର ସମୟ ହେଲା, ସେତେବେଳେ ସମସ୍ତେ ହସିଲେ । କେହି କେହି କହିବାକୁ ଲାଗିଲେ, ବୋହୂକଣ ଲମ୍ବା ଚୌଡ଼ା ଖଜୁରୀଗଛ ନା କ'ଣ ? ଏବେ ବଳଦେବଙ୍କ ଦେହରେ ପର ଲଗାଇବାକୁ ହେବ, ତେବେ ସେ ଉଡି ଉଡି ଯାଇ ପକ୍ଷୀଙ୍କ ଭଳି ତାଙ୍କ ଶିର ଉପରେ ବସିବେ । ଭଗବାନତ ବଡ଼ ବିନୋଦନ ପ୍ରିୟ, ସେ କହିଲେ ଭାଇନା ! ଭାଉଜଙ୍କ ଶିରେ ହାତ ରଖନ୍ତୁ ତ, କାରଣ ଆପଣ ଆଶୀର୍ବାଦ ତ ପୁଣି କରିବେ । ବଳରାମଙ୍କର କ୍ରୋଧ ଉତ୍ପନ୍ନ ହେବାରୁ ସେ ତାଙ୍କ ହଳକୁ ଟେକିନେଇ ରେବତୀଙ୍କ ବେକରେ ଝୁଲାଇ ଧରିଲେ ଓ ଅଧ ଜୋରରେ ବାଡ଼ରେ ପିଟିଲେ । ଏହାଦ୍ୱାରା ରେବତୀଙ୍କର ଉଚ୍ଚତା ହ୍ରାସ ହୋଇଗଲା । ଏହାପରେ ସେ ମୂଷଳ ଦ୍ୱାରା ଏଭଳି ଭାବରେ ଛେଚି ଛେଚି କରି-ଦେଲେ ଯେ, ସେ ବଳଦେବଙ୍କ କାନ୍ଧ ସମାନ ହୋଇଗଲେ । ଏହା ଦେଖି ସମସ୍ତେ ସାଧୁବାଦ ଦେବାରେ ଲାଗିଲେ । ସେହି ଦିନଠାରୁ ରେବତୀ ଏପରି ଭୟକରି ଗଲେ ଯେ ସେ ବଳଦେବଙ୍କ ସଙ୍ଗରେ ଏକାଠି କେବେ ଠିଆ ହେଲେ ନାହିଁ । ମନ୍ଦିରରେ ସର୍ବତ୍ର ଲକ୍ଷ୍ମୀ-ନାରାୟଣ, ଶିବ-ପାର୍ବତୀ, ରାଧା-କୃଷ୍ଣ ଆଦି ଦେବଦେବୀ ପାଖାପାଖି ଠିଆ ହୋଇ-ଥିବାର ଦେଖାଯାଏ, କିନ୍ତୁ କୌଣସିଠାରେ ରେବତୀଙ୍କ ସହିତ ବଳରାମଙ୍କ ଦର୍ଶନ ମିଳେ

ନାହିଁ । ବଳଦେବ ଯଦି ଗୋଟିଏ କୋଣରେ ଠିଆ ହୋଇ ଥାଆନ୍ତି, ତେବେ ରେବତୀ ଦୂରରେ ଅନ୍ୟତ୍ର ଠିଆ ହୋଇଥିବାର ଦେଖିବାକୁ ମିଳେ ।

ବଳଦେବଙ୍କ ସହିତ ରେବତୀଙ୍କର ବିବାହ ହୋଇଯିବାରୁ କକୁଦ୍ମୀ ଅତ୍ୟନ୍ତ ସୁଖୀ ହେଲେ । ଦ୍ୱାପର ଯୁଗର ପୁରୁଷଙ୍କ ନିସ୍ତେଜ,ବଳହୀନ, ଓ ଯୁଷ୍ଟା, ବିରକ୍ତ ହୁଅଙ୍କ ଭଳି ଦେଖି ସେ ବିସ୍ମିତ ହେଲେ । ସେ ଆଉ ମର୍ତ୍ତ୍ୟଲୋକରେ ଏଭଳି ଖବରେ ରହିବାକୁ ଉଚିତ ମନେ କଲେ ନାହିଁ । ନିଜ କନ୍ୟାକୁ ସ୍ନେହାଶୀର୍ବାଦ କରି ଓ ଭଗବାନ୍ ଶ୍ରୀକୃଷ୍ଣ ଏବଂ ବଳଦେବଙ୍କ ଦ୍ୱାରା ସତ୍କୃତ ହୋଇ ସେ ସେମାନଙ୍କଠାରୁ ବିଦାୟ ନେଇ ଗନ୍ଧମାର୍ଦ୍ଦନ ପର୍ବତସ୍ଥ ବଦ୍ରିକାଶ୍ରମରେ ରହି ତପସ୍ୟା କରିବାକୁ ଚାଲିଗଲେ ଏବଂ ଏ ପର୍ଯ୍ୟନ୍ତ ସେ ଦିବ୍ୟ ରୂପରେ ବଦ୍ରିକାଶ୍ରମ ଆଗକୁ ଥିବା କଳାପ ଗ୍ରାମରେ ରହି ତପସ୍ୟା କରୁ ଅଛନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମୁଁ ଆପଣଙ୍କୁ ଅତି ସଂକ୍ଷେପରେ ମନୁପୁତ୍ର ଶର୍ଯ୍ୟାତିଙ୍କ ବଂଶ ସମ୍ବନ୍ଧରେ କହିଲି, ଏବେ ଆପଣ ମନୁପୁତ୍ର ନଭଗଙ୍କ ବଂଶାନୁଚରିତ ଶ୍ରଦ୍ଧା ସହକାରେ ଶ୍ରବଣ କରନ୍ତୁ ।"

## ଛପ୍‌ପୟ

ପ୍ରକଟ ଭୟେ ଭଗବାନ ଭକ୍ତ ଭୟ ହରିବେ ବାଟେ ।
ଜ୍ୟେଷ୍ଠ ବନ୍ଧୁ ବଳରାମ ଭୟେ ତିନକେ ଅତି ପ୍ୟାରେ ।।
ତିନ ସଁଗ କରୌ ବିବାହ କକୁଦ୍ମୀ ସୁନ୍ନ ହରଷାୟେ ।
ଲଇ ରେବତୀ ସଙ୍ଗ ଦ୍ୱାରକା ଛିନମହଁ ଆୟେ ।।
ହରଷି ନୃପତିନେ ରେବତୀ, ବଳଦାଉକୁଁ ଦୈ ଦଇ ।।
ଖୈଂଚୀ ହଲତେଂ ବଲ ବଢ଼, ଲମ୍ବୀ ଠିଗନୀ କର ଲଇ ।।



# ନଭଗଙ୍କ ବଂଶ ବର୍ଣ୍ଣନ

**ନାଭାଗୋ ନଭଗାପତ୍ୟଂ ଯଂ ତତଂ ଭ୍ରାତରଃ କବିମ୍ ।**
**ଯବିଷ୍ଠଂ ବ୍ୟଭଜନ୍ ଦାୟଂ ବ୍ରହ୍ମଚାରିଣମାଗତମ ॥**

(ଶ୍ରୀ: ଭା: ୯ମ ସ୍କନ୍ଧ, ୪ର୍ଥ: ଅଧ୍ୟାୟ, ୧ମ ଶ୍ଳୋକ)

## ଛପ୍ପୟ

ମନୁଙ୍କେ ଇକ ସୁତ ନଭଗ ଭୟେ ବୈ ଇ ତନକେ ସୁତ ।
ତିନମହଁ ଇକ ନାଭଗ ବେଦବିଦ୍ ପଣ୍ଡିତ ଗୁନଯୁତ ॥
ପଢ଼ନ ଗୟେ ଘର ବନ୍ଧୁ କରେ୍ୟା ପୀଛେ ବଟବାରୋ ।
ଲୌଟି କହ୍ୟୋ ନାଭଗ କହାଁ ହୈ ଭାଗ ହମାରୋ ॥
ବନ୍ଧୁ କହେଂ—ନାଭଗ ତବ, ପିତା ଭାଗ ତୁମ୍ହରେ ରହେ ॥
କରି ପ୍ରଣାମ ନାଭଗନେ, ବନ୍ଧୁ ବଚନ ପିତୁତେଂ କହେ ॥

ଅନେକ ଲୋକ ଚିନ୍ତା କରନ୍ତି ଯେ କଳିଯୁଗରେ କେବଳ ଅଧର୍ମ, ଅନ୍ୟାୟ, ଅନାଚାର, କଳହ, ଚୋରି, ଧୂର୍ତ୍ତତା, ବାକ୍‌ଛଳତା, ବ୍ୟଭିଚାର, ପାପ, ଲୋଭ ଓ ଅନ୍ୟ ସମସ୍ତ ଦୁର୍ଗୁଣ ଦେଖାଯାଏ । ସତ୍ୟ ଯୁଗରେ ଏହା ଆଦୌ ନଥିଲା ବୋଲି କହି ହେବ ନାହିଁ । ଏହି ସୃଷ୍ଟିରେ ଦୋଷ ଗୁଣ ମିଶ୍ରିତ ହୋଇ ଅଛି । ପାପ-ପୁଣ୍ୟ, ଧର୍ମ-ଅଧର୍ମ, ସୁଗୁଣ-ଦୁର୍ଗୁଣ, ଭଲ-ମନ୍ଦ ଆଦି ଦ୍ୱନ୍ଦ ସନାତନ । କେବଳ ଏତିକି ମାତ୍ର ପାର୍ଥକ୍ୟ ଯେ, ସତ୍ୟ ଯୁଗ ଆଦି ଧର୍ମ ପ୍ରଧାନ ଯୁଗରେ ଏହା ନ୍ୟୂନରୁ ନ୍ୟୂନତର ହୋଇ କିଞ୍ଚିତ ଭାବରେ ରହି ଥିଲା । କଳି ଯୁଗ ଭଳି ଅଧର୍ମ ପ୍ରଧାନ ଯୁଗରେ ଏହାର ପ୍ରାବଲ୍ୟ ଦେଖା-ଦେବା ସ୍ୱାଭାବିକ । ଧର୍ମ ଅଧର୍ମ ଉଭୟଙ୍କୁ ହିଁ ଆମ୍ଭେମାନେ ଆମ ପୂର୍ବ ପୁରୁଷଙ୍କଠାରୁ ଶିକ୍ଷା କରିଥାଉ । ପ୍ରଥମରୁ ହିଁ ମନୁଷ୍ୟ ଛନ୍ଦ କପଟ କରି ନିଜ ଭାଇଙ୍କ ଭାଗ ଅପହରଣ କରୁଥିଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମନୁପୁତ୍ର ନଭଗଙ୍କର କେତେକ ପୁତ୍ର ଥିଲେ । ଯେମାନଙ୍କ ମଧ୍ୟରୁ ଜଣକର ନାମ ନାଭାଗ ଥିଲା । ସେ ଅତ୍ୟନ୍ତ ବୁଦ୍ଧିମାନ୍,

ଜ୍ଞାନୀ ଓ ପିତୃଭକ୍ତ ଥିଲେ । ଅନ୍ୟାନ୍ୟ ଭାଇମାନେ ସାଧାରଣ ଲୋକଙ୍କ ଭଳି ସାଂସାରିକ ବିଚାରକ ଥିଲେ । ସମସ୍ତ ଗୁରୁକୁଳରେ ରହି ବିଦ୍ୟାଧ୍ୟୟନ କରି କାଛୁନ୍ଦନ ପରେ ଫେରି ଆସିଲେ । କିନ୍ତୁ ନାଭାଗ ବହୁଦିନ ପର୍ଯ୍ୟନ୍ତ ପାଠ ପଢ଼ାରେ ମଜ୍ଜିରହିଲେ । ତାଙ୍କର ଅନ୍ୟ ଭାଇମାନେ ଆସି ରାଜ୍ୟର ସମସ୍ତ ଅଞ୍ଚଳ, ଧନ, ଧାନ୍ୟ, ଗୃହ ଆଦି ପରସ୍ପର ମଧ୍ୟରେ ବାଣ୍ଟି ନେଲେ । ନାଭାଗଙ୍କ ପାଇଁ କିଛୁ ହେଲେ ରଖିଲେ ନାହିଁ ।

କିଛୁକାଳ ପରେ ନାଭାଗ ଗୁରୁକୁଳ ଆଶ୍ରମରୁ ପ୍ରତ୍ୟାବର୍ତ୍ତନ କଲେ । ଫେରି ଆସି ସେ ନିଜର ଭାଇମାନଙ୍କୁ ଅତ୍ୟନ୍ତ ସୁଖରେ ରାଜ୍ୟ ଭୋଗ କରୁଥିବାର ଦେଖିଲେ । ପ୍ରତ୍ୟେକଙ୍କର ଘର ବୈଭବଶାଳୀ ଥିଲା । ପିତା ନଭଗ ଏକାନ୍ତରେ ଭଜନ କରୁଥିଲେ । ନାଭାଗ ନିଜ ଭାଇମାନଙ୍କୁ କହିଲେ—ଭ୍ରାତୃଗଣ ! ମୁଁ ମଧ୍ୟ ଆପଣ ମାନଙ୍କର ଭାଇ, ରାଜ୍ୟରେ, ଧନ ରତ୍ନରେ ମୋର ମଧ୍ୟ ଭାଗ ଅଛି । ତେବେ ମୋର ଭାଗ କାହିଁ ? ମୋ ଭାଗରେ କେଉଁ ଅଞ୍ଚଳ ପଡ଼ିଲା ?"

ଏ ଭାଇମାନେ ତ ନାଭାଗଙ୍କ ପାଇଁ କୌଣସି ଭାଗ ରଖି ନଥିଲେ । ତେଣୁ ସେମାନେ ଭାବିଚିନ୍ତି କହିଲେ—"ଦେଖ, ଭାଇ ! ସମ୍ପତ୍ତିକୁ ଚଳ ସମ୍ପତ୍ତି ଓ ଭୂମି, ଘର, ବାଡ଼ି ବଗିଚା ଆଦିକୁ ଅଚଳ ସମ୍ପତ୍ତି ବୋଲି କୁହାଯାଏ । ଏହା ବ୍ୟତୀତ ଚୈତନ୍ୟ ସମ୍ପତ୍ତି ମଧ୍ୟ ରହିଛି । ମାତା, ପିତା ଏମାନେ ମଧ୍ୟ ପୁତ୍ରମାନଙ୍କର ସର୍ବଶ୍ରେଷ୍ଠ ସମ୍ପତ୍ତି । ଏଣୁ ଆମ୍ଭେମାନେ ତୁମର ଭାଗ ସ୍ୱରୂପ ପିତାଙ୍କୁ ରଖିଛୁ ।"

ନାଭାଗ କହିଲେ—"ଖୁବ୍ ଭଲ କଥା । ଏହା ମୋର ସୌଭାଗ୍ୟ ଯେ ମୋ ଭାଗରେ ପିତା ଆସିଛନ୍ତି । ମୁଁ ଏବେ ଯାଉଛି ତାଙ୍କ ଆଶ୍ରୟରେ ରହିବି ।" ଏହା କହି ସେ ପିତାଙ୍କ ନିକଟକୁ ଗଲେ । ପିତାଙ୍କ ଚରଣରେ ପ୍ରଣାମ କରି ପାଖରେ ବସି ପଡ଼ିଲେ । ପିତା ତାଙ୍କୁ କୁଶଳ ପ୍ରଶ୍ନ କଲେ । ଆହୁରି ମଧ୍ୟ ପଚାରିଲେ ଯେ, ବିଦ୍ୟା ସମାପ୍ତ କରି ସମାବର୍ତ୍ତନ ସଂସ୍କାର କରାଇ ତୁମେ ବିବାହ କଲଣି ନା ନାହିଁ ? ତୁମକୁ ରାଜ୍ୟର କେଉଁ ଅଞ୍ଚଳ ମିଳିଛି ?"

ନାଭାଗ କହିଲେ – "ପିତଃ ! ମୁଁ ଏ ପର୍ଯ୍ୟନ୍ତ ବିବାହ କରି ନାହିଁ । ମୋର ଭାଇମାନେ ମୋତେ କହିଲେ ଯେ, ଆମ୍ଭେମାନେ ତୁମ ଭାଗରେ ପିତାଙ୍କୁ ରଖିଛୁ । ତେଣୁ ମୁଁ ଏଠାରେ ଆପଣଙ୍କ ଚରଣରେ ଆଶ୍ରାକରି ଆପଣଙ୍କର ସେବା କରିବି ।"

ଏହା ଶୁଣି ମହାରାଜ ନଭ ହସିକରି କହିଲେ—"ବାବୁ ! ସେ ଧୂର୍ତ୍ତଗଣ ତୋ ସହିତ କପଟ ବ୍ୟବହାର କରିଛନ୍ତି । ତୋତେ ଠକିବା ପାଇଁ ସେମାନେ ଏ ପ୍ରକାର ଛଳନା ପୂର୍ଣ୍ଣ କଥା କହି ଅଛନ୍ତି । ସମ୍ପତ୍ତି ତାହାକୁ କହନ୍ତି, ଯାହା ଦ୍ୱାରା ମନୁଷ୍ୟ ଜୀବିକା ନିର୍ବାହ କରେ । ମୁଁ ତ ବୃଦ୍ଧ ଲୋକ, ତୁମ ଜୀବନ ନିର୍ବାହରେ ମୁଁ

କିପରି ସାହାଯ୍ୟ କରି ପାରିବ ? ପରନ୍ତୁ ତୁମକୁ ହିଁ ମୋ ଦାୟିତ୍ୱ ବହନ କରି ସେବା କରିବାକୁ ପଡ଼ିବ । ଏଣେ ତେଣେ ପରିଶ୍ରମ କରି ମୋ ପାଇଁ ଖାଦ୍ୟପେୟ ଯୋଗାଡ଼ କରିବାକୁ ପଡ଼ିବ । ତେଣୁ ତୁମେ ସେମାନଙ୍କ ପାଖକୁ ଯାଇ କଡ଼ାକଡ଼ି ଭାବେ ତୁମର ଭାଗ ମାଗ । ସିଧା ଆଙ୍ଗୁଠିରେ ଘିଅ ବାହାରେ ନାହିଁ । ଆଙ୍ଗୁଠିକୁ ବଙ୍କା ତେଢ଼ା କଲେ ଯାଇ ପଡ଼ିରୁ ଘିଅ ବାହାରେ । ଦ୍ୱିତୀୟାର ଚନ୍ଦ୍ରମା ଦେଖିବାକୁ ବଙ୍କା, ଏଥିପାଇଁ ତାଙ୍କୁ ସମସ୍ତେ ପୂଜା କରନ୍ତି ଓ ନମସ୍କାର କରନ୍ତି । ତୁମେ ସେ କପଟୀ ମାନଙ୍କ କଥା ଆଦୌ ଶୁଣ ନାହିଁ ।"

ନାଭାଗ କହିଲେ—"ପିତଃ ! ସେମାନେ ଯେତେବେଳେ ମୋତେ ଆପଣଙ୍କୁ ପ୍ରଦାନ କରିଛନ୍ତି, ସେତେବେଳେ ମୁଁ ତ ଆପଣଙ୍କୁ ମୋର ସର୍ବଶ୍ରେଷ୍ଠ ସମ୍ପତ୍ତି ବୋଲି ସ୍ୱୀକାର କରୁଛି । ଏ କଙ୍କର, ପଥର, ସୁନା-ରୁପା ଆଦି ନଗଣ୍ୟ ଦ୍ରବ୍ୟ ପାଇଁ ମୁଁ ମୋର ସହୋଦର ଭାଇଙ୍କ ସଙ୍ଗରେ ଯୁଦ୍ଧ କରିବାକୁ ଚାହୁଁ ନାହିଁ । ମୋ ଭାଗ୍ୟରେ ଥିଲେ ସେମାନେ ନ ଦେଲେମଧ୍ୟ ବହୁତ କିଛି ମିଳିଯିବ । ମୁଁ ତ ବର୍ତ୍ତମାନ କେବଳ ଆପଣଙ୍କର ସେବା କରିବ । ଆପଣଙ୍କ ଆଶୀର୍ବାଦ ଠାରୁ ବଳି ସଂସାରରେ କେଉଁ ସମ୍ପତ୍ତି ବଡ଼ ହୋଇପାରେ । ମୁଁ କ୍ଷତ୍ରିୟ ସନ୍ତାନ, ଜୀବନଧାରଣ ପାଇଁ ଭଗବାନ୍ ତ ଅଛନ୍ତି । ସେ ସମସ୍ତ ବ୍ୟବସ୍ଥା କରୁ ଅଛନ୍ତି ।"

ନାଭାଗଙ୍କର ସତ୍ୟ ଧର୍ମ ଉପରେ ଏପରି ବିଶ୍ୱାସ ଦେଖି ପିତା ତାଙ୍କଉପରେ ଅତ୍ୟନ୍ତ ପ୍ରସନ୍ନ ହେଲେ ଓ କହିଲେ—"ଦେଖ ବାବୁ ! ମୋ ପାଖରେ ଧନ, ରତ୍ନ, କିଛି ନାହିଁ; ମୁଁ ରାଜ୍ୟ ଛାଡ଼ିଦେଇଛି, କିନ୍ତୁ ମୁଁ ତୁମକୁ ଧନ ପ୍ରାପ୍ତିର ଏକ ଉପାୟ ବତାଇ ଦେବି । ଏଠାରୁ ଅତି ନିକଟରେ ଅଙ୍ଗିରସ ଗୋତ୍ରୀୟ ଅନେକ ବ୍ରାହ୍ମଣ ବହୁ ଦ୍ରବ୍ୟ ଯୋଗାଡ଼କରି ଗୋଟିଏ ବିରାଟ ଯଜ୍ଞର ଆୟୋଜନ କରୁଛନ୍ତି । ସେହି ଯଜ୍ଞର ଷଷ୍ଠ ଦିବସର କୃତ୍ୟ ସେମାନେ ଭୁଲି ଯାଇଛନ୍ତି । ଯଜ୍ଞର ବିଧି ବିଧାନରେ ଯଦି ସାମାନ୍ୟ ତ୍ରୁଟିହୁଏ, ତେବେ ସମସ୍ତ ନିଷ୍ଫଳ ହୋଇଯାଏ । ଯଦି ସେମାନଙ୍କର ଯଜ୍ଞ ଏହିଭଳି ଅବିଧିରେ ହୁଏ, ତାହାହେଲେ ପରିଶ୍ରମ ନିରର୍ଥକ ହୋଇଯିବ । ଯଜ୍ଞରେ ଯେତେ ଦ୍ରବ୍ୟ ଲାଗିଛି,ସେ ସମସ୍ତ ବ୍ୟୟ ବ୍ୟର୍ଥ ହେବ । କେବଳ ସେତିକି ନୁହେଁ,ରାକ୍ଷସ ପ୍ରକୃତିରେ ଲୋକମାନେ ଯଜ୍ଞରେ ଛିଦ୍ର ଦେଖିଥାଆନ୍ତି । ବିଧିହୀନ ଯଜ୍ଞର କର୍ତ୍ତାର ଶୀଘ୍ର ବିନାଶ ଘଟେ । ସେମାନେ ବିଶେଷ କିଛି ଭୁଲ କରିନାହାନ୍ତି, ବୈଶ୍ୱଦେବ ସମ୍ବନ୍ଧୀୟ ଦୁଇଟି ସୂକ୍ତ ସେମାନଙ୍କୁ ଷଷ୍ଠଦିନ ହିଁ ବତାଇ ଦେବାକୁ ହେବ । ଏହାଦ୍ୱାରା ସେମାନଙ୍କର ଯଜ୍ଞ ପୂର୍ଣ୍ଣ ହୋଇଯିବ । ଯଜ୍ଞ ଉଦ୍‌ଯାପନ ହେବାମାତ୍ରେ, ସେମାନଙ୍କ ପାଖରେ ଯେତେଧନ ରହିଛି, ସେ ସମସ୍ତ ତୁମକୁ ଦେଇ ସ୍ୱର୍ଗଯାତ୍ରା କରିବେ । ତୁମେ ସେହି ଅଜସ୍ର ଧନ ଦୌଲତ ଲାଭକରି ଧନବାନ୍ ହୋଇଯିବ ।"

ନାଭଗ କହିଲେ—"ପିତଃ ! ବ୍ରାହ୍ମଣଙ୍କ ଧନକୁ ଦାନ ସ୍ୱରୂପ ଗ୍ରହଣ କରିବା ତ ଅତ୍ୟନ୍ତ ଦୋଷାବହ ।"

ପିତା କହିଲେ—"ବାବୁ ! ତୁମେ ଦାନ କେଉଁଠି ନେଉଛ ? ଏହା ତ ଦକ୍ଷିଣା । ବୃତ୍ତିହୀନ ବିଦ୍ୱାନ ଋଷିମାନଙ୍କ ପାଇଁ ଯଜ୍ଞରୁ ଦକ୍ଷିଣା ନେବାର ଅଧିକାର ଅଛି । ଦକ୍ଷିଣା ଦାନ ନୁହେଁ । ଏହା ପାରଶ୍ରମିକରେ ଗଣାହୁଏ । ଯଦି ତୁମେ ସେମାନଙ୍କୁ ଏହି ଦୁଇ ସୂକ୍ତ ନ ବତାଇବ, ତେବେ ସେମାନଙ୍କର ସମସ୍ତ ଯଜ୍ଞ ବ୍ୟର୍ଥ ହୋଇଯିବ । ଯଦି ତୁମେ ତାଙ୍କୁ ବତାଇ ଦିଅ, ତାହାହେଲେ ତୁମ ଯୋଗେ ସେମାନଙ୍କର ସମସ୍ତ ଶ୍ରମ ସାର୍ଥକ ହେବ । ଧନ ବ୍ୟୟ ସାର୍ଥକ ହେବ । ତେଣୁ ତୁମେ ଏ ବିଷୟରେ ସନ୍ଦେହ କରିବାର କିଛି ନାହିଁ ।"

ପିତାଙ୍କଠାରୁ ଏହିକଥା ଶୁଣି ନାଭଗ ସେହି ଅଙ୍ଗିରସ ଗୋତ୍ରୀୟ-ବ୍ରାହ୍ମଣଙ୍କ ନିକଟକୁ ଗଲେ । ସେଠାକୁ ଯାଇ ସେ ବ୍ରାହ୍ମଣମାନଙ୍କ ଯଜ୍ଞରେ ସତ୍କାର ପୂର୍ବକ ରହିବାକୁ ଲାଗିଲେ । ଷଷ୍ଠ ଦିନ ଆଗତ ହେବାରୁ ସେ କହିଲେ, "ପଣ୍ଡିତଗଣ ! ଆପଣମାନେ ଏହି ଷଷ୍ଠ ଦିନର କର୍ମରେ ମୋହଗ୍ରସ୍ତ ହୋଇ ଯାଇଛନ୍ତି । ଏଥିରେ ବୈଶ୍ୱଦେବ ସମ୍ବନ୍ଧୀୟ ସୂକ୍ତ ପଢ଼ାଯାଏ । ଏହା ସମୂର ବିଧିବିଧାନ ପୂର୍ବକ ପଢ଼ାଗଲେ ହିଁ ଆପଣମାନଙ୍କର ଯଜ୍ଞ ସମ୍ପୂର୍ଣ୍ଣ ହେବ ।"

ବ୍ରାହ୍ମଣମାନେ ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ—"ରାଜନ୍ ! ଆପଣ ଆମ୍ଭମାନଙ୍କର ବଡ଼ ଉପକାର କଲେ । ଆମ୍ଭେମାନେ ବିଧିରୂପ ଅଗାଧ ଜଳରେ ବୁଡି ରହିଥିଲୁ । ଆପଣ ନୌକା ରୂପରେ ଏଠାରେ ଉପସ୍ଥିତ ହୋଇ ଆମ୍ଭମାନଙ୍କୁ ଉଦ୍ଧାର କଲେ । ବିଧିର ଦୋଷ ଦୂର ହେବା ମାତ୍ରେ ଆମ୍ଭେମାନେ ଏହି ଯଜ୍ଞକୁ ଉଦ୍‌ଯାପନ କରିବୁ ଓ ସିଧା ସ୍ୱର୍ଗଯାତ୍ରା କରିବୁ । ଆପଣଙ୍କ କୃପାରୁ ଆମର ଏହି ଯଜ୍ଞ ସମ୍ପୂର୍ଣ୍ଣ ହେବ । ଏଣୁ ଯଜ୍ଞରେ ଯେଉଁ ସବୁ ଦ୍ରବ୍ୟ ଅବଶିଷ୍ଟ ରହିବ ସେ ସମସ୍ତ ଆପଣଙ୍କର ହେବ । ଏହା ହିଁ ଆମ୍ଭମାନଙ୍କର ଇଚ୍ଛା । କାରଣ ଯେ ପର୍ଯ୍ୟନ୍ତ ଯଜ୍ଞ ପୂର୍ଣ୍ଣ କରାଇଥିବା ବ୍ୟକ୍ତିଙ୍କୁ ଦକ୍ଷିଣା ଦିଆ ନ ଯାଇଥାଏ, ସେ ପର୍ଯ୍ୟନ୍ତ ଯଜ୍ଞ ପୂର୍ଣ୍ଣ ହୋଇଥିଲେ ବି ଅପୂର୍ଣ୍ଣ ବୋଲି ଧରାଯାଏ । ଏଣୁ ଆମ୍ଭେମାନେ ଯଜ୍ଞର ସମସ୍ତ ଦ୍ରବ୍ୟ ଆପଣଙ୍କୁ ସମର୍ପଣ କରୁଅଛୁ ।"

ନାଭଗ କହିଲେ—"ପଣ୍ଡିତ ଗଣ ! ଆପଣମାନଙ୍କର ଯେପରି ଆଜ୍ଞା ହେବ, ମୁଁ ସେପରି କରିବି । ମୋର ପୂଜ୍ୟ ପିତୃଦେବ ଏଥିପାଇଁ ମୋତେ ଅନୁମତି ଦେଇଛନ୍ତି ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ନାଭଗଙ୍କର ସ୍ୱୀକୃତି ଲାଭକରି ସମସ୍ତ ବ୍ରାହ୍ମଣ ଅତ୍ୟନ୍ତ ଆନନ୍ଦିତ ହେଲେ ଓ ନିଜର ଯଜ୍ଞକୁ ପୂର୍ଣ୍ଣକରି ପ୍ରତ୍ୟେକେ ସ୍ୱର୍ଗ ଯାତ୍ରା କଲେ ।"

ବ୍ରାହ୍ମଣମାନଙ୍କର ଏହି ଯଜ୍ଞ ଖୁବ୍ ବଡ଼ଥିଲା । ବଡ଼ ବଡ଼ ସୁବର୍ଣ୍ଣର ପାତ୍ର, ଅନେକାନେକ ଦ୍ରବ୍ୟ ଓ ବହୁମୂଲ୍ୟ ସାମଗ୍ରୀ ସେଠାରେ ଥିଲା । ନାଭାଗ ଯେତେବେଳେ ସେ ସମସ୍ତ ନେବାକୁ ବସିଲେ, ସେତେବେଳେ ସେ ଦେଖିଲେ ଯେ ସେଠାରେ ଏକ ବିରାଟ ତେଜସ୍ୱୀ କୃଷ୍ଣବର୍ଣ୍ଣର ପୁରୁଷ ନିଜ ତେଜରେ ଦଶଦିଗ ଆଲୋକିତ କରି ଖୁବ୍ ଶୀଘ୍ର ସେଠାକୁ ଧାଇଁ ଆସୁଛନ୍ତି । ନାଭାଗ ସେହି ଅଲୌକିକ ଦେବତାଙ୍କୁ ଦର୍ଶନ କରି ଭୟରେ ଥରିବାକୁ ଲାଗିଲେ । ସେହି ପରମ ତେଜସ୍ୱୀ ପୁରୁଷ ସେଠାକୁ ଆସି ଚିତ୍କାର କରି କହିଲେ—"ସାବଧାନ୍, ସାବଧାନ୍, ଯଜ୍ଞାବଶିଷ୍ଟ ଯେ କୌଣସି ସାମଗ୍ରୀରେ ତୁମେ ହାତ ଦିଅ ନାହିଁ । ଏହି ଯଜ୍ଞଭୂମିରେ ବଳିଥିବା ସମସ୍ତ ଦ୍ରବ୍ୟ ମୋର ପ୍ରାପ୍ୟ ।"

ସେହି କୃଷ୍ଣବର୍ଣ୍ଣ ପୁରୁଷଙ୍କର ଏ ପ୍ରକାର ବଚନ ଶୁଣି ନାଭାଗ ଦୃଢ଼ତା ସହକାରେ କହିଲେ—"ମହାଶୟ ! ଏହା ଆପଣଙ୍କର ବୋଲି କିପରି କହୁଛନ୍ତି ? ସ୍ୱର୍ଗଯାତ୍ରା କାଳରେ ବ୍ରାହ୍ମଣଗଣ ତ ମୋତେ ଏହି ସମସ୍ତ ସାମଗ୍ରୀ ପ୍ରଦାନ କରି ଗଲେ ।"

ସେହି କୃଷ୍ଣବର୍ଣ୍ଣ ପୁରୁଷ କହିଲେ—"ଅନ୍ୟର ପ୍ରାପ୍ୟ ବସ୍ତୁକୁ ଯଦି ଅପର କୌଣସି ଲୋକ କ ହାତକୁ ଦେଇଯାଏ, ତେବେ ସେହି ଦାନ ଅବୈଧ । ଏହିସବୁ ଦ୍ରବ୍ୟର ଅଧିକାରୀ ହେଉଛି ମୁଁ । ବ୍ରାହ୍ମଣମାନେ ଏହା ତୁମକୁ ଦେବାକୁ କିଏ ?" ନାଭାଗ କହିଲେ—"ବୈଧ ଅବୈଧର ନିର୍ଣ୍ଣୟ ରାଜା କରନ୍ତି । ମୋର ପିତା ମୋର ଆଜ୍ଞା ଦେଇଥିଲେ ଯେ ସୂକ୍ତ ବଢ଼ାଇବା ଦ୍ୱାରା ବ୍ରାହ୍ମଣମାନେ ମୋତେ ଯଜ୍ଞାବଶିଷ୍ଟ ସମସ୍ତ ଦ୍ରବ୍ୟ ଦେଇ ସ୍ୱର୍ଗଯାତ୍ରା କରିବେ । ପ୍ରଥମତଃ ମୋର ପିତା ମୋତେ ଏହି ବ୍ୟବସ୍ଥା ଦେଇଥିଲେ । ପୁନଶ୍ଚ ବେଦଜ୍ଞ ବ୍ରାହ୍ମଣଗଣ ନିଜେ ମଧ୍ୟ ମୋତେ ଏ ସମସ୍ତ ସାମଗ୍ରୀ ପ୍ରଦାନ କରିଗଲେ । ତେଣୁ ଏହି ଦୁଇଟି କାରଣରୁ ମୁଁ ଏହିସବୁ ଦ୍ରବ୍ୟର ଅଧିକାରୀ ଅଟେ । ପୁନଶ୍ଚ ଏ ସମୟରେ ଆପଣଙ୍କର ଏ ଦ୍ରବ୍ୟ ଉପରେ ଅଧିକାର କରିବା ଅନୁଚିତ୍ । ଆପଣ ଅଯଥା ଅନଧିକାର ଚେଷ୍ଟା କରୁ ଅଛନ୍ତି ।"

ଏହା ଶୁଣି ସେହି କୃଷ୍ଣବର୍ଣ୍ଣର ତେଜସ୍ୱୀ ପୁରୁଷ କହିଲେ—"ଆଚ୍ଛା ଠିକ୍ ଅଛି, ତୁମ ଆମ ମଧ୍ୟରେ ଉପୁଜିଥିବା ଏହି ବିବାଦର ନିର୍ଣ୍ଣୟକାରୀ ରୂପେ ତୁମର ପିତା ହିଁ ଉପଯୁକ୍ତ ବ୍ୟକ୍ତି ଅଟନ୍ତି । ତୁମେ ଯାଇ ତୁମ ପିତାଙ୍କୁ ପଚାରି ଆସ ଯେ ଏହି ପ୍ରକାରର ଜଣେ ପୁରୁଷ ଯଜ୍ଞାବଶିଷ୍ଟ ଦ୍ରବ୍ୟ ଉପରେ ନିଜର ଅଧିକାର ବୋଲି କହୁ ଅଛନ୍ତି । ଏ କଥାଶୁଣିଲେ ତୁମ ପିତା ଯାହା ନିର୍ଣ୍ଣୟ କରିବେ, ତାହା ହିଁ ମୁଁ ସ୍ୱୀକାର କରିବି ।"

ଏହା ଶୁଣି ନାଭାଗ ନିଜର ପିତାଙ୍କ ନିକଟକୁ ଯାଇ ତାଙ୍କୁ ଆମୂଳଚୂଳ ସମସ୍ତ ଘଟଣା କହିଲେ । ସମସ୍ତ କଥା ଶୁଣିସାରି ସେ ନାଭାଗକୁ କହିଲେ "ବାବୁ !

ମୋର ବଡ଼ ଭୁଲ ହୋଇଗଲା । ସେ ତ ସ୍ୱୟଂ ରୁଦ୍ର ଭଗବାନ୍ । ଦକ୍ଷ ଯଜ୍ଞରେ ଯେତେବେଳେ ରୁଦ୍ରଙ୍କର ଭାଗ ରହି ନଥିଲା, ସେତେବେଳେ ରୁଦ୍ରଙ୍କ ରୁଦ୍ରଗଣ ଆସି ଯଜ୍ଞକୁ ବିଧ୍ୱଂସ କରି ଦେଇଥିଲେ । ତେଣୁ ଦେବତା ଓ ଋଷିମାନେ ସେତେବେଳେ ନିର୍ଣ୍ଣୟ କରିଥିଲେ ଯେ ଆଜିଠାରୁ ଯଜ୍ଞରେ ଯାହା କିଛି ଅବଶିଷ୍ଟ ଦ୍ରବ୍ୟ ରହିବ, ସେ ସମସ୍ତ ରୁଦ୍ର ଭଗବାନଙ୍କର ପ୍ରାପ୍ୟ ହେବ । ଏଣୁ ନ୍ୟାୟତଃ ସେହି ଯଜ୍ଞାବଶିଷ୍ଟ ସମସ୍ତ ସାମଗ୍ରୀର ଅଧିକାରୀ ସର୍ବେଶ୍ୱର ଶ୍ରୀ ଶିବ ଅଟନ୍ତି । କେବଳ ଅବଶିଷ୍ଟ ସାମଗ୍ରୀ କାହିଁକି, ସେ ତ ସ୍ୱୟଂ ଯଜ୍ଞର ଅଧୀଶ୍ୱର ଅଟନ୍ତି । ସେ ସମସ୍ତଙ୍କର ଏକମାତ୍ର ସ୍ୱାମୀ । ସେ ବିଶ୍ୱନାଥ ଚରାଚରର ଈଶ୍ୱର ଅଟନ୍ତି । ତାଙ୍କ ସହିତ ତୁମେ ବାଦ ବିବାଦ କର ନାହିଁ । ତାଙ୍କୁ ସମସ୍ତ ସମର୍ପଣ କରିଦିଅ ।"

ପିତାଙ୍କର ଏ ପ୍ରକାର ଆଜ୍ଞା ପାଇ ନାଭଗ ପୁନଶ୍ଚ ସେଠାକୁ ଗଲେ ଓ ହାତ ଯୋଡ଼ି ରୁଦ୍ର ଭଗବାନଙ୍କୁ କହିଲେ—"ଭଗବାନ୍ ! ମୁଁ ଆପଣଙ୍କ ଚରଣରେ ପ୍ରଣାମ କରୁଅଛି । ମୋର ଅପରାଧ କ୍ଷମା କରନ୍ତୁ । ମୋର ପିତା କହିଲେ ଯେ ସମସ୍ତ ବସ୍ତୁ ଶିବଙ୍କର । ପ୍ରଭୋ ! ଏ ଅକିଞ୍ଚନ ସେବକ ଆପଣଙ୍କ ଚରଣରେ ନିଜକୁ ସମର୍ପଣ କରୁଅଛି । ଆପଣ ମୋର ଅନୁଚିତ ଆଗ୍ରହ ଜନିତ ଅପରାଧକୁ କ୍ଷମା କରନ୍ତୁ ଓ ମୋତେ ଆପଣାର କରି ନିଅନ୍ତୁ ।"

ଏହାଶୁଣି ଆଶୁତୋଷ ଭଗବାନ୍ ଭବାନୀପତି ନାଭଗଙ୍କ ଉପରେ ପରମ ସନ୍ତୋଷ ହେଲେ ଓ ପ୍ରସନ୍ନ ହୋଇ କହିଲେ—"ବତ୍ସ ! ତୁମେ ଧର୍ମାତ୍ମା ଅଟ । ତୁମର ଧର୍ମ ଅବିଚଳ । ତୁମ ପିତା ମଧ୍ୟ ପୁତ୍ରର ପକ୍ଷପାତ ନ କରି ଧର୍ମ ପୂର୍ବକ ସମସ୍ୟାର ସମାଧାନ କରିଦେଲେ । ତୁମେ ମଧ୍ୟ ଲୋଭ ନ କରି ସମସ୍ତ କଥା ମୋ ଆଗରେ ସତ୍ୟ ସତ୍ୟ କହିଗଲ । ଏଣୁ ମୁଁ ତୁମକୁ ସନାତନ ବ୍ରହ୍ମଜ୍ଞାନର ଉପଦେଶ ଦେଉଅଛି । ଏହି ଜ୍ଞାନ ଲାଭକରି ତୁମେ କୃତାର୍ଥ ହୋଇଯିବ । ଏ ସମସ୍ତ ଧନ ସମ୍ପଦକୁ ତୁମେ ନେଇ ଯାଅ । ମୁଁ ତୁମକୁ ଆଜ୍ଞାଦେଲି ।"

ଭଗବାନ ରୁଦ୍ର ଯେତେବେଳେ ପ୍ରସନ୍ନ ହୋଇ ଏହା କହିଲେ ଓ ନାଭଗଙ୍କୁ ବ୍ରହ୍ମଜ୍ଞାନ ଉପଦେଶ ଦେଇ ତୁରନ୍ତ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ, ସେତେବେଳେ ନାଭଗ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ସେହି ଧନରାଶିକୁ ନେଇ ପିତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ଏହା ପରେ ସେ ତାଙ୍କର ସମସ୍ତ ଭାଇ ମାନଙ୍କ ଅପେକ୍ଷା ଅଧିକ ଧନୀ ହୋଇଗଲେ । ସେ ସେହି ଧନ ସାହାଯ୍ୟରେ ସୈନ୍ୟ ଏକତ୍ରିତ କଲେ ଓ ବାହୁ ବଳରେ ବିଶାଳ ରାଜ୍ୟ ସ୍ଥାପିତ କରି ଚକ୍ରବର୍ତ୍ତୀ ସମ୍ରାଟ ହୋଇଗଲେ ! ଏହି ନାଭଗଙ୍କର ପୁତ୍ର ମହା ଭାଗବତ ଅମ୍ବରୀଷ ଅଟନ୍ତି । ତାଙ୍କର ଯଶ ଏପର୍ଯ୍ୟନ୍ତ ତ୍ରିଲୋକ ବ୍ୟାପ୍ତ ହୋଇ ରହିଛି । ସେ ବଡ଼ ଶୂର, ବୀର, ଦାନୀ, ଯଶସ୍ୱୀ, ତେଜସ୍ୱୀ, ବ୍ରାହ୍ମଣ ଭକ୍ତ ଓ

ଏକାଦଶୀ ବ୍ରତରେ ନିଷ୍ଠାବାନ୍ ଥିଲେ । ସେ ଏପରି ତେଜସ୍ୱୀ ଓ ଭଗବଦ୍‌ଭକ୍ତ ଥିଲେ ଯେ ରୁଦ୍ରାବତାର ମହାମୁନି ଦୁର୍ବାସାଙ୍କର କେବେହେଲେ ବ୍ୟର୍ଥ ନ ହେଉଥିବା ଅଭିଶାପ ତାଙ୍କ ନିକଟରେ ବ୍ୟର୍ଥ ହୋଇ ଯାଇଥିଲା ।"

ଏହା ଶୁଣି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ମହାରାଜ ପରୀକ୍ଷିତ ପଚାରିଲେ— "ପ୍ରଭୋ ! ମହର୍ଷି ଦୁର୍ବାସା ପରମ ଭାଗବତ ମହାରାଜ ଅମ୍ବରୀଷଙ୍କୁ କାହିଁକି ଶାପ ଦେଇଥିଲେ ଓ ସେହି ଅପ୍ରତିହତ ଶାପ କିପରି ବ୍ୟର୍ଥ ହେଲା ? କୃପା କରି ସେହି ପ୍ରସଙ୍ଗ ଆମ୍ଭଙ୍କୁ କହନ୍ତୁ । ସେହି ପରମ ପ୍ରଭାବଶାଳୀ ମହା ବୁଦ୍ଧିମାନ ରାଜର୍ଷି ଅମ୍ବରୀଷଙ୍କ ପବିତ୍ର ଚରିତ ଶୁଣିବା ପାଇଁ ମୋର ଭାରି ଇଚ୍ଛା ହେଉଛି । ତେଣୁ ଆପଣ ମୋର ଅଭିଳାଷ ପୂର୍ଣ୍ଣ କରନ୍ତୁ ।"

ଏହାଶୁଣି ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଦୁର୍ବାସାଙ୍କ ଦ୍ୱାରା ପ୍ରେରିତ ହୋଇଥିବା ଦୁସ୍ତର ବ୍ରହ୍ମଦଣ୍ଡ ଯେପରି ଭାବରେ ରାଜର୍ଷି ଅମ୍ବରୀଷଙ୍କ ନିକଟରେ ବ୍ୟର୍ଥ ହୋଇଥିଲା, ସେହି ପରମ ପାବନ ଉପାଖ୍ୟାନ ମୁଁ ଆପଣଙ୍କୁ ଶୁଣାଉଛି, ଆପଣ ତାହା ଶ୍ରଦ୍ଧାର ସହିତ ଶୁଣନ୍ତୁ ।"

## ଛପଦୀ

ସୁନ ସୁତ ବଚନ ଉପାୟୀ ନଭଗନେ କହ୍ୟୋ ବତାୟୋ ।
କରେଂ ଯଜ୍ଞ ଅଙ୍ଗିରସ ଷଷ୍ଠଦିନ କୃତ୍ୟ ଭୁଲାୟୋ ॥
ତହେଂ ବତାଓ ଜାୟ ସୁନତ ନୃପ ସୁତ ତହଁ ଆୟେ ।
କୃତ୍ୟ ବାତାୟୋ ଦ୍ୱିଜନ ଦୟୋ ଧନ ସ୍ୱରଗ ସିଧାୟେ ॥
ରୁଦ୍ର ଦ୍ରବ୍ୟ ଅପନୋ କହ୍ୟୋ, ନଭଗ ସମର୍ଥନ ହୂ କର୍‌ୟୋ ॥
ତବ ଅର୍ପିତ ସରବସୁ କର୍‌ୟୋ, ଶିବ ପ୍ରସନ୍ନ ହ୍ୱୈ ବର ଦୟୋ ॥



# ଅମ୍ବରୀଷ ଚରିତ

ଅମ୍ବରୀଷୋ ମହାଭାଗଃ ସପ୍ତଦ୍ୱୀପବତୀଂ ମହୀମ ।
ଅବ୍ୟୟାଂ ଚ ଶ୍ରିୟଂ ଲବ୍ଧ୍ୱା ବିଭବଂ ଚାତୁଲଂ ଭୁବି ।।
ମେନେଽତିଦୁର୍ଲଭଂ ପୁଂସାଂ ସର୍ବଂ ତତ୍ ସ୍ୱପ୍ନ ସଂସ୍ତୁତମ ।
ବିଦ୍ୱାନ୍ ବିଭବ ନିର୍ବାଣଂ ତମୋ ବିଶତି ଯତ୍ପୁମାନ୍ ।।

(ଶ୍ରୀ: ଭା: ୯ ସ୍କ, ୧୫ ଅ, ୧୬ ଶ୍ଳୋକ)

## ଛପ୍ପୟ

ହର ବରତୈଂ ନାଭାଗ ଭୟୋ ଜଗମହଁ ଅତିଜ୍ଞାନୀ ।
ଅମ୍ବରୀଷ ସୁତ ତାସୁ ଯଶସ୍ୱୀ ଦୃଢ଼ବ୍ରତ ଦାନୀ ।।
ସପ୍ତଦୀପକୋ ଅଧିପ ଅତୁଲ ବୈଭବ ସବ ପାୟୋ ।
କିନ୍ତୁ ସ୍ୱପ୍ନ ସମ ସମୁଝି କୃଷ୍ଣ ଚରନନି ଚିତ ଲାୟୋ ।।
ଭୟୋ ଭକ୍ତ ଅତିଶ୍ରେଷ୍ଠ କୀ, ସରସ ମାଧୁରୀ ପାନ କରି ।
ଭଯୀ ଜୀଭ ଯଶ ନାମ କୋ, ନିତ୍ୟ ନିରନ୍ତର ଗାନ କରି ।।

ଯେ ଇହ ଜନ୍ମରେ ଦରିଦ୍ର ହୋଇ ଜନ୍ମଲାଭ କରିଛନ୍ତି ଓ ଯାହାଙ୍କର ଧନ ଓ ସାଂସାରିକ ଭୋଗ ଆଦିରେ କଦାପି ସ୍ପୃହା ଜାତ ହୁଏ ନାହିଁ । ଯେ ସାରା ଜୀବନ ଧନ ଓ ବିଷୟ ଭୋଗରୁ ପୃଥକ୍ ହୋଇ ରହନ୍ତି, ତାଙ୍କ ସମ୍ବନ୍ଧରେ ତ କହିବାର କିଛି ନାହିଁ । ସେହି ପୁରୁଷଙ୍କୁ ପାପ ସ୍ପର୍ଶ କରି ପାରେ ନାହିଁ । କୌଣସି ବିଶେଷ ଆବଶ୍ୟକତା ନେଇ ସେମାନେ ମର୍ତ୍ତ୍ୟ ଲୋକରେ ଜନ୍ମ ଗ୍ରହଣ କରି ଥାଆନ୍ତି । ସେମାନେ ବାସ୍ତବରେ ହିଁ ମହାପୁରୁଷ । ସେମାନଙ୍କର ଅଲୌକିକ ପ୍ରତିଭା । ସେମାନଙ୍କ କଥା ଛାଡ଼ନ୍ତୁ, ଯେଉଁମାନେ ଧନ, ବୈଭବ, ସାଂସାରିକ ସମସ୍ତ ଭୋଗ ସାମଗ୍ରୀ ଭୋଗ କରି ସାରିଥିଅନ୍ତି, ସେମାନଙ୍କ ଆଡ଼େ ଥରେ ଦୃଷ୍ଟିପାତ କଲେ ଦେଖାଯାଏ, ସେମାନଙ୍କ ଭିତରୁ ଅନେକ ସ୍ୱପ୍ନ ଭଳି, ଗନ୍ଧର୍ବ ନଗର ଭଳି ସଂସାରକୁ ଜ୍ଞାନ କରି ସର୍ବଦା କେବଳ

ଭଗବାନଙ୍କ ପରିଚର୍ଯ୍ୟାରେ ହିଁ ନିମଗ୍ନ ରହନ୍ତି । ସେମାନେ ଅତ୍ୟନ୍ତ ଭାଗ୍ୟବାନ୍, ପୁଣ୍ୟାତ୍ମା ଓ ଅଦ୍ୱିତୀୟ ମହାପୁରୁଷ ଅଟନ୍ତି । ସେମାନେ ଭଗବାନଙ୍କର ପରମ ଅନୁଗ୍ରହର ପାତ୍ର । ତାହା ନହେଉ ଥିଲେ, ଧନ ବୈଭବର ମଦ ପ୍ରତ୍ୟେକ ପ୍ରାଣୀଙ୍କୁ ମଦୋନ୍ମତ୍ତ କରି ଦିଅନ୍ତା । ଲୋକମାନେ ସ୍ୱାର୍ଥ ପରମାର୍ଥକୁ ଭୁଲି ବିଷୟର ଗହନ ଅରଣ୍ୟରେ ପଶି ପଥହରା ହୋଇ ଯାଆନ୍ତି । ପୁଣ୍ୟ ଶ୍ଲୋକ ମହାତ୍ମା ଅମ୍ବରୀଷ ପ୍ରାତଃ ସ୍ମରଣୀୟ ସେହି ଭଗବଦ୍ ଭକ୍ତ ମାନଙ୍କ ମଧ୍ୟରେ ଅନ୍ୟତମ । ସେ ଥିଲେ ଜଣେ ଆଦରଣୀୟ ରାଜର୍ଷି ଭକ୍ତ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମୁଁ ଆପଣଙ୍କୁ ମନୁପୁତ୍ର ନଭଗଙ୍କ ପୁତ୍ର ନାଭାଗଙ୍କ ଶିବ ଭକ୍ତି ପ୍ରାପ୍ତି ପରମ ରହସ୍ୟମୟ ଚରିତ ଶୁଣାଇଥିଲି । ଏବେ ଆପଣ ତାଙ୍କ ପୁତ୍ର ପରମ ଭଗବଦ୍‌ଭକ୍ତ ରାଜର୍ଷି ଅମ୍ବରୀଷଙ୍କ ଚରିତ ଶ୍ରବଣ କରନ୍ତୁ ।"

ନାଭାଗ ତନୟ ମହାରାଜ ଅମ୍ବରୀଷଙ୍କର ଭକ୍ତି, ସଂସାରରେ ସର୍ବତ୍ର ପ୍ରସିଦ୍ଧ । ସେ ଏହି ସପ୍ତଦ୍ୱୀପା ବସୁନ୍ଧରାର ଏକମାତ୍ର ଅଧିପତି ଥିଲେ । ତାଙ୍କୁ ସମସ୍ତ ସୁଖ ସାମଗ୍ରୀ ଅତି ସହଜ ଓ ସୁବିଧାରେ ମିଳୁଥିଲା । ତାହାକୁ ଲାଭ କରିବା ପୃଥିବୀର ନରପତି ମାନଙ୍କ ପକ୍ଷେ କାହିଁକି, ଦେବରାଜ ସ୍ୱର୍ଗାଧିପତି ଇନ୍ଦ୍ରଙ୍କ ପକ୍ଷେ ମଧ୍ୟ ଦୁର୍ଲ୍ଲଭ ଥିଲା । ତାଙ୍କ ନିକଟରେ କୌଣସି ବସ୍ତୁର ଅଭାବ ନଥିଲା । ସମସ୍ତ ଧନ, ଐଶ୍ୱର୍ଯ୍ୟ, ଶକ୍ତି, ସିଦ୍ଧି, ତଥା ଅନ୍ୟାନ୍ୟ ସାମଗ୍ରୀ ତାଙ୍କର ଅଧୀନ ଥିଲା । ଏତେ ଅତୁଳ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ମଧ୍ୟ ସେ ସେଥିରେ ଟିକିଏ ହେଲେ ବି ଆସକ୍ତ ନଥିଲେ । ସେ ସେହି ସମସ୍ତ ପଦାର୍ଥକୁ ଅଶାଶ୍ୱତ, ମିଥ୍ୟା ଓ ନାଶବାନ୍ ବୋଲି ମନେ କରୁଥିଲେ । ସେ ଅନୁଭବ ଦ୍ୱାରା ନିର୍ଣ୍ଣୟ କରି ପାରିଥିଲେ ଯେ, ସମସ୍ତ କଳ୍ପନା ମିଥ୍ୟା ଏହାଦ୍ୱାରା ତୃପ୍ତି ଅସମ୍ଭବ, ଏଥିରେ ଆଦୌ ସୁଖ ନାହିଁ, ଶାନ୍ତି ବି ନାହିଁ ।

ରାଜା ପରୀକ୍ଷିତ ପଚାରିଲେ—"ପ୍ରଭୋ ! ଏ ମାୟାଧିକ ବସ୍ତୁ ଗୁଡ଼ିକରେ ତ ଅତ୍ୟନ୍ତ ଆକର୍ଷଣ ଶକ୍ତି ରହିଛି । ମନୁଷ୍ୟ ଧନ ପାଇ ବ୍ୟାକୁଳ ହେବା ସ୍ୱାଭାବିକ । ଐଶ୍ୱର୍ଯ୍ୟ ଲାଭ ହେଲେ ମନୁଷ୍ୟର ଅଭିମାନ ବୃଦ୍ଧିପାଏ । ସମ୍ମୁଖରେ ଆକର୍ଷଣୀୟ ବସ୍ତୁ ପଡ଼ିଲେ ମନ ତା ପ୍ରତି ଆକୃଷ୍ଟ ହୁଏ । ମହାରାଜ ଅମ୍ବରୀଷ ଯୁବକ ଥିଲେ । ତାଙ୍କର ଧନ ସମ୍ପତ୍ତିର କୌଣସି ଅଭାବ ନଥିଲା । ସପ୍ତଦ୍ୱୀପା ବସୁମତୀର ସେ ଏକଛତ୍ର ଶାସକ ଥିଲେ । ତଥାପି ତାଙ୍କର ଚିତ୍ତ ବିଷୟ ପ୍ରତି କାହିଁକି ଆସକ୍ତ ହୋଇ ନ ଥିଲା ?"

ଏହା ଶୁଣି ଶ୍ରୀ ଶୁକ କହିଲେ—"ରାଜନ୍ ! ରାଜର୍ଷି ଅମ୍ବରୀଷଙ୍କର ଭଗବାନ୍ ବାସୁଦେବଙ୍କ ପରେ ଓ ଭଗବାନଙ୍କ ଭକ୍ତ ମାନଙ୍କ ଠାରେ ସହଜ ସ୍ୱାଭାବିକ ଭକ୍ତି ଥିଲା । ମହାରାଜ ! ଯେଉଁ ବ୍ୟକ୍ତି ମିଶ୍ରିର ସ୍ୱାଦ ଥରେ ନେଇଛି, ସେ ଚନାର ମଇଳା ଗୀରା ଖାଇ କାହିଁକି ପ୍ରସନ୍ନ ହେବ ? ଯାହାର ରାଜାଙ୍କ ସହିତ ମୈତ୍ରୀ ହୋଇଛି, ସେ କାହିଁକି

ଦ୍ୱାରପାଳ ନିକଟରେ ଅନୁନୟ ବିନୟ କରିବାକୁ ଯିବ ? ସେହିପରି ଯେ ପ୍ରଭୁଙ୍କ ପ୍ରେମ ପ୍ରାପ୍ତ ହୋଇଛି, ସେ ଏହି ଜଗତର ସମ୍ପତ୍ତି ଓ ଧନରତ୍ନ ଆଦିକୁ ତୃଣବତ୍ ଜ୍ଞାନ କରେ । ତା ଦୃଷ୍ଟିରେ ପଥର ଓ ସୁନାମୁଣ୍ଡା ଭିତରେ କୌଣସି ପାର୍ଥକ୍ୟ ନାହିଁ । ଭଗବଦ୍ ଭକ୍ତ ଚକ୍ରବର୍ତ୍ତୀ ହୋଇ ଥାଆନ୍ତୁ, ବା ଭିକାରୀ ହୋଇଥାଆନ୍ତୁ ଉଭୟ ଦଶାରେ ସେ ପରମ ସନ୍ତୋଷ ଲଭ କରିଥାଆନ୍ତି ।"

ରାଜା ପରୀକ୍ଷିତ ପଚାରିଲେ —"ଭଗବାନ୍ ! ମନ ତ ଏକ । ରାଜା ତାହାକୁ ଭଗବାନଙ୍କଠାରେ ଲଗାଇଥିଲେ ନା ରାଜକାର୍ଯ୍ୟରେ ଲଗାଇଥିଲେ ?"

ଶ୍ରୀ ଶୁକଦେବ କହିଲେ ମହାରାଜ ! ସେ ନିଜର ମନକୁ ଶ୍ରୀକୃଷ୍ଣଙ୍କ ଚରଣାରବିନ୍ଦରେ ହିଁ ଲଗାଇଥିଲେ । ଉପର ମନରେ ସେ ରାଜକାର୍ଯ୍ୟ ତଥା ଅନ୍ୟାନ୍ୟ ବିଷୟ ସବୁ ବୁଝୁଥିଲେ ।

ଶୌନକ ପଚାରିଲେ—"ହେ ସୂତ ! ଉପର ଓ ଭିତର ମନ କିପରି ? ଏଥିରୁ ଆମେ କିଛି ବୁଝିପାରୁ ନାହୁଁ ।"

ସୂତ କହିଲେ—ମହାରାଜ ! ଆପଣ କେବେ ବ୍ରଜମଣ୍ଡଳ ଯାଇଛନ୍ତି ? ବ୍ରଜବାସୀଗଣଙ୍କର ସ୍ତ୍ରୀମାନେ ଗାଁ ବାହାରେ ଥିବା କୂଅରୁ ପାଣି ଆଣିବାକୁ ଯାଆନ୍ତି । ଜଣ ଜଣକା ୪ଟି ୫ଟି କରି ମାଠିଆରେ ପାଣି ଭର୍ତ୍ତି କରି ଏକସଙ୍ଗେ ଆଣନ୍ତି । ଗୋଟିକ ଉପରେ ଗୋଟିଏ ଏହିପରି ୨ଟି ବା ୩ଟି କରି ମାଠିଆ ମୁଣ୍ଡରେ ମୁଣ୍ଡାନ୍ତି ଓ ଗୋଟିଏ ବା ଦୁଇଟି ମାଠିଆ କାଖରେ କାଖାନ୍ତି । ପୁନଶ୍ଚ କୂଅ ଦଉଡ଼ିକୁ ମଧ୍ୟ କାନ୍ଧରେ ପକାଇ ଆଣନ୍ତି । ମୁଣ୍ଡରେ ମୁଣ୍ଡାଇଥିବା ମାଠିଆକୁ ହାତ ଛୁଅନ୍ତି ନାହିଁ । ଏହିପରି ୫ ବା ୧୦ ଜଣ ସାଙ୍ଗ ହୋଇ ଘରକୁ ଆସନ୍ତି । ଯାହାଘରେ ଅତି ବୃଦ୍ଧା ଶାଶୂ ଥାଆନ୍ତି, ସେମାନେ ଶାଶୂଙ୍କ ଉପରେ ନିର୍ଭର ନ କରି ନିଜେ ନିଜ ମୁଣ୍ଡରୁ ପାଣି ମାଠିଆ ଓହ୍ଲାଇ କୁଣ୍ଡରେ ପାଣି ଅଜାଡ଼ନ୍ତି । କୁଳବଧୂମାନେ ଶାଶୂ ବୁଢ଼ୀଙ୍କୁ ଚଳରେ କୌଣସି ଜିନିଷ ପେଷିବାକୁ ଦିଅନ୍ତି ନାହିଁ କିମ୍ବା ପାଣି ଅଣାଇ ଦିଅନ୍ତି ନାହିଁ । ରୁଟି ମଧ୍ୟ ନିଜେ ନିଜେ ତିଆରି କରନ୍ତି । ମୁଣ୍ଡରେ ଓଢ଼ଣା ଦେଇ ସେମାନେ ସମସ୍ତ କାର୍ଯ୍ୟ କରନ୍ତି । ବୁଢ଼ୀମାନେ କେବଳ ପରଶନ୍ତି । ବୋହୂମାନଙ୍କର ପରଶିବାର ଅଧିକାର ନାହିଁ । ଯଦି ସେମାନେ ଆଉ ଆଉ କେବେ ଦେଢ଼ଶୁର ବା ସ୍ୱାମୀଙ୍କୁ ଭୋଜନ ପରଶନ୍ତି, ତାହା ହେଲେ ସେଦିନ ଘରେ ବହୁତ ଝଗଡ଼ା ଲାଗେ । ଶାଶୂ ମୁହଁ ଫୁଲାଇ ବସି ଯାଆନ୍ତି । ସମସ୍ତଙ୍କୁ କହନ୍ତି "ଏବେ ଘରେ ଆମକୁ କେହି ହେଲେ ପଚାରୁ ନାହାନ୍ତି ।" ବୋହୂମାନଙ୍କର ଆଉ କହିବାର ଉପାୟ ନ ଥାଏ, ସେମାନେ ସବୁ ଶୁଣି ଚୁପ୍ ଚାପ ରହନ୍ତି । ନିଜର ସାଙ୍ଗ-ସାଥିଙ୍କ ସହିତ ଯେତେବେଳେ ପାଣିପାଇଁ ଜଳାଶୟକୁ ଯାଆନ୍ତି, ସେମାନଙ୍କ ଭିତରେ

ଏ ସବୁ କଥା ଆଲୋଚନା ହୁଏ ଯେ ମୋ ଶାଶୁ ମତେ ଏହା କହିଲା, ତା ଶାଶୁ ତାକୁ ତାହା କହିଲା । ଯଦି ଆସିବା ସମୟ ମଧ୍ୟରେ ସାଧାରଣର ଘଟଣା ସେମାନେ କଥାବାର୍ତ୍ତା ହୋଇ ଥାଆନ୍ତି, କିନ୍ତୁ ମୁଣ୍ଡରେ ରଖାଯାଇଥିବା ମାଠିଆ କଥା ଆଦୌ ଭୁଲନ୍ତି ନାହିଁ । ଉପର ମନରେ କେବଳ ସେମାନେ ଘର ସଂସାର କଥା ଦୁଃଖ ସୁଖ ହୁଅନ୍ତି । ଛୋଟ ପୁଅ ଯଦି ସେତେବେଳେ କାନ୍ଦି କାନ୍ଦି ପାଖକୁ ଦଉଡ଼ି ଆସେ, ତେବେ ତାକୁ ଉଠାଇ କାଖକୁ ନେଇ ଆସନ୍ତି । କିନ୍ତୁ ମନ ଥାଏ ମୁଣ୍ଡ ଉପର ମାଠିଆରେ । ଯଦି ମାଠିଆଠାରୁ ମନ ପୃଥକ୍ ହୋଇ ରହୁ ଥାଆନ୍ତା, ତେବେ ମାଠିଆ ଖସିପଡ଼ି ଠୋ କରି ଫାଟିଯାଉ ଥାଆନ୍ତା । ଶାଶୂ, ନଣନ୍ଦ ଘରେ ଦିନ ସାରା ଝଗଡ଼ା କରନ୍ତେ, ଅଲକ୍ଷଣୀ ବୋଲି ଗାଳି ଦିଅନ୍ତେ । ତେଣୁ 'ହେ ମହାରାଜ, ସେହି ବ୍ରଜରମଣୀମାନେ ଯେପରି ବାଟରେ କଳସୀ ମୁଣ୍ଡାଇ ଆସିବା ସମୟରେ ନିରନ୍ତର ପାଣି ମାଠିଆରେ ମନ ରଖିଥାଆନ୍ତି ଓ ଉପର ମନରେ ଘରର ଭଲମନ୍ଦ କଥାବାର୍ତ୍ତା ହୁଅନ୍ତି, ମହାରାଜ ଅମ୍ବରୀଷ ସେହି ଅବସ୍ଥାରେ ସର୍ବଦା ରହୁଥିଲେ । ଉପର ମନରେ ରାଜକାର୍ଯ୍ୟ ପରିଚାଳନା କରି, ନିଜର ମନମଧୁପକୁ ସର୍ବଦା ମାଧବଙ୍କ ଲୀଳାମାଧୁରୀ ପାନ କରିବାରେ ଲଗାଇଥିଲେ ।

ଶୌନକ କହିଲେ—"ହେ ସୂତ ! ତଥାପି ଏତେ ଆକର୍ଷକ ବିଷୟ ମଧ୍ୟରେ ରାଜାଙ୍କର ମନ ତ କିଛିନା କିଛି ପୁଣି ଲାଗୁଥିଲା । ଏପରି ନ ହେଉଥିଲେ ସେ ସଂସାର ପରିତ୍ୟାଗ କରି କାହିଁକି ନ ଯାଉଥିଲେ ?

ସୂତ କହିଲେ—ମହାରାଜ ! ସେ ଯାଆନ୍ତେ କେଉଁଠିକି ? ସର୍ବତ୍ର ତ ଏହି ପୃଥିବୀ, ଜଳ, ତେଜ, ବାୟୁ, ଆକାଶ ତଥା ପ୍ରକୃତିରେ ନିର୍ମିତ ପଦାର୍ଥ ପରିପୂର୍ଣ୍ଣ । ଏପରି କୌଣସି ସ୍ଥାନ ନାହିଁ, ଯେଉଁଠାରେ କି ମାୟାର ପସରା ମେଲା ନ ହୋଇଛି, ଯେଉଁଠାରେ କି ଭଗବାନ୍ ନାହାନ୍ତି । ଯେତେବେଳେ ଭଗବାନ୍ ସର୍ବତ୍ର ବିରାଜମାନ, ତେଣୁ ଏହା ମନର ଭ୍ରମ ମାତ୍ର ଯେ ଏଠାରେ ମାୟାର ବନ୍ଧନ ଓ ସେଠାରେ ମାୟାମୁକ୍ତ ସ୍ୱଚ୍ଛନ୍ଦ ପରିବେଶ । ଯାହାଙ୍କ ମନରେ ବନ୍ଧନ ସ୍ଥାନ ପାଇଛି, ତାଙ୍କ ପାଇଁ ସର୍ବତ୍ର ବନ୍ଧନ ଓ ଯାହାଙ୍କର ମନ ନିଜବଶରେ ଅଛି, ତାଙ୍କ ପାଇଁ ସର୍ବତ୍ର ଏକାଭଳି । "ମନର ହାରିଯିବା ହିଁ ପ୍ରକୃତ ହାରିଯିବା, ମନର ଜିତାପଟ ହିଁ ପ୍ରକୃତ ବିଜୟ ।" ମନ ହିଁ ବିଜୟର ବୀଜ । ମନ ଯେଉଁଠାରେ ମନମୋହନଙ୍କର ମନୋମୁଗ୍ଧକର ମାଧୁରୀ ପାନ କରି ମତୁଆଲା ହୋଇ ସଂସାରକୁ ଫିକା ଫିକା ଦେଖେ, ସେ କ୍ଷେତ୍ରରେ ସେହି ଲୋକପାଇଁ ତାହାର ଘରସଂସାର ବନ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ହିନ୍ଦୀରେ ଗୋଟିଏ ପ୍ରବଚନ ଅଛି :—"ମନ ହାଥ ଭୟୋ ଜିନ୍‌କେ ବନହୀ ଘର ହୈ, ଘର ହୀ ବନ ହୈ ।" ଏହି ବିଷୟରେ ମୁଁ ଆପଣଙ୍କୁ ଏକ ଦୃଷ୍ଟାନ୍ତ ଦେଉଛି, ଶୁଣନ୍ତୁ ।"

ଥରେ ନାରଦ ଚିନ୍ତା କଲେ—"ମହାରାଜ ଜନକଙ୍କୁ ସମସ୍ତେ 'ବିଦେହ' ବୋଲି କହନ୍ତି । ଏତେ ରାଜକାର୍ଯ୍ୟ କରି ସେ କିପରି ବିଦେହ ହୋଇ ରହି ପାରନ୍ତି ।" ଏହା ଚିନ୍ତା କରି ସେ ମହାରାଜ ବିଦେହଙ୍କ ନିକଟକୁ ଗଲେ । ରାଜା ତାଙ୍କର ସତ୍କାର କଲେ । ରାଜାଙ୍କ ଦ୍ୱାରା ସତ୍କୃତ ହୋଇ ମୁନି ନିଜ ଆସନରେ ବସି ପଡ଼ିଲେ । କୁଶଳ ବାର୍ତ୍ତା ପଚାରିଲା ପରେ ନାରଦ କହିଲେ—"ରାଜନ୍ ! ଆପଣ ଗୃହସ୍ଥାଶ୍ରମରେ ରହି ମଧ୍ୟ କିପରି ବିଦେହ ହୋଇ ପାରୁଛନ୍ତି ? ମୁନିଋଷି ଆପଣଙ୍କର ଜ୍ଞାନ ଓ ତପର ଏତେ ପ୍ରଶଂସା କାହିଁକି କରନ୍ତି ? ନାନା ରାଜକାର୍ଯ୍ୟ ଓ ଜଞ୍ଜାଳ ମଧ୍ୟରେ ବୁଡ଼ି ରହି ଆପଣଙ୍କର ମନ ସୁଖ-ଦୁଃଖରେ ନିର୍ଲିପ୍ତ କିପରି ରହି ପାରୁଛି ? ଏ ବିଷୟରେ ମୋ ମନରେ ସଂଶୟ ଜାତ ହେଉଛି । ଆପଣ ମୋର ସନ୍ଦେହ ମୋଚନ କରନ୍ତୁ ।"

ରାଜା କହିଲେ—"ବ୍ରହ୍ମନ୍ ! ମୁନି ଋଷି, ତପସ୍ୱୀ ଓ ବ୍ରାହ୍ମଣମାନେ ମୋ ଉପରେ ଅତ୍ୟନ୍ତ କୃପା କରିଅଛନ୍ତି । ମୋ ପ୍ରତି ସେମାନଙ୍କର ସହଜ ସ୍ନେହ । ଯାହାଙ୍କୁ ସ୍ନେହ କରାଯାଏ, ତାଙ୍କ ପ୍ରତି ପକ୍ଷପାତ ହୋଇଥାଏ । ଏଥିପାଇଁ ପ୍ରେମବଶତଃ ମୁନି ଋଷିମାନେ ମୋର ବଡ଼ିମା ପ୍ରକାଶ କରୁଅଛନ୍ତି, ତାହା ନ ହୋଇଥିଲେ କାହିଁ ମୋପରି ଗୃହସ୍ଥାଶ୍ରମର ଗୃହଜଞ୍ଜାଳରେ ବୁଡ଼ି ରହିଥିବା ପ୍ରାଣୀ ଓ କାହିଁ ଆପଣମାନଙ୍କପରି ସର୍ବସ୍ୱ ତ୍ୟାଗୀ ବୈରାଗୀ ମହାପୁରୁଷ ।"

ନାରଦ କହିଲେ—"ରାଜନ୍ ! ଆପଣତ କେବଳ ଶିଷ୍ଟାଚାରର କଥା କହୁଅଛନ୍ତି, ଏ ପ୍ରକାର କହି ମୋତେ ଠକିଦେବାକୁ ବସିଛନ୍ତି । ପ୍ରକୃତ ରହସ୍ୟ ମୋତେ କହିବା ପାଇଁ ଆପଣଙ୍କର ଇଚ୍ଛା ଥିବାପରି ଜଣା ପଡ଼ୁ ନାହିଁ । ଯଦି ସମର୍ଥ ବ୍ୟକ୍ତିମାନେ କାହାରିକୁ କୌଣସି ବିଷୟର ଅନଧିକାରୀ ବୋଲି ଜାଣି ପାରନ୍ତି, ତେବେ ସେମାନଙ୍କୁ ଏଣ୍ଡୁ ତେଣ୍ଡୁ କଥା କହି ଭୁଲାଇ ଦିଅନ୍ତି । ସେମାନଙ୍କୁ ପ୍ରଶଂସା କରି ପକାନ୍ତି । ଆପଣ ଏପରି କରନ୍ତୁ ନାହିଁ ।"

ରାଜା ହସି ହସି କହିଲେ—"ବ୍ରହ୍ମନ୍ ! ଆପଣ ଆଜି ମୋର ଆତିଥ୍ୟ ଗ୍ରହଣ କରନ୍ତୁ । ପ୍ରସାଦ ସେବନ ପରେ ପୁନଶ୍ଚ ଏ ସମ୍ବନ୍ଧରେ ଆଲୋଚନା କରିବା ।"

ନାରଦ ଏଥିରେ ସମ୍ମତି ପ୍ରଦାନ କଲେ । ୫୬ ପ୍ରକାରର ଭୋଜନ ସାମଗ୍ରୀ ପ୍ରସ୍ତୁତ ହେଲା । ଭଗବାନଙ୍କୁ ଭୋଗଲଗାଇ ମୁନିଙ୍କୁ ଶ୍ରଦ୍ଧା ପୂର୍ବକ ପ୍ରସାଦ ସେବନ କରିବାକୁ ଡକାଯାଇ ରଙ୍ଗ ବିରଙ୍ଗର ସୁନ୍ଦର ଆସନ ସୁବର୍ଣ୍ଣ ଚଉକି ଉପରେ ବିଛାଯାଇ ତାଙ୍କୁ ତହିଁରେ ବସିବାକୁ ଅନୁରୋଧ କରାଗଲା । ସୁନା ରୁପାର ବାସନରେ ସୁସ୍ୱାଦ ପଦାର୍ଥ ପରସା ଗଲା । ପରସିବା ସମୟରେ ଖିରିରେ ଶାଗ ପକାଇ ଦିଆଗଲା । ଶାଗରେ ହାଲୁଆ ମିଶାଇ ଦିଆଗଲା । ଚଟଣୀରେ କୌଣସି କଟୁ ବସ୍ତୁ ମିଶାଇ ଦିଆଗଲା । ମୁନି ଆସନରେ ବସିବାମାତ୍ରେ ଦେଖିଲେ - ତାଙ୍କ ମୁଣ୍ଡ ଉପରେ ନରମା ସୂତାରେ ବନ୍ଧା ହୋଇଥିବା ଏକ ନଗ୍ନ ତରବାରି ଝୁଲୁଛି । ମୁନି ମନେ ମନେ ଚିନ୍ତା କଲେ ଯେ ରାଜା ବୋଧହୁଏ

ତାଙ୍କ ମାନସ ପରୀକ୍ଷା କରିବା ପାଇଁ ଏପରି କରିଛନ୍ତି । ତେଣୁ ସେ କିଛି ହେଲେ କହିଲେ ନାହିଁ । ପୁନଶ୍ଚ ପ୍ରାଣୀର ମୋହ ତ ସମସ୍ତଙ୍କର ଅଛି ? ମୁନିଙ୍କ ମନରେ ଭୟ ଜାତ ହେଉଥାଏ । ଭୟରେ, ଦ୍ୱେଷରେ, ପ୍ରେମରେ ଚିତ୍ତ ତନ୍ମୟ ହୋଇଯାଏ । ମୁନିଙ୍କ ଧ୍ୟାନ ସେହି ତରବାରି ଉପରେ ତନ୍ମୟ ହୋଇଗଲା । ରାଜା ବାରମ୍ବାର ପଚାରୁଥାଆନ୍ତି—"ବ୍ରହ୍ମନ୍ ! କ୍ଷିରି କପରି ଲାଗୁଛି ? ଶାଗ କପରି ଲାଗୁଛି ?" କିନ୍ତୁ ନାରଦଙ୍କ ମନ ତ ତରବାରି ମଧ୍ୟରେ ନିବିଷ୍ଟ ଥିଲା । ସେ ହୁଁ ହୁଁ କରି କୌଣସି ପ୍ରକାରେ ଖାଇ ପିଇ ଉଠିଲେ । ରାଜା ନିଜେ ତାଙ୍କ ହାତ ଧୋଇ ଦେଲେ ଓ ଅତ୍ୟନ୍ତ ଆଦର ସହକାରେ ପଚାରିଲେ—"ବ୍ରହ୍ମନ୍ ! ଭୋଜନ ପ୍ରସ୍ତୁତ କପରି ହୋଇଥିଲା ?"

ନାରଦ କହିଲେ—"ରାଜନ୍ ଆପଣଙ୍କ ଭୋଜନ ପ୍ରସ୍ତୁତ ସମ୍ବନ୍ଧରେ କଣ କହିବି । ଆପଣତ ପରମ ଭାଗବତ ଭକ୍ତ ଅଟନ୍ତି ।"

ରାଜା ପଚାରିଲେ—"ମହାରାଜ ! ସତକରି କହନ୍ତୁ ଆପଣଙ୍କୁ କେଉଁ ପଦାର୍ଥ ଖୁବ୍ ଭଲ ଲାଗିଲା ?

ଏହା ଶୁଣି ନାରଦ ହସି ହସି କହିଲେ—"ରାଜନ୍ ! ଆପଣ ପଦ ସତକଥା ପଚାରୁଛନ୍ତି, ତେବେ ମୁଁ ଆଦୌ କହି ପାରିବି ନାହିଁ ଯେ କେଉଁ କେଉଁ ବସ୍ତୁ ମୋ ଆଗରେ ପରସାଯାଇ ଥିଲା ଓ ମୁଁ କଣ କଣ ଖାଇଲି । ସ୍ୱଭାବ ବଶତଃ ଖାଦ୍ୟ ପଦାର୍ଥକୁ ହାତରେ ନେଇ ମୁଖରେ ପୁରାଇବା ବ୍ୟତୀତ ମୁଁ ଅନ୍ୟ କିଛି ଜାଣି ନାହିଁ । ଯାହା ଖାଉଥିଲି ତାହା କଣ୍ଠ ତଳକୁ ଚାଲି ଯାଉଥିଲା । ଖଟା ମିଠା ମୁଁ କିଛି ବାରିପାରୁ ନଥିଲି, ମୋର ମନ ତ ମୁଣ୍ଡଉପରେ ଝୁଲୁଥିବା ସେହି ତରବାରି ଉପରେ ନିବିଷ୍ଟ ଥିଲା ।"

ରାଜା ହସିକରି କହିଲେ "ବ୍ରହ୍ମନ୍ ! ଏହାହିଁ ଆପଣଙ୍କ ପ୍ରଶ୍ନର ଉତ୍ତର । ମୋର ମନ ତ ଭଗବାନଙ୍କଠାରେ ମଗ୍ନ ରହିଛି । ଶରୀରରେ ରାଜକାର୍ଯ୍ୟ ସ୍ୱଭାବ ବଶତଃ ଚାଲିଛି । ସେଥିରେ ମୋର କୌଣସି ଆସକ୍ତି ନାହିଁ, ସ୍ପୃହାବି ନାହିଁ । ଯାହି ହେଉଅଛି ତାହା ଭଗବାନଙ୍କ ଇଚ୍ଛାରେହିଁ ହେଉଅଛି । ମୋର ଏହା ଦୃଢ଼ଧାରଣା । ମୁଁ ଏ ସବୁଥିରୁ ପୃଥକ୍, ଦେହ ମୋଠାରୁ ପୃଥକ୍ । ମୁଁ ଦ୍ରଷ୍ଟା ନିଷ୍ଠ । ଏଥିପାଇଁ ମୁନି, ଋଷି ମାନେ ମୋତେ ବିଦେହ ବୋଲି କହନ୍ତି ।"

ସୂତ କହିଲେ—"ମୁନିଗଣ ! ମହାରାଜ ଅମ୍ବରୀଷଙ୍କର ଠିକ୍ ଏହି ଅବସ୍ଥା ଥିଲା । ତାଙ୍କ ମନ ସର୍ବଦା ଭଗବାନଙ୍କ ପାଦପଦ୍ମରେ ତଲ୍ଲୀନ ରହୁଥିଲା । ଶରୀରର ସ୍ୱଭାବ ବଶତଃ ଅନ୍ୟାନ୍ୟ କାର୍ଯ୍ୟ ସମ୍ପାଦନ ହେଉଥିଲା । ଏହି କଥା ମୋର ଗୁରୁଦେବ ଶ୍ରୀ ଶୁକମହାରାଜ ପରୀକ୍ଷିତଙ୍କୁ କହିବାକୁ ଯାଇ କହିଥିଲେ—"ହେ ରାଜନ୍ ! ରାଜର୍ଷି ଅମ୍ବରୀଷଙ୍କ ଭଳି ଭାଗବତ ଅନ୍ୟ କୌଣସି ଭୂପତି ନଥିଲେ । ତାଙ୍କର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗର ସମସ୍ତ କ୍ରିୟା କୃଷ୍ଣ ସେବାରେହିଁ ନିୟୋଜିତ ହେଉଥିଲା । ସେ ନିଜର ବାଣୀରେ ନିରନ୍ତର ଭଗବାନଙ୍କ ମଧୁମୟ ମଧୁର ନାମ ସୁସ୍ୱରରେ ଉଚ୍ଚାରଣ କରୁଥିଲେ

ଭଗବାନଙ୍କ ତ୍ରୈଲୋକ୍ୟ ପାବନ ଯଶକୁ ପଦ୍ୟ ଛନ୍ଦରେ ଗାୟନ କରି ବାଦ୍ୟରେ ତାଳ ଦେଉଥିଲେ । ଗୋବିନ୍ଦଙ୍କ ଗୁଣ ଗାନ କରି କରି ଗୋବର୍ଦ୍ଧନଧାରୀଙ୍କୁ ପ୍ରୀତ କରୁଥିଲେ । ନିଜ ହାତରେ ସେ ଭଗବାନଙ୍କ ମନ୍ଦିର ମାର୍ଜନ କରୁଥିଲେ । ତାହା ସ୍ୱଚ୍ଛ ଜଳରେ ଧୋଉଥିଲେ । ଉଦ୍ୟାନରୁ ନିଜେ ଫୁଲ ତୁଳସୀ ତୋଳି ଭଗବାନଙ୍କୁ ପିନ୍ଧାଉଥିଲେ । ଭଗବାନଙ୍କ ପାର୍ଷଦ ମାନଙ୍କୁ ବିଶୁଦ୍ଧ (ସ୍ନାନାଦି) କରାଉଥିଲେ । ଭଗବତ୍ ସେବା ଉପଯୋଗୀ ସାମଗ୍ରୀ ସେ ନିଜେ ଯୋଗାଡ଼ କରୁଥିଲେ । ନିଜେ ପରିଷ୍କାର ପରିଚ୍ଛନ୍ନ କରୁଥିଲେ । ନିଜେ ଛଡ଼ାଫୁଲ, ଧଣ୍ଡା, କାଢ଼ି ନେଇ ପାଦ୍ୟ, ଅର୍ଘ, ଆଚମନ, ସ୍ନାନ, ବସ୍ତ୍ର, ଯଜ୍ଞୋପବୀତ, ଚନ୍ଦନ, ଧୂପ, ଦୀପ, ନୈବେଦ୍ୟ, ତାମ୍ବୁଳ, ନାନାଜାତିଫଳ, ଦକ୍ଷିଣା, ଦ୍ରବ୍ୟ, ଆରତି, ସ୍ତୁତି ଓ ପ୍ରଦକ୍ଷିଣକରି ବିଧି ପୂର୍ବକ ପୂଜାର୍ଚ୍ଚନା କରୁଥିଲେ । ସେ କୃଷ୍ଣକଥା ଶ୍ରବଣରେ ନିଜର କର୍ଣ୍ଣକୁ ଉପଯୋଗ କରୁଥିଲେ । ପରନିନ୍ଦା, ପରଚର୍ଚ୍ଚା ସମୟରେ ସେ ବଧୀର ହୋଇ ଯାଉଥିଲେ । ଶୁଣୁଥିଲେ ମଧ୍ୟ ତାହା କାନକୁ ନେଉ ନଥିଲେ । ତାଙ୍କ ନିକଟକୁ ମୁନି, ଋଷି, ବିଦ୍ୱାନ, ବ୍ରାହ୍ମଣ ଆଦି ଯେ କେହି ଆସୁଥିଲେ, ସେମାନଙ୍କୁ ସେ ହାତଯୋଡ଼ି ପ୍ରାର୍ଥନା କରି କହୁଥିଲେ—"ମହାରାଜ ! ମୋତେ ଟିକିଏ କୃଷ୍ଣ କଥା ଶୁଣାନ୍ତୁ । ଭଗବତ୍ ଚର୍ଚ୍ଚା କରନ୍ତୁ । ତାଙ୍କର ଶ୍ରବଣେନ୍ଦ୍ରିୟ ପୁଣ୍ୟ କଥା ଶ୍ରବଣ ଓ ପବିତ୍ର ପ୍ରଭୁଙ୍କ ପବିତ୍ର ଯଶ ଶ୍ରବଣ କରିବା ଏକ ବ୍ୟସନରେ ପରିଣତ ହୋଇ ଯାଇଥିଲା । ସେ କୃଷ୍ଣକଥା ଶୁଣିବା ପାଇଁ ବ୍ୟାକୁଳ ହୋଇ ପଡ଼ୁଥିଲେ । ଗୁଲିଖୋର ଯେପରି ଅଫିମବିନା ବ୍ୟାକୁଳ ହୋଇପଡ଼ନ୍ତି, ସେ ସେହିପରି ହେଉଥିଲେ ।

ଶ୍ରୀ ଶୁକଦେବ କହିଲେ —"ରାଜନ୍ ! ସେହି ଧର୍ମାତ୍ମା ଭଗବଭକ୍ତରାଜାଙ୍କର ସମସ୍ତ ଇନ୍ଦ୍ରିୟର ଉପଯୋଗ ଭଗବାନଙ୍କ ପାଇଁ କରିଯାଉଥିଲା । ତାଙ୍କ ଭକ୍ତି ସମ୍ବନ୍ଧରେ ମୁଁ ଏବେ କହିବି । ଏହି ପରମ ଭାଗବତ ରାଜର୍ଷିଙ୍କ ଚରିତ ଆପଣ ସମାହିତ ଚିତ୍ତରେ ଶ୍ରବଣ କରନ୍ତୁ ।

## ଛପ୍ପୟ

କରୈଂ କୃଷ୍ଣ କୈଙ୍କର୍ଯ୍ୟ କମଲକର ନୃପକେ ନିତ ପ୍ରତି ।
କୃଷ୍ଣ କଥା ସୁନି କାନ ଉଭୟ ହୋବେ ପ୍ରମୁଦିତ ଅତି ॥
ମାଧବ ମନ୍ଦିର-ମାଁହି ନିରଖି ମନ ମୋହନ ମୂରତି ।
ଛଲ ଛଲ ଛଲକୈଂ ନୟନ କମଲ ସମ ହୋବୈଂ ବିକସିତ ॥
ମିଲୈଂ ଭକ୍ତ ଭଗବାନକେ, ଗାଢ଼ାଲିଙ୍ଗନ ନୃପ କରହିଁ ।
ପୁଲକିତ ହୋବୈଂ ଅଙ୍ଗ ଅଁଗ, ପାପ ତାପ ଜଗକେ ହରହିଁ ॥



# ରାଜା ଅମ୍ବରୀଷଙ୍କର ଭଗବଦ୍ ଭକ୍ତି

ମୁକୁନ୍ଦଲିଙ୍ଗାଲୟଦର୍ଶନେ ଦୃଶୌ
ତଦ୍‌ଭୃତ୍ୟଗାତ୍ର ସ୍ପର୍ଶେଽଙ୍ଗସଙ୍ଗମମ୍ ।
ଘ୍ରାଣଂ ଚ ତତ୍‌ପାଦ ସରୋଜସୌରଭେ
ଶ୍ରୀମତ୍ତୁଲସ୍ୟା ରସନାଂ ତଦର୍ପିତେ ॥

(ଶ୍ରୀ ଭା : ୯ମ ସ୍କନ୍ଧ ୪ର୍ଥ ଅଧ୍ୟାୟ ୧୯ ଶ୍ଳୋକ)

## ଛପପୟ

ଚରଣ ଚଢ଼ୀ ଶତଚକ୍ରର ମଞ୍ଜରୀ ତୁଳସୀଜୀ କୀ ।
ଘ୍ରାଣେନ୍ଦ୍ରିୟ ଲୈ ଗନ୍ଧ ଜଗାବୈ ସୁଧି ନିଜ ପୀ କୀ ॥
ନନ୍ଦ-ନନ୍ଦନ ନୈବେଦ୍ୟ ପାଇ ରସନା ହୁଲସାବୈ ।
ବିନୁ ଅର୍ପିତ ଯଦ ଅମୃତ ମିଲୈ ତୋଊ ନହିଁ ଖାବୈ ॥
ନିରଖି ନମିତ ହ୍ୱୈ ଜାତ ସିର, ନିଜ ପ୍ରଭୁପଦ ପଙ୍କଜନିକୁଁ ।
ଚରଣ ଚଲୈଂ ଅତି ହୁଲସିକେଂ, ହରି କ୍ଷେତ୍ରନି ଦରଶନନିକୁଁ ॥

ଯାହା ପାଖରେ ଯେଉଁ ବସ୍ତୁ ଥାଏ, ତାହା ଯଦି କାମରେ ଲଗା ନଯାଏ, ତେବେ ତାହା ତାପାଇଁ ନିରର୍ଥକ । ଯେ ଯେଉଁ କାର୍ଯ୍ୟ ପାଇଁ ଜନ୍ମ ହୋଇଛି ସେ ଯଦି ସେହି କାର୍ଯ୍ୟ ନକରେ, ତେବେ ସେ ବ୍ୟର୍ଥ । ଭଗବାନଙ୍କ ଦ୍ୱାରା ସୃଷ୍ଟ ଏହି ଶରୀରର ପ୍ରତ୍ୟେକ ଅଙ୍ଗ ତାଙ୍କର ଚଳ ଅଥବା ଅଚଳ ଯେକୌଣସି ମୂର୍ତ୍ତିର ସେବା କରିବାରେ ହିଁ ସେହି ଅଙ୍ଗ ତଥା ସେହି ଇନ୍ଦ୍ରିୟର ସାର୍ଥକତା । କେବଳ ଖାଇପିଇ ହୃଷ୍ଟପୁଷ୍ଟ ହୋଇ, ମାଂସ ବୃଦ୍ଧି କରି ଓ ବିଷୟ ବାସନାରେ ଲିପ୍ତ ହୋଇ ପାପବୃଦ୍ଧି କରିବାରେ ଅମୂଲ୍ୟ ମନୁଷ୍ୟ ଜନ୍ମର ଦୁରୁପଯୋଗ ହୋଇଥାଏ । ଏହା ମଣି ଦେଇ କାଚ ବଦଳାଇବା ପରି । ଏହା ବୁଦ୍ଧିମତ୍ତା ନୁହେଁ । ମଣିଷ ଜୀବନର ସାର୍ଥକତା ତ କେବଳ ସେବାଦ୍ୱାରା ହୋଇଥାଏ । ସେବା ହିଁ ପରମ ଧର୍ମ । ସେବା ହିଁ ସର୍ବଶ୍ରେଷ୍ଠ ସାଧନ । ସେବା ହିଁ ସ୍ୱର୍ଗ ।

କହିବାକୁ ଗଲେ ସେବା ସବୁକିଛି । ଯେଉଁମାନେ ସେବାକରି ଜାଣନ୍ତି ନାହିଁ ସେମାନେ କିଛି ଜାଣନ୍ତି ନାହିଁ । ସେବା ଦୁଇ ପ୍ରକାର । ଗୋଟିଏ ଚଳ ସେବା ଗୋଟିଏ ଅଚଳ ସେବା । ମାତା, ପିତା, ଗୁରୁ, ଭଗବଦ୍‌ଭକ୍ତ, ଅତିଥି ତଥା ପ୍ରାଣୀମାନଙ୍କୁ ଭଗବାନଙ୍କର ସ୍ୱରୂପ ଜ୍ଞାନ କରି ଭଗବଦ୍ ବୁଦ୍ଧିରେ ସେମାନଙ୍କର ଯଥାଶକ୍ତି ସେବା କରିବାକୁ ଚଳ ସେବା କୁହାଯାଏ । ଭଗବାନଙ୍କ ଅର୍ଚ୍ଚା ବିଗ୍ରହ(ପ୍ରତିମୂର୍ତ୍ତି) ଆଦିରେ ସାକ୍ଷାତ୍ ଭଗବାନ ଜ୍ଞାନ କରି ଶ୍ରଦ୍ଧା ଓ ଭକ୍ତିରେ ସେବା କରିବାକୁ ଅଚଳ ସେବା କୁହାଯାଏ । ଯେଉଁ-ମାନେ ଏହି ଉଭୟ ପ୍ରକାର ସେବା କରନ୍ତି, ସେମାନେ ବାସ୍ତବରେ ଭଗବଦ୍ ଭକ୍ତ । କେହି କେହି ଦିନସାରା ଘଣ୍ଟିବଜାଇ ଭଗବାନଙ୍କର ପ୍ରତିମାର ପୂଜା କରନ୍ତି, କିନ୍ତୁ ମାତାଙ୍କୁ, ପିତା, ଗୁରୁ, ସାଧୁ, ବୈଷ୍ଣବ ଓ ଅନ୍ୟ ସମସ୍ତ ପ୍ରାଣୀଙ୍କୁ ଦ୍ୱେଷ କରନ୍ତି । ଏପରି ଲୋକମାନେ ପୂଜକ ନୁହନ୍ତି, ବଞ୍ଚକ । ସେହିପରି ଯେଉଁମାନେ ଜନସେବା ମନରେ ଅହଙ୍କାର ପୋଷଣ କରନ୍ତି, କିନ୍ତୁ ଭଗବଦ୍ ଭକ୍ତ ମାନଙ୍କୁ ଦେଖିଲେ ଈର୍ଷା ପରିପୂର୍ଣ ହୁଅନ୍ତି ଏବଂ ମୂର୍ତ୍ତି ପୂଜା, ଧାର୍ମିକ କୃତ୍ୟ ଆଦିକୁ ବୃଥା ଆଡ଼ମ୍ବର ଏବଂ ଦାମ୍ଭିକ ମାନଙ୍କର କାର୍ଯ୍ୟ ବୋଲି କହନ୍ତି, ସେମାନେ ଯଥାର୍ଥରେ ଜନ ସେବକ ନୁହନ୍ତି । ଏମାନେ ହେଉଛନ୍ତି ଏକ ପ୍ରକାର ବ୍ୟବସାୟୀ । ଏ ଉଭୟ ପ୍ରକାରର ଲୋକ ଯଥାର୍ଥରେ ଏକ ଗୋଷ୍ଠୀର । ଅଚଳ ପ୍ରତିମା ଅର୍ଚ୍ଚାବିଗ୍ରହରେ ଯେ ସ୍ୱୟଂ ବିରାଜମାନ କରିଅଛନ୍ତି । ସେହିଁ ପ୍ରାଣୀ ମାତ୍ରରେ ବିରାଜମାନ କରିଅଛନ୍ତି । ଏହାହିଁ ସେବାର ସର୍ବୋତ୍ତମ ସିଦ୍ଧାନ୍ତ ଅଟେ ।

ଶ୍ରୀ ଶୁକଦେବ ରାଜାପରୀକ୍ଷିତଙ୍କୁ କହିଲେ—"ରାଜନ୍ ! ରାଜର୍ଷି ଅମ୍ବରୀଷ ସେହିପରି ସମଗ୍ର ବସୁନ୍ଧରାର ସମ୍ରାଟ ଥିଲେ । ଧର୍ମ ପୂର୍ବକ ଶାସନ କରୁଥିଲେ । ପ୍ରଜା ଗଣଙ୍କୁ ପୁତ୍ରବତ୍ ପାଳନ କରୁଥିଲେ । ପ୍ରତ୍ୟେକ ପ୍ରାଣୀଙ୍କଠାରେ ସର୍ବେଶ୍ୱର ଭଗବାନ ବ୍ୟାପ୍ତ ବୋଲି ଜ୍ଞାନ କରୁଥିଲେ ଏବଂ ନିଜର ସମସ୍ତ ଇନ୍ଦ୍ରିୟକୁ ଭଗବାନଙ୍କ ସେବା ପୂଜାରେ ଉପଯୋଗ କରୁଥିଲେ । ତାଙ୍କ ମନରେ ସର୍ବଭୂତରେ ଭଗବାନ୍ ବ୍ୟାପୀ ରହିଥିବା ଜ୍ଞାନ କରି ଶରୀରକୁ ତାଙ୍କର ସେବାରେ ନିୟୋଜିତ କରୁଥିଲେ ।

ନିର୍ନିମେଷ ନୟନରେ ଭଗବାନଙ୍କର ମନୋହର ମୂର୍ତ୍ତିକୁ ଦର୍ଶନ କରିବାକୁ ସେ ଜୀବନରେ ନେତ୍ରର ସଫଳତା ବୋଲି ମନେ କରୁଥିଲେ । ସେ ପ୍ରତିଦିନ ନିୟମରେ ମନ୍ଦିରମାନଙ୍କୁ ଯାଇ ଦର୍ଶନ କରିବାରେ ଅଭ୍ୟସ୍ତ ଥିଲେ । ମନ୍ଦିରକୁ ଯାଇ ଛଡ଼ା ତୁଳସୀ, ଚନ୍ଦନ ଓ ଚରଣାମୃତ ଗ୍ରହଣ କରୁଥିଲେ । ଭଗବାନଙ୍କର ଛଡ଼ା ତୁଳସୀ ଓ ଫୁଲ୍ ଇତ୍ୟାଦିକୁ ନେଇ ସେ ନିଜ ମସ୍ତକରେ ଲଗାଉଥିଲେ । ଛଡା ମାଳାକୁ ପିନ୍ଧୁଥିଲେ ଓ ଭଗବାନଙ୍କ ଚରଣରେ ଚଢ଼ା ଯାଉଥିବା ଛଡ଼ା ତୁଳସୀ ଓ ଫୁଲକୁ ଅତି ଉଲ୍ଲାସରେ ଆଘ୍ରାଣ କରୁଥିଲେ ।

ନିଜ ଗୃହରେ ମଧ୍ୟ ସେ ସେବା ପୂଜାରେ ନିଜକୁ ନିୟୋଜିତ କରୁଥିଲେ, ଯେପରିକି ସ୍ନେହମୟୀ ମମତାମୟୀ ମାତା ନିଜର ଏକମାତ୍ର ପୁତ୍ରକୁ ଅତି ସ୍ନେହ କରନ୍ତି, ପ୍ରତିକ୍ଷଣ ତାଙ୍କୁ ଯେପରି ନିଜ ଆଖି ଆଗରେ ଦେଖି ଆନନ୍ଦରେ ସମସ୍ତ କାଟନ୍ତି । ସେଥିପାଇଁ ସେ ଯଥାବିଧି ଗୋପାଳଜୀଙ୍କର ସେବା କରୁଥିଲେ । ତାଙ୍କ ପାଇଁ ବାଛି ବାଛି ସୁନ୍ଦର ସୁନ୍ଦର ଫୁଲ ଆଣୁଥିଲେ, ମୋଟାମୋଟା ରଙ୍ଗ ବିରଙ୍ଗ ଗଜରାହାର ଗୁନ୍ଥୁଥିଲେ, ସୁନ୍ଦର ସୁନ୍ଦର ସବୁଜ ମଞ୍ଜରୀ ସହିତ ତୁଳସୀ ଦଳ ଚୟନ କରି ଆଣୁଥିଲେ । ଭଗବାନଙ୍କର ଏକ ଏକ ନାମ ଉଚ୍ଚାରଣ କରି ଏକ ଏକ ତୁଳସୀ ଚଢ଼ାଉଥିଲେ । ବିଧି ମୁତାବକ ଷୋଡ଼ଶୋପଚାରରେ ପୂଜା କରୁଥିଲେ, ପଣ୍ଡିତଙ୍କ ମୁଖରୁ ଭାଗବତ କଥା ଶ୍ରବଣ କରୁଥିଲେ, ଏହିପରି ଭାବରେ ମଧ୍ୟାହ୍ନ ପର୍ଯ୍ୟନ୍ତ ସେ ଠାକୁର ସେବାରେ ନିଜକୁ ନିୟୋଜିତ କରୁଥିଲେ । ଭଗବଦ୍-ଭକ୍ତଙ୍କୁ ପ୍ରସାଦ ବିତରଣ କରି ଯାହାକିଛି ଅବଶିଷ୍ଟ ରହୁଥିଲା, ତାହା ଅତି ଆଗ୍ରହରେ ସେବନ କରୁଥିଲେ । ସେ ଯେଉଁଠାରେ ଯେଉଁ ମନ୍ଦିର ଦେଖୁଥିଲେ, ତାଙ୍କର ଏପରି ଅଭ୍ୟାସ ହୋଇ ଯାଇଥିଲା ଯେ; ଆପେ ଆପେ ତାଙ୍କର ଶିର ନତ ହୋଇ ଯାଉଥିଲା । ଗୋ, ବ୍ରାହ୍ମଣ, ସାଧୁସନ୍ଥ ଓ ଗୁରୁଜନଙ୍କୁ ଦେଖିବାମାତ୍ରେ ସେ ତଳକୁ ଓହ୍ଲାଇ ଆସୁଥିଲେ । ସେ ପାଦରେ ଚାଲି ଚାଲି ଯିବାରେ ଏପରି ଅଭ୍ୟସ୍ତ ହୋଇଥିଲେ ଯେ ମନ୍ଦିର ଓ ତୀର୍ଥ କ୍ଷେତ୍ରକୁ ଯାତ୍ରା କରିବା ପାଇଁ ଅତି ଆଗ୍ରହରେ ଏକାକୀ ଅଗ୍ରସର ହେଉଥିଲେ । ତାଙ୍କର ଯେତେକାର୍ଯ୍ୟ ସେ କରୁଥିଲେ ନିଜ ଶରୀର ସୁଖ ପାଇଁ ନକରି ପ୍ରତ୍ୟେକ କାର୍ଯ୍ୟ ସର୍ବାତ୍ମା ଶ୍ରୀହରିଙ୍କ ପ୍ରସନ୍ନତା ପାଇଁ କରୁଥିଲେ । ଯେଉଁ ଭଗବଦ୍ ଭକ୍ତ ଭକ୍ତ ମାନଙ୍କର କେବଳ ଆଶା, ସେହି ବିନୟବାହିନୀ ଅଚଳା ଭକ୍ତି ଲାଭ କରିବା ପାଇଁ ସେ ସର୍ବଦା ବ୍ୟାକୁଳ ହେଉଥିଲେ । ତାଙ୍କର ଭଗବଦ୍ ଭକ୍ତିର ଏତେ ପ୍ରଭାବ ଥିଲା ଯେ ଘରେ ଘରେ ଭଗବାନଙ୍କ ପ୍ରତିମା ପୂଜା କରାଯାଉଥିଲା । ଏ ସମ୍ବନ୍ଧରେ ଏକ ଘଟଣା ପ୍ରସିଦ୍ଧି ଲାଭ କରିଛି ।

ମହାରାଜ ଅମ୍ବରୀଷଙ୍କର ଭଗବଦ୍‌ଭକ୍ତି ସାରା ସଂସାରରେ ବ୍ୟାପି ଯାଇଥିଲା । ଥରେ ଜଣେ ରାଜକୁମାରୀ ତାଙ୍କର ଭକ୍ତି ଭାବର ପ୍ରଶଂସା ଶୁଣି ମନେମନେ ତାଙ୍କୁ ନିଜର ପତିରୂପେ ବରଣକରି ନେଇଥିଲେ । ଦିନେ ସେହି ରାଜକୁମାରୀ ଅତି ନମ୍ରତାର ସହିତ ଲାଜ ଲାଜ ହୋଇ ନିଜର ପିତାଙ୍କୁ କହିଲେ —"ପିତଃ ! ଆପଣଙ୍କ ଆଗରେ ଏପରି କଥା ପ୍ରକାଶ କରିବା ଉଚିତ୍ତ ନୁହେଁ, କିନ୍ତୁ ନ କହିଲେ ନଚଳେ ବୋଲି କହିବାକୁ ବାଧ୍ୟ ହେଉଛି ।"

ପିତା ଅତ୍ୟନ୍ତ ସ୍ନେହରେ କହିଲେ—"ମା ! ତୁତ ମୋର ଅତି ଆଦରଣୀୟା କନ୍ୟା । ତୁ ଯାହା କହିବୁ, ମୁଁ ତାହା କରିବି । ତୋଭଳି ଭକ୍ତିମତୀ କନ୍ୟା ଭାଗ୍ୟରେ ଥିଲେ ମିଳେ ।"

କନ୍ୟା କହିଲା—"ପିତଃ ! ମୁଁ ରାଜର୍ଷି ଅମ୍ବରୀଷଙ୍କର ଦାସୀ ହେବାପାଇଁ ମୋର ଖୁବ ଇଚ୍ଛା ହେଉଛି । ମୁଁ ମନେ ମନେ ତାଙ୍କୁ ନିଜର ପତିରୂପେ ବରଣ କରି ନେଇଛି ।"

ରାଜା କହିଲେ—"ମା ! ସେ ଚକ୍ରବର୍ତ୍ତୀ ସମ୍ରାଟ, କାହିଁ ମୋଭଳି ଜଣେ ଅକିଞ୍ଚନ ମାଣ୍ଡଳିକ ଭୂପତି । ସେ ଆମର ଏହି ପ୍ରାର୍ଥନାକୁ କାହିଁକି ଶୁଣିବେ ? ଯଦି ସେ ଏହି ପ୍ରସ୍ତାବକୁ ସ୍ୱୀକାର କରି ନିଅନ୍ତି, ତେବେ ମୋ ପାଇଁ ଏହାଠାରୁ ବଳି ଆନନ୍ଦର କଥା ଆଉ କଣ ଥାଇପାରେ ?"

ରାଜକୁମାରୀ କହିଲେ—"ପିତଃ ! ତାଙ୍କ ସାମ୍ରାଜ୍ୟରେ ମୋର ଯାଏ ଆସେ କେତେ ? ମୁଁ ତାଙ୍କ ରାଜ୍ୟ, ଧନ ବୈଭବ ତଥା ସୁଖ ସାମଗ୍ରୀ ପ୍ରତି ଲାଲସା ରଖି ତାଙ୍କୁ ବରଣ କରି ନାହିଁ । ମୁଁ କେବଳ ତାଙ୍କର ଭଗବଦ୍ ଭକ୍ତିରେ ସନ୍ତୁଷ୍ଟ ହୋଇ ତାଙ୍କ ପ୍ରତି ଆକୃଷ୍ଟ ହୋଇଛି । ତାଙ୍କ ଦର୍ଶନରେ ମୁଁ କୃତାର୍ଥ ହେବାକୁ ଚାହୁଁଛି । ଆପଣ ତାଙ୍କ ନିକଟକୁ ଏକ ପତ୍ର ଲେଖନ୍ତୁ । ଆପଣଙ୍କ ପକ୍ଷରୁ ତାଙ୍କୁ ଥରେ ପ୍ରାର୍ଥନା କରାଯାଉ, ସେ କଣ କହୁଛନ୍ତି ଦେଖିବା ।"

କନ୍ୟାର କଥା ଅନୁସାରେ ରାଜା ଏକ ବିନୟ ପତ୍ର ଲେଖି ଜଣାଇଲେ ଯେ—"ମୋର ପରମ ଭଗବଦ୍‌ଭକ୍ତା କନ୍ୟା ଆପଣଙ୍କୁ ମନ ମଧ୍ୟରେ ପତିରୂପେ ବରଣ କରି ମୋ ଆଗରେ ତାହା ପ୍ରକାଶ କରିଛି । ଏବେ ଆପଣଙ୍କର ଯାହା ଇଚ୍ଛା"। ଏହି ପତ୍ରଟିକୁ ସେ ନେଇ ଜଣେ ବୃଦ୍ଧ ବ୍ରାହ୍ମଣ ହାତରେ ଅମ୍ବରୀଷଙ୍କ ନିକଟକୁ ପଠାଇଲେ । ମହାରାଜ ଅମ୍ବରୀଷ ଏହା ପଢ଼ି କିଛି ଚିନ୍ତାକରି କହିଲେ—"ମୋର ତ ଏଠାରେ ଅନେକ ରାଣୀ ଅଛନ୍ତି । ମୁଁ ବିବାହିତ, ଯଦି ସେ ମୋ ସହିତ ଅନ୍ୟ କୌଣସି ସମ୍ବନ୍ଧ ନ ରଖି ସର୍ବଦା କେବଳ ପ୍ରଭୁଙ୍କଠାରେ ନିବିଷ୍ଟଚିତ୍ତ ହୁଅନ୍ତି, ତେବେ ମୋର କୌଣସି ଆପତ୍ତି ନାହିଁ ।"

ବ୍ରାହ୍ମଣ ଫେରିଆସି ସେହି କଥା ରାଜା ଓ ରାଜକୁମାରୀଙ୍କୁ କହିଲେ । ତାହା ଶୁଣି ରାଜକୁମାରୀ ପୁଣିଥରେ ବ୍ରାହ୍ମଣ ହାତରେ ଖବର ପଠାଇ କହିବାକୁ କହିଲେ ଯେ-ସମସ୍ତ କଥା ଶୁଣି ମୁଁ ଅତ୍ୟନ୍ତ ପ୍ରସନ୍ନ ହେଲି । ମହାରାଜଙ୍କ ମନରେ ସ୍ତ୍ରୀ ଲୋଭ ନାହିଁ । ସେ ସାଂସାରିକ ସୁଖ ପାଇଁ ଇଚ୍ଛା ନକରି ଭଗବଦ୍ ଭକ୍ତିପାଇଁ ହିଁ ସବୁ କିଛି କରୁଛନ୍ତି । ତାହା ମୋ ପାଇଁ ଅତ୍ୟନ୍ତ ସୌଭାଗ୍ୟର କଥା । ମହାରାଜ ମୋର ପ୍ରାର୍ଥନା ରକ୍ଷା କରିଥିବାରୁ ମୁଁ ଧନ୍ୟା । ମୋର ମଧ୍ୟ ସାଂସାରିକ ବିଷୟ ବାସନା ପ୍ରତି ଅଭିଳାଷ ନାହିଁ । ମୋର ମନ ତାଙ୍କ ଭକ୍ତି ଭାବରେ ସନ୍ତୁଷ୍ଟ ହୋଇଯାଇଛି । ଏଥିପାଇଁ ମୁଁ ତାଙ୍କୁ ମନେ ମନେ ନିଜର ପତି ଆସନରେ ଅଳଂକୃତ କରି ସାରିଛି । ଏବେ ମୁଁ ଅନ୍ୟ ପତିଙ୍କ ମୁଖ ଦର୍ଶନ କରିବାକୁ ଚାହୁଁ ନାହିଁ । ଯଦି ମହାରାଜ ମୋତେ ସ୍ୱୀକାର ନ କରନ୍ତି, ତେବେ,

ମୁଁ ସଶରୀରରେ ତାଙ୍କ ନିକଟରେ ପହଞ୍ଚି ନ ପାରିଲେ ମଧ୍ୟ ମୋର ମନ ପ୍ରାଣ ତାଙ୍କ ପାଖରେ ପହଞ୍ଚିଯିବ ।''

ବ୍ରାହ୍ମଣ ଆଉଥରେ ଯାଇ ରାଜକୁମାରୀଙ୍କର କହିଥିବା କଥା ମହାରାଜ ଅମ୍ବରୀଷଙ୍କୁ କହିଲେ । ତାଙ୍କ ଉପରେ ରାଜକୁମାରୀଙ୍କର ଏତେ ଅନାବିଳ ସ୍ନେହ ଥିବାର ବୁଝିପାରି ସେ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ପାଲିଙ୍କି ଓ କେତେକ କାନ୍ଧଆଳଙ୍କ ସହିତ ନିଜର ଝଡ଼୍‌ଗ ପଠାଇ ଦେଲେ । ସେତେବେଳେ ରାଜାମାନଙ୍କର ପ୍ରଥମ ବିବାହ ସାକ୍ଷାତ୍ ବର-କନ୍ୟାଙ୍କ ମଧ୍ୟରେ ହେଉଥିଲା ଓ ଅନ୍ୟ ବିବାହ ଖଡ଼୍‌ଗ ସହିତ ହେଉଥିଲା ।

ସେହି ରାଜା ଅତି ଆନନ୍ଦିତ ହୋଇ ଝଡ଼୍‌ଗ ସହିତ କୁମାରୀର ବିବାହ ବୈଦିକ ଲୋକାଚାର ମତରେ କରାଇ ଦାନ ଦକ୍ଷିଣା ସହିତ କୁମାରୀଙ୍କୁ ମହାରାଜଙ୍କ ଉଆସକୁ ପଠାଇ ଦେଲେ । ମହାରାଜ ନିଜର ନୂତନ ସ୍ତ୍ରୀକୁ ଅତ୍ୟନ୍ତ ଆଦର କଲେ । ମନ୍ଦିର ସମ୍ମୁଖରେ ଏକ ନୂତନ ଅଟ୍ଟାଳିକା ନିର୍ମାଣ କରାଇ ତହିଁରେ ତାଙ୍କୁ ରଖାଇଲେ ଓ ତାଙ୍କର ସମସ୍ତ ଆବଶ୍ୟକୀୟ ଭୋଗ ସାମଗ୍ରୀ ଯୋଗାଇ ଦେଇ ଚଳିବାର ସମସ୍ତ ପ୍ରକାର ସୁବ୍ୟବସ୍ଥା କରିଦେଲେ ।

ପରଦିନ ଅତି ପ୍ରତ୍ୟୁଷରୁ ନୂଆରାଣୀ ଶଯ୍ୟାତ୍ୟାଗ କରି ନିତ୍ୟକର୍ମ ସମାପନ କରି ଧୀରେ ଧୀରେ ପୂଜା ମନ୍ଦିରକୁ ଗଲେ । ତାଙ୍କୁ ଦାସ ଦାସୀ ଅଟକାଇ ପାରିଲେ ନାହିଁ । ସେ ଚୁପ୍‌ଚାପ୍ ଭିତରକୁ ଗଲେ ଓ ମନ୍ଦିରକୁ ଉତ୍ତମରୂପେ ଧୂଆ ପୋଛା କଲେ । ପାର୍ଷଦଙ୍କର ଖଟୁଲିକୁ ମଜାମଜି କରି ସ୍ୱଚ୍ଛ କଲେ । ସୁନ୍ଦର ସୁନ୍ଦର ହାର ଗୁନ୍ଥି ରଖିଲେ । ପୂଜାର ସମସ୍ତ ସାମଗ୍ରୀ ଏକତ୍ରିତ କରି ମହାରାଜଙ୍କ ନିଦ ଭାଙ୍ଗିବା ପୂର୍ବରୁ ସେ ଫେରି ଆସିଲେ ।

ପ୍ରାତଃ କାଳରେ ଶଯ୍ୟାତ୍ୟାଗ କରି ନିଜର ନିତ୍ୟକର୍ମ ସମାପନ କରି ରାଜା ଯେତେବେଳେ ନିଜର ପୂଜା ମନ୍ଦିରକୁ ଗଲେ, ସେତେବେଳେ ସେ ଦେଖିଲେ ଯେ ପୂଜାର ସମସ୍ତ ସାମଗ୍ରୀ ସୁନ୍ଦର ଭାବରେ ସଜାହୋଇ ରହିଛି । ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସେ ବାରମ୍ବାର ଚିନ୍ତା କରିବାକୁ ଲାଗିଲେ—''କିଏ ମୋର ସେବା ଅପହରଣ କଲା ? କିନ୍ତୁ ସେ କାର୍ଯ୍ୟ ଏତେ ନିର୍ମଳ ଭାବରେ କରାଯାଇଥିଲା ଯେ ରାଜାଙ୍କର ମନ ସନ୍ତୁଷ୍ଟ ହୋଇଗଲା । ସେ କାହାରିକୁ କିଛି ପଚାରିଲେ ନାହିଁ । ଅନ୍ୟଦିନ ମଧ୍ୟ ସେହି-ପରି ହୋଇଥିବାର ସେ ଦେଖିଲେ । ତା ପରଦିନ ମଧ୍ୟ ସେହିକଥା । ଏଥିରେ ରାଜାଙ୍କର ଉତ୍କଣ୍ଠା ଆହୁରି ବଢ଼ିଗଲା । ସେ ଚିନ୍ତା କରିବାକୁ ଲାଗିଲେ, ଏହି ସେବା-ଚୋରକୁ କିପରି ଧରିବେ । ଏହା ଭାବି ସେ ଚତୁର୍ଥ ଦିନ ଜାଗ୍ରତ ରହିଲେ । ସେତେ-ବେଳେ ରାଣୀ ସେବା କରିସାରି ବାହାରନ୍ତି, ରାଜା ତାଙ୍କ ହାତକୁ ଧରିପକାଇ ପଚାରିଲେ—''ତୁମେ କିଏ ?'' ଏହାଶୁଣି ରାଣୀ ହଡ଼ବଡ଼େଇ ଗଲେ । ସେ ତ

ମହାରାଜଙ୍କୁ ଦର୍ଶନ କରିଥିଲେ, କିନ୍ତୁ ମହାରାଜ ତାଙ୍କୁ ଆଦୌ ଦେଖି ନଥିଲେ । ସେ ଅତ୍ୟନ୍ତ ଲଜ୍ଜିତ ହୋଇ ଡରି ଡରି ମହାରାଜଙ୍କୁ କହିଲେ—"ପ୍ରଭୋ ! ମୁଁ ଆପଣଙ୍କର ଚରଣ ସେବିକା ନୂଆରାଣୀ । ମୋର ଅପରାଧ କ୍ଷମା କରନ୍ତୁ ।"

ନିଜର ନୂଆରାଣୀଙ୍କର ଭକ୍ତି ଭାବ ଲକ୍ଷିକରି ରାଜା ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ସ୍ନେହଭରା ହୃଦୟରେ ନିଜର ପ୍ରିୟାଙ୍କୁ ଗାଢ଼ ଆଲିଙ୍ଗନ କଲେ ଓ ତାଙ୍କର କେଶକୁ ସାଉଁଳେଇ କାନରେ କହିଲେ—"ପ୍ରିୟେ ! ତୁମର ସେବା କରିବାରେ ଯଦି ଏପରି ଆଗ୍ରହ, ତେବେ ନିଜ ମନ୍ଦିରରେ ଭଗବାନଙ୍କର ସେବାର ବ୍ୟବସ୍ଥା କରିନିଅ ।"

ରାଜା ସ୍ନେହବଶ ହୋଇ ତାଙ୍କ କାନରେ ଏହା କହିଥିଲେ, କିନ୍ତୁ ରାଣୀ ଏହି କଥାକୁ ଗୁରୁମନ୍ତ୍ର ବୋଲି ମାନି ନେଲେ । ସେ ଭାବିଲେ ଯେ, ଏହା ମୋର ଗୁରୁ ପତି ପରମେଶ୍ୱରଙ୍କର ଆଜ୍ଞା । ଏଣୁ ସେ ଅତ୍ୟନ୍ତ ଉଲ୍ଲାସରେ ନିଜ ଘରେ ଭଗବାନଙ୍କର ପୂଜା କରିବାର ବ୍ୟବସ୍ଥା କରିନେଲେ । ରାଣୀଙ୍କ ମନରେ ଏପରି ଅଲୌକିକ ଭଗବଦ୍ ଭକ୍ତି ଉତ୍ପନ୍ନ ହେଲା ଯେ ତାହା କେତେ ହଜାର ବର୍ଷର ଦାନ ଧର୍ମ ଓ ପୁଣ୍ୟର ଫଳ ସହଜରେ କହିହେବ ନାହିଁ । ସେ ରାଜରାଣୀ ଥିଲେ, ତାଙ୍କର କୌଣସି ବସ୍ତୁ ଅଭାବ ନଥିଲା । ସମ୍ରାଟ ତାଙ୍କ ପ୍ରତି ଅନୁକୂଳ ଥିଲେ । ଉଦାରତା ଆଦିଗୁଣ ତାଙ୍କଠାରେ ଭଗବଦ୍ ଭକ୍ତି ସହିତ ସ୍ୱାଭାବିକ ଭାବେ ଥିଲା । ତେଣୁ ଏବେ ସେ ଦୈନନ୍ଦିନ ଭଗବାନଙ୍କ ସେବା ପୂଜାରେ ନିଜକୁ ନିୟୋଜିତ କଲେ । ଅତ୍ୟନ୍ତ ଉତ୍ସାହରେ, ଅତ୍ୟନ୍ତ ଉଲ୍ଲାସରେ ସେ ଭଗବାନଙ୍କ ପୂଜା କରିବାକୁ ଲାଗିଲେ । ସେ ବୁଝୁଥିଲେ ଯେ ଏହା ହିଁ ମୋର ଗୁରୁ ପତି ପରମେଶ୍ୱରଙ୍କର ସେବା । ସନ୍ଧ୍ୟା ସମୟରେ ଭଗବାନଙ୍କର ସୁନ୍ଦର ଶୃଙ୍ଗାର କରାଇ ନିଜକୁ ସୁସଜ୍ଜିତ କରି ଅତି ପ୍ରେମରେ ଭଗବାନଙ୍କ ସମ୍ମୁଖରେ ବସି ବୀଣା ବଜାଇ ନିଜର କୋକିଳ କୂଜିତ କଣ୍ଠରେ ଭଗବାନଙ୍କର ବିରୁଦାବଳୀ (ଗଦ୍ୟପଦ୍ୟମୟୀ ସ୍ତୁତି ବା ପ୍ରଶସ୍ତି) ଗାନ କରୁଥିଲେ । ପଦ ଗାଇ ଗାଇ ତାଙ୍କୁ ସନ୍ତୁଷ୍ଟ କରାଉଥିଲେ । ତାଙ୍କ ନେତ୍ରରୁ ଶ୍ରାବଣର ଧାରା ପରି ନିରନ୍ତର ଅଶ୍ରୁ ଝରୁଥିଲା । ସେ ତନ୍ମୟ ହୋଇ ନିଜେ ନିଜକୁ ଭୁଲି ଯାଉଥିଲେ । ମନ୍ଦିର ମଧ୍ୟକୁ ଅନ୍ୟ କେହି ପ୍ରବେଶ କରିବାକୁ ଆଦେଶ ନ ଥିଲା ।

ଏଣେ ରାଜାଙ୍କ ମନରେ ତ କୌତୁହଳ ଜାତ ହୋଇଛି, ସେ ଦିନେ ସନ୍ଧ୍ୟା ସମୟରେ ଚୁପ୍ ଚୁପ୍ ହୋଇ ରାଣୀଙ୍କ ମନ୍ଦିର ନିକଟକୁ ଗଲେ । ଦୂରରେ ଥାଇ ଦେଖିଲେ, ରାଣୀ ସାକ୍ଷାତ୍ ସୁନ୍ଦର ବେଶଭୂଷା ହୋଇ, ମୂର୍ତ୍ତିମତୀ ଭକ୍ତି ଦେବୀ ଭଳି ବିନମ୍ର ଭାବରେ ବୀଣା ଧରି ଭଗବାନଙ୍କ ସମ୍ମୁଖରେ ବସିଛନ୍ତି । ନେତ୍ରରୁ ତାଙ୍କର ଅଶ୍ରୁ ଝରି ପଡ଼ୁଛି । କମଳ ପାଖୁଡ଼ାଠାରୁ କୋମଳ ତାଙ୍କର ଅଙ୍ଗୁଳି ଗୁଡ଼ିକ ସ୍ୱତଃ ବୀଣାର ତାର ଉପରେ ପଡ଼ି ରହିଛି । ପଦ ଶବ୍ଦ ଗୁଡ଼ିକ ମୁଖରେ ସ୍ପଷ୍ଟ ଉଚ୍ଚାରିତ ହେଉଛି । ଶରୀର

ପ୍ରତି ଯନ୍ତ୍ର ନାହିଁ, ଉନ୍ମାଦମାନଙ୍କ ଭଳି ଧ୍ୟାନରେ ନିମଗ୍ନ ହୋଇ ସ୍ୱର ଝଙ୍କାର ସହିତ ତାଙ୍କର ଚିତ୍ତବୃତ୍ତିକୁ ତଦନୁରୂପ ବହ୍ୱଳିତ ହେଉଅଛି । କ୍ଷଣ କ୍ଷଣକେ ହୃଦୟରେ ନୂତନ ନୂତନ ହିଲ୍ଲୋଳ ଉଠୁଅଛି, ଯେଉଁଥିରେ କି ସେ ଉଡ଼େଇ ବୁଡ଼େଇ ହେଉଛନ୍ତି ଓ ଆତ୍ମ ବିସ୍ମୃତ ହୋଇ ପଡ଼ୁଛନ୍ତି । ଆତ୍ମାରାମଙ୍କୁ ସନ୍ତୁଷ୍ଟ କରୁଛନ୍ତି ।

ମହାରାଜ କିଛି ସମୟ ବାହାରେ ଠିଆ ହୋଇ ଭଗବାନଙ୍କ ସ୍ତୁତି ଶ୍ରବଣ କରୁଥିଲେ, ଏବେ ଆଉ ବାହାରେ ନ ରହି ସହସା ମନ୍ଦିର ଭିତରେ ପ୍ରବେଶ କଲେ । ମହାରାଜା ପ୍ରବେଶ କରିବାକ୍ଷଣି ରାଣୀଙ୍କର ଧ୍ୟାନ ଭାଙ୍ଗିଗଲା । ସେ ସମ୍ମୁଖରେ ନିଜର ପତି ପରମେଶ୍ୱରଙ୍କୁ ଦର୍ଶନ କରି ଧଡ଼ପଡ଼ ହୋଇ ଉଠିପଡ଼ି ଠିଆ ହେଲେ । ତାଙ୍କର ପରିଧାନ ବସ୍ତ୍ର ଠିକ ଠିକଣା ନଥିଲା । କେଶଗୁଚ୍ଛ ଆଲୁଳାୟିତ ହୋଇ ପଡ଼ିଥିଲା । ସେ ଶୀଘ୍ର ଏ ସମସ୍ତ ସଜାଡ଼ି ନେଇ ଲଜ୍ଜା କାରଣରୁ ବ୍ୟତିବ୍ୟସ୍ତ ହୋଇ ପଡ଼ିଥିଲେ । ବୀଣା ଗୋଟିଏ ପାଖରେ ପଡ଼ିଗଲା । ଅଙ୍ଗୁଳି ଗୁଡ଼ିକ ଥରି ଉଠିଲା । ମହାରାଜ ତାଙ୍କୁ ହୃଦୟରେ ଲଗାଇ କହିଲେ--"ପ୍ରିୟେ ! ତୁମେ ଧନ୍ୟ । ଆହା ଏତେ ଅନୁରାଗ, ଏପରି ସ୍ନେହ, ମୋ ହୃଦୟରେ ତ ଏପରି ଭାବ କେବେ ଉଦୟ ହୋଇ ନାହିଁ ?"

ଏହାଶୁଣି ଲଜ୍ଜାରେ ମଥାନତ କରି ପ୍ରେମାଶ୍ରୁ ଗଡ଼ାଇ, ନିଜର ଭାଗ୍ୟକୁ ନିନ୍ଦାକରି ରାଣୀ କମ୍ପିତ ହୃଦୟରେ ଭାରର କଠିନତାକୁ ସମ୍ଭାଳି ନେଇ ମହାରାଜଙ୍କ ସହାୟତାରେ ସିଧାହୋଇ ଠିଆ ହେଲେ । ତାଙ୍କ ମୁଖରୁ ପଦେହେଲେ ବି କଥା ବାହାରିଲା ନାହିଁ ।

ମହାରାଜ ସେତେବେଳେ ତାଙ୍କୁ କହିଲେ--"ପ୍ରିୟେ ! ତୁମେ ଯେଉଁ ପଦ ଏବେ ଗାଉଥିଲ, ତାହା ମୋତେ ଆଉ ଥରେ ସେହି ତାଳଲୟରେ ଶୁଣାଅ, ମୋର ଅତୃପ୍ତ ହୃଦୟ ବ୍ୟାକୁଳ ହେଉଅଛି । ସେହି ପଦ ମୋର ଲୋମ ଲୋମରେ ଆନନ୍ଦର ବୀଜ ରୋପଣ କରି ଦେଇଛି ।"

ନିଜର ପତି ପରମେଶ୍ୱରଙ୍କର ଏ ପ୍ରକାର ଆଜ୍ଞା ପାଇ ରାଣୀ ବୀଣା ଉଠାଇଲେ ଓ ସେହି ରାଗରାଗିଣୀରେ, ସେହିଧ୍ୱନିରେ ପୂର୍ବପରି ତନ୍ମୟତାରେ ସେହି ପଦକୁ ପୁନଶ୍ଚ ଗାଇବାକୁ ଆରମ୍ଭ କଲେ । ସେତେବେଳେ ପ୍ରକୃତି ସ୍ତବ୍ଧ ଥିଲା । ସମସ୍ତେ ଶୋଇ ଯାଇଥିଲେ । କେବଳ ତିନିଜଣ ଜାଗ୍ରତ ଥିଲେ – ରାଜା, ରାଣୀ ଓ ଭଗବାନ୍ । ପ୍ରେମର ପୂର୍ଣ୍ଣିମା ବେଳା ନିଶିଥରେ ପ୍ରେମ ପାଗଳ ଓ ପ୍ରେମୀ ଦ୍ୱୟ ଏକାନ୍ତ ଭବନରେ ବସି ନିଜର ଇଷ୍ଟଙ୍କ ଧ୍ୟାନରେ ତନ୍ମୟ ହୋଇ ଯାଇଥିଲେ । ଦୁଇ ଶରୀରରେ ଏକ ମନ ସଞ୍ଚାରିତ ହେଉଥିଲା । ଏକ ସଙ୍ଗେ ଉଭୟ ହୃଦୟରେ କମ୍ପନ ହେଉଥିଲା, ଏ ସମୟରେ ଯେଉଁ ଅନୁପମ ରସର ବିକାଶ ଲାଭ କରିଥିଲା, ତାହା ବାକ୍ୟରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଏହିପରି ଭାବରେ ଉଭୟେ ପ୍ରେମରେ ବିଭୋର ହୋଇ

ଶ୍ରୀ ହରିଙ୍କ ପ୍ରତିମାରେ ମନପ୍ରାଣ ନିୟୋଜିତ କରିଥିଲେ । ତାଙ୍କର ଧ୍ୟାନ ସେତେବେଳେ ଯାଇ ଭଗ୍ନ ହେଲା, ଯେତେବେଳେ ପ୍ରାଚୀ-ଦିଶାରେ ଭଗବାନ ଭୁବନ ଭାସ୍କର ଉଦିତ ହୋଇ ଅଙ୍ଗେ ଅଙ୍ଗେ ନିଜର ସୁନେଲି କିରଣ ବିଛାଇ ଦେଲେ । ସମ୍ପୂର୍ଣ୍ଣ ରାତ୍ରି କ୍ଷଣକ ମଧ୍ୟରେ ପାହିଗଲା । ଏହିପରି ଭାବରେ ନିତିପ୍ରତି ହରି ଚର୍ଚ୍ଚାରେ ସମୟ ଅତିବାହିତ ହେବାକୁ ଲାଗିଲା । ମହାରାଜ ଏବେ ନୂଆରାଣୀଙ୍କ ମହଲକୁ ଛାଡ଼ି ଅନ୍ୟ ରାଣୀଙ୍କ ମହଲକୁ ଆଦୌ ଗଲେ ନାହିଁ । ତାଙ୍କର ସମୟ ବି ନଥିଲା ।

ଅନ୍ୟ ରାଣୀମାନେ ଯେତେବେଳେ ଏ କଥା ଜାଣିଲେ, ସେତେବେଳେ ସେମାନେ ବୁଝି ପାରିଲେ ଯେ ସାନ ରାଣୀ ନିଜର ଭଗବଦ୍ ଭକ୍ତି ଦ୍ୱାରା ମହାରାଜଙ୍କୁ ବଶ କରି ଅଛନ୍ତି । ସେ କାହାର ରୂପରେ ଆସକ୍ତ ହେବାର ନୁହନ୍ତି । ଭକ୍ତିରେ ହିଁ ତାଙ୍କୁ ବଶ କରାଯାଇ ପାରେ । ତେଣୁ ସମସ୍ତେ ନିଜ ନିଜ ଘରେ ଭଗବାନଙ୍କର ଅର୍ଚ୍ଚା ବିଗ୍ରହ ସ୍ଥାପନା କରିନେଲେ । ସମସ୍ତେ ନୂତନ ଉତ୍ସାହରେ ସେବା କଲେ । ଏବେ ମହାରାଜ ସେମାନଙ୍କ ସେବା ପୂଜା ମଧ୍ୟ ଦେଖିବାକୁ ଆସିଲେ । ଏହି କଥା ନଗର ପ୍ରତି ସାରା ପ୍ରଚାର ହୋଇ ଗଲା ଓ ପ୍ରତି ଘରେ ଘରେ ଭଗବାନଙ୍କର ପୂଜା କରିବାକୁ ଲାଗିଲେ । ରାଜା ଯେପରି ଆଦର୍ଶ ଦେଖାନ୍ତି, ପ୍ରଜାମାନେ ମଧ୍ୟ ସେହି ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତି । ଏହି ପ୍ରକାର ରାଜାଙ୍କର ଭଗବଦ୍ ଭକ୍ତି ପ୍ରଭାବରେ ପ୍ରଜାମାନଙ୍କ ମଧ୍ୟରେ ଭଗବଦ୍ ଭକ୍ତିର ପ୍ରଚାର ଓ ପ୍ରସାର ହୋଇ ଗଲା ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏହିପରି ଭାବରେ ସେହି ଭଗବଦ୍ ଭକ୍ତ ରାଜର୍ଷି ଅମ୍ବରୀଷ ନିଜର ସମ୍ପୂର୍ଣ୍ଣ କର୍ମକୁ ଚରାଚରର ଆତ୍ମା ଯଜ୍ଞ ପୁରୁଷ ଭଗବାନ ଅଧୋକ୍ଷଜଙ୍କ ଠାରେ ଅର୍ପଣ କରି ଭଗବଦ୍ ଭକ୍ତ – ବ୍ରାହ୍ମଣଙ୍କ ଆଦେଶାନୁସାରେ ରାଜକାର୍ଯ୍ୟ ପରିଚାଳନା କରି ସମୟ କାଟିବାକୁ ଲାଗିଲେ ।"

## ଛପ୍ପୟ

ରାଜକୁମାରିଂ ଇକ ସୁନୀ ଭକ୍ତି ନୃପ ପତି ବର ଲୀନ୍ହେଂ ।
ଭଗବଦ୍ ଭକ୍ତି ପ୍ରଭାବ ଭୂପ ନିଜବଶମହଁ କୀନ୍ହେଂ ॥
ଅନ୍ୟହୁ ରାନିନ ସୁନୀ ବିଗ୍ରହ ପୂଜା ସ୍ୱୀକାରୀ ।
ପ୍ରଜା ଭୂପ ରୁଖ ନିରଖି ଭୟେ ସବ ଭକ୍ତ ପୁଜାରୀ ॥
ଭରୀ ଭକ୍ତି ସବ ଦେଶ ମହଁ, ନୃପହୁ ସରାହେଁ ସାଧୁଗନ ।
ସବହିଁ କହେଁ—ଜସ ହୋହିଁ ନୃପ, ତସ ହୀ ହୋବେଁ ପ୍ରଜାଜନ ॥



# ଅମ୍ବରୀଷଙ୍କର ଏକାଦଶୀ ବ୍ରତ ନିଷ୍ଠା

ଆରିରାଧୟିଷୁଃ କୃଷ୍ଣଂ ମହିଷ୍ୟା ତୁଲ୍ୟଶୀଲୟା ।
ଯୁକ୍ତଃ ସାଂବତ୍ସରଂ ବୀରୋ ଦଧାର ଦ୍ୱାଦଶୀବ୍ରତମ୍ ॥

(ଶ୍ରୀ : ଭା : ୯ମ ସ୍କନ୍ଧ, ୪ର୍ଥ ଅଧ୍ୟାୟ, ୨୯ ଶ୍ଲୋକ)

## ଛପ୍ପୟ

କରହିଁ ଭୂପ ଜୀ କାଜ କୃଷ୍ଣ ଅରପନ କରି ଦେବେଁ ।
ସେବା ଶ୍ରଦ୍ଧା ସହିତ କରହିଂ ନିତ ପ୍ରଭୁ ହରି ସେବେଁ ॥
ଧନ ଜନ ସୁତ ପରିବାର କବହୁଁ ଅପନେ ନହିଁ ଜାନେ ।
ବିଷୟ ଭୋଗ ସବ ରତନ ଜଗତ କେ ମିଥ୍ୟା ମାନେ ॥
ତନ୍ମୟ ନିତ ହରି ଭକ୍ତି ମହିଁ, ରହେଁ ସୋଚ ହରିକୁଁ ଭୟୋ ।
ରକ୍ଷ୍ୟ ଭୟ ହେତୁ ନିଯୁକ୍ତ ପ୍ରଭୁ, ଚକ୍ର ସୁଦର୍ଶନ କରି ଦୟୋ ॥

ମନୁଷ୍ୟର ବିଶ୍ୱାସ କମ୍, ତା ନ ହୋଇଥିଲେ ଯେ ଯାହାଙ୍କର ଆଶ୍ରୟରେ ରହେ, ସେ ତାହାର ପାଳନ କରି ଥାଆନ୍ତି । ଆଉ ସବୁଥିରେ ଅପବାଦ ରହିବା ସୁନିଶ୍ଚିତ । କିନ୍ତୁ ଯେ ଅନନ୍ୟ ଭାବରେ ହରିଙ୍କର ଉପାସନା କରନ୍ତି, ତାଙ୍କର ଆବଶ୍ୟକ ସାମଗ୍ରୀ ଗୁଡ଼ିକୁ ପ୍ରାପ୍ତ କରାଇବା ଓ ଯେଉଁ ବସ୍ତୁ ଅଛି ତାହାର ରକ୍ଷଣାବେକ୍ଷଣ କରିବା କାର୍ଯ୍ୟକୁ ସ୍ୱୟଂ ଶ୍ରୀହରି କରିଥାଆନ୍ତି । ତାଙ୍କ ଆଶ୍ରୟରେ ରହୁଥିବା ବ୍ୟକ୍ତିକୁ ଯଦି ବସ୍ତୁର ଅଭାବ ପ୍ରତୀତ ହୁଏ, ତାହାହେଲେ ବୁଝିବା ଉଚିତ୍ ଯେ ଭଗବାନ ଏହା ଦ୍ୱାରା ତାହାର ହିତ ପାଇଁ କରି ଅଛନ୍ତି । ଭକ୍ତ ତ ଭଗବାନଙ୍କୁ ସର୍ବତ୍ର ଦେଖେ । ତା ପାଇଁ ସୁଖ, ଦୁଃଖ, ହାନି, ଲାଭ, ଜୀବନ, ମରଣ, ଯଶ, ଅପଯଶ ଆଦି ସମାନ । ଏ ସମସ୍ତ ଶ୍ରୀହରିଙ୍କର ଦାନ । ଯେଉଁଥିରେ ଆମର କଲ୍ୟାଣ ହେବ ବୋଲି ସେ ମନେ କରନ୍ତି, ତାହାହିଁ କରନ୍ତି । ଯାହାଙ୍କର ସ୍ୱଭାବ ଏହିପରି ହୋଇ ଯାଇଛି, ତାଙ୍କ ଚିନ୍ତା ହିଁ ସର୍ବଦା କେବଳ ଭଗବାନଙ୍କ ଚିନ୍ତା ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମୁଁ ମହାରାଜ ଅମ୍ବରୀଷଙ୍କ ଚରିତ କହୁଥିଲି, ସେହି ମହାରାଜଙ୍କର ସମସ୍ତ ସମୟ ସର୍ବେଶ୍ୱରଙ୍କ ଆରାଧନାରେ ହିଁ କଟୁଥିଲା । ସେ ବିରାଟ ବିରାଟ ଯଜ୍ଞଦ୍ୱାରା ମଧ୍ୟ ଅଚ୍ୟୁତଙ୍କର ଆରାଧନା କରୁଥିଲେ । ମାରଓ୍ୱାଡ଼ ନିକଟରେ ଯେଉଁ ସବୁ ଅଞ୍ଚଳରେ ଜଳ ମିଳେ ତାହାକୁ ଧନ୍ୱ ଦେଶ ବୋଲି କୁହାଯାଏ । ସେହି ଧନ୍ୱ ଦେଶରେ ସରସ୍ୱତୀ ନଦୀ ଯେଉଁଠାରେ ନିମ୍ନରୁ ନିମ୍ନତର ପ୍ରଦେଶକୁ ବହି ଯାଉଛି, ତାହାର ପ୍ରବାହ ଯେଉଁଠାରେ ଶୁଷ୍କ ହୋଇଯାଇଛି, ସେଠାରେ ସେ ଦକ୍ଷିଣା ଦିଆଯାଉଥିବା ଶହ ଶହ ବିରାଟ ବିରାଟ ଅଶ୍ୱମେଧ ଆଦି ଯଜ୍ଞ କରିଥିଲେ । ଯେଉଁଥିରେ କି ବଶିଷ୍ଠ, ଅସିତ ତଥା ଗୌତମ ଆଦି ବଡ଼ ବଡ଼ ବିଖ୍ୟାତ ମୁନିଋଷି ମହର୍ଷି ଆଚାର୍ଯ୍ୟ ହୋଇଥିଲେ ଓ ଯେଉଁଥିରେ ବ୍ରାହ୍ମଣ ମାନଙ୍କୁ ଯଥେଷ୍ଟ ଦାନ ଦକ୍ଷିଣା ଦିଆଯାଇଥିଲା । ସେହି ମହାନ୍ ଐଶ୍ୱର୍ଯ୍ୟଶାଳୀ ଯଜ୍ଞ ଦ୍ୱାରା ସେ ଶ୍ରଦ୍ଧାର ସହିତ ବୈଦିକ ବିଧିରେ ଯଜ୍ଞ ପୁରୁଷଙ୍କର ଯଜନ କରିଥିଲେ । ତାଙ୍କ ଯଜ୍ଞରେ ଦେବଗଣ ପ୍ରତ୍ୟକ୍ଷ ଭାବରେ ଆବିର୍ଭାବ ହୋଇ ଯଜ୍ଞଭାଗ ଗ୍ରହଣ କରିଥିଲେ । ସେହି ଦେବଗଣଙ୍କର ବେଶଭୂଷାକୁ ଦେଖି ରାଜାଙ୍କ ମନରେ ଏପ୍ରକାର ପ୍ରତିଦ୍ୱନ୍ଦିତା ଭାବ ଆସିଯାଇ ଥିଲା ଯେ ସେ ନିଜ ନିଜ ଯଜ୍ଞକୁ ଆମନ୍ତ୍ରିତ ହୋଇ ଆସିଥିବା ଋତ୍ୱିକ, ଅଧ୍ୱର୍ଯ୍ୟୁ, ହୋତା ଓ ସଦସ୍ୟ ଗଣଙ୍କୁ ଏହି ପ୍ରକାରେ ସଜାଇବା ପାଇଁ ସ୍ଥିର କରି କରି ଯେ ଦେବତା ମାନଙ୍କ ଭଳି ବ୍ରାହ୍ମଣମାନଙ୍କୁ ବସ୍ତ୍ରାଭୂଷଣରେ ମଣ୍ଡିତ କରିଥିଲେ । ଏତିକି ମାତ୍ର ପ୍ରଭେଦ ରହିଲା ଯେ, ଦେବତା-ମାନଙ୍କର ପାଦ ବସୁଧା ଉପରେ ପଡ଼ୁ ନ ଥିଲା ଓ ବିପ୍ରଗଣ ଭୂମିକୁ ସ୍ପର୍ଶ କରି ବସା ଉଠା କରୁଥିଲେ । କେବଳ ସେତିକି ନୁହେଁ, ମହାରାଜଙ୍କ ସତ୍ସଙ୍ଗୀ ନିରନ୍ତର ତାଙ୍କ ପାଖରେ ରହି ପୁଣ୍ୟକୀର୍ତ୍ତି ଶ୍ରୀହରିଙ୍କର ଶ୍ରୁତିମଧୁର କଥା ସର୍ବଦା ତାଙ୍କୁ ଶୁଣାଉଥିଲେ । ସେ ସ୍ୱର୍ଗକୁ ନେଇ କଣ ବା କରନ୍ତେ ? ସେଠାର କେବଳ ଭୋଗ । ଯେଉଁଠାରେ ମୁକ୍ତିଦାତା ମହେଶ୍ୱରଙ୍କର ମନୋହର ଚରିତ ନାହିଁ, ତ୍ରୈଲୋକ୍ୟ ପାବନ ପ୍ରଭୁଙ୍କ ପୁଣ୍ୟମୟ ନାମ କୀର୍ତ୍ତନ ହେଉ ନାହିଁ, ସେଠାରେ ଯେତେ ବୃହତ୍ତରୁ ବୃହତ୍ତର ଭୋଗ୍ୟ ପଦାର୍ଥରେ ପରିପୂର୍ଣ୍ଣ ହୋଇଥାଉ ନା କାହିଁକି, ସେବା, କଥା, ରସ, ରୂପ, ପରମାନନ୍ଦ ନିକଟରେ ସେ ତୁଚ୍ଛାତିତୁଚ୍ଛ । ତେଣୁ ସେ ନିରନ୍ତର ଶ୍ରବଣ କୀର୍ତ୍ତନରେ ନିମଗ୍ନ ରହି ମହାରାଜଙ୍କ ସହିତ ଏଠାରେ ବୈକୁଣ୍ଠ ସୁଖ ଅନୁଭବ କରୁଥିଲେ ।

ମହାରାଜ ଅମ୍ବରୀଷଙ୍କର ସମଗ୍ର ଜୀବନ ତପସ୍ୟାମୟ ଥିଲା । ତାଙ୍କର କୌଣସି କାର୍ଯ୍ୟ ଏପରି ହେଉ ନଥିଲା, ଯାହାକି ଭଗବାନଙ୍କ ନିମିତ୍ତ ନୁହେଁ । ବର୍ଣ୍ଣାଶ୍ରମ ଧର୍ମ ପାଳନ କରୁଥିଲେ ମଧ୍ୟ ସେ ଫଳର ଆଶା କେବେ ରଖୁନଥିଲେ । ପୁଣ୍ୟଲୋକ ପ୍ରାପ୍ତି ପାଇଁ ସେ ଧର୍ମପାଳନ କରୁନଥିଲେ । ସେ ତାହା କରୁଥିଲେ ବିଷ୍ଣୁ ପ୍ରୀତ୍ୟର୍ଥେ କର୍ତ୍ତବ୍ୟ ବୁଦ୍ଧିରେ । ସଂସାରର କୌଣସି ବିଷୟ ପ୍ରତି ତାଙ୍କର ଆସକ୍ତି ନଥିଲା । ନିଜ ଘରକୁ ସେ ଭଗବାନଙ୍କ ମନ୍ଦିର ବୋଲି ବିଚାର କରୁଥିଲେ । ସେ ଭାବୁଥିଲେ ଘର ହେଉଛି

ଭଗବାନଙ୍କ ପୂଜା ପାଇଁ ଉଦ୍ଦିଷ୍ଟ । ଯେପରି କୌଣସି ଗୃହସ୍ୱାମୀଙ୍କ ଘରେ ତାଙ୍କର ବହୁତ ଦାସ ଦାସୀ ପରିଚାରକ ରହନ୍ତି, ସେହିପରି ସେ ନିଜକୁ ଶ୍ରୀହରିଙ୍କର ଜଣେ କିଙ୍କର ବୋଲି ମନେକରି ମହଲରେ ନିବାସ କରୁଥିଲେ । ତାଙ୍କର ଏହି ମହଲ ମୋର ବୋଲି ଆସକ୍ତି ନଥିଲା । ସ୍ତ୍ରୀ, ପୁତ୍ର, ବନ୍ଧୁ, ବାନ୍ଧବ ତଥା ଅନ୍ୟ ସମସ୍ତ ପରିବାର ଲୋକଙ୍କୁ ସେ ଏହା ବୁଝୁଥିଲେ, ଯେପରି ଏକ ଗୃହସ୍ୱାମୀଙ୍କ କାର୍ଯ୍ୟକୁ ବହୁତ ସେବକ ମିଳିମିଶି କରନ୍ତି, କାର୍ଯ୍ୟ ସମାପ୍ତ ହେଲାକ୍ଷଣି ପୃଥକ୍ ହୋଇଯାଆନ୍ତି, ସେହିପରି ଭଗବାନଙ୍କ ସେବାନିମିତ୍ତ ଆମେସବୁ ଏକତ୍ରିତ ହୋଇଥାଉଁ । ଆମେ ସମସ୍ତେ ବିଷ୍ଣୁ ଉପାସକ ଅଟୁଁ । ସେହି ସର୍ବାନ୍ତର୍ଯ୍ୟାମୀ ପ୍ରଭୁଙ୍କ ଆଶ୍ରିତ ଅଟୁଁ । ଆମର ତାଙ୍କ ସହିତ ଯେଉଁ ସମ୍ବନ୍ଧ ତାହା କେବଳ ବୈଷ୍ଣବତାର ସମ୍ବନ୍ଧ । ତାଙ୍କର ଯେଉଁ ଚତୁରଙ୍ଗ ସେନାଥିଲେ, ଅକ୍ଷୟ ରତ୍ନ ଭଣ୍ଡାର ଥିଲା ଓ ଅସ୍ତ୍ର ଶସ୍ତ୍ର ଆଦି ଯାହାକିଛି ରାଜସୀ ସାମଗ୍ରୀ ଥିଲା,ସେ ସମସ୍ତଙ୍କୁ ସେ ନିଜର ବୋଲି ଭାବୁ ନଥିଲେ । ସେ ଭାବୁଥିଲେ ଏସବୁ ବସ୍ତୁ ଭଗବାନଙ୍କର । ଭଗବାନ ମୋତେ ସେ ସବୁର ରକ୍ଷଣା ବେକ୍ଷଣା ପାଇଁ ନିଯୁକ୍ତ କରିଛନ୍ତି । ଏହି ନାଶବାନ୍ ଅନିତ୍ୟ ପଦାର୍ଥକୁ ସେ ସ୍ୱପ୍ନରେ ସୁଦ୍ଧା ସଦବସ୍ତୁ ବୋଲି ଭାବୁନଥିଲେ । ସେ ହରିଙ୍କ ବ୍ୟତୀତ ସମସ୍ତ ନାଶବାନ୍, କ୍ଷଣଭଙ୍ଗୁର ଓ ମିଥ୍ୟାବୋଲି ମାନୁଥିଲେ ।

ଥରେ ସେ ଭଗବାନଙ୍କ ପୂଜା କରୁଅଛନ୍ତି, କେହି ଜଣେ ଆସି କହିଲେ— ଶତ୍ରୁମାନେ ଆସି ରାଜ୍ୟ ଆକ୍ରମଣ କଲେଣି, ତଥାପି ଆପଣ ପୂଜାଗୃହରୁ ଉଠୁନାହାନ୍ତି । ତାଙ୍କର ଏହି ଦୃଢ଼ ବିଶ୍ୱାସ ଥିଲା ଓ ସେ କହିଲେ :"ମୁଁ ଯାହାର ପୂଜା କରୁଛି ତାଙ୍କଠାରୁ ବଳିତ ଆକ୍ରମଣ-କାରୀ ନୁହନ୍ତି । ତାହାହେଲେ ମୁଁ ଭଗବାନଙ୍କ ସେବାଗୃହରୁ ଯିବି କାହିଁକି ?"

ଏଥିପାଇଁ ଭଗବାନଙ୍କୁ ମଧ୍ୟ ଏହାଙ୍କ ଚିନ୍ତା ରହୁ ନଥିଲା । ସେହି ଅବୋଧ ଶିଶୁଙ୍କର ଚିନ୍ତା ମା ସବୁଠାରୁ ଅଧିକ କରି ଥାଆନ୍ତି, ଯେ ଆପେ ଆପେ ଖାଇ ଶିଖିନାହିଁ, ନିଜେ ବସି ଉଠି ଜାଣିନାହିଁ । ସେହି ଶିଶୁ ସର୍ବଦା ମା ଉପରେ ନିର୍ଭର କରିଥାଏ । ମା ସର୍ବଦା ତାହାର ଧ୍ୟାନ ରଖିଥାନ୍ତି । ରାତିରେ ସେ ତାକୁ କୋଳରେ ଜାକିଧରି ଶୁଅନ୍ତି, ନିଜେ ଅନିଦ୍ରାରହି ତାର ସୁଖ ନିଦ୍ରାର ସୁବିଧା କରନ୍ତି । ନିଜ ଗୋଡ଼ରେ ଯେଉଁ ପିଲା ଠିଆ ହେଲାଣି, ନିଜେ ଖାଇ ପାରିଲାଣି, ମାତା ତାପାଇଁ ଏତେ ଚିନ୍ତା କରନ୍ତି ନାହିଁ । ସେହିପରି ଯେଉଁ ଭକ୍ତ ଭଗବାନଙ୍କ ବ୍ୟତୀତ ଅନ୍ୟକିଛି ଜାଣେନାହିଁ, ଭଗବାନ ସଦା ସର୍ବଦା ତା ପଛେ ପଛେ ରହିଥାନ୍ତି,ତାକୁ କୌଣସି ବିପଦରେ ପଡ଼ିବାକୁ ଦିଅନ୍ତି ନାହିଁ, ଦୁଃଖ ଭୋଗ କରିବାକୁ ଦିଅନ୍ତି ନାହିଁ କିମ୍ବା କ୍ଷୁଧାରେ ରହିବାକୁ ମଧ୍ୟ ଦିଅନ୍ତିନାହିଁ । ଭଗବାନମୁକ୍ତି ତ ଦିଅନ୍ତି, କିନ୍ତୁ ଭକ୍ତି ସହଜରେ କାହାରିକୁ ଦିଅନ୍ତି ନାହିଁ । କାରଣ ଭକ୍ତି ଦେବାଦ୍ୱାରା ତାଙ୍କୁ ନିରନ୍ତର ଯୋଗକ୍ଷେମର ବ୍ୟବସ୍ଥା କରିବାକୁ ନ ପଡ଼ୁଥିଲେ

ସୁଦ୍ଧା ସର୍ବଦା ଭକ୍ତର ପଛେ ପଛେ ଯିବାକୁ ପଡ଼ିଥାଏ । ଭକ୍ତର ସମସ୍ତ ଆବଶ୍ୟକ ସାମଗ୍ରୀ ତାଙ୍କୁହିଁ ଯୋଗାଇ ଦେବାକୁ ପଡ଼ିଥାଏ ।

ଭଗବାନ ଯେତେବେଳେ ଦେଖିଲେ, ଅମ୍ବରୀଷ ସର୍ବଦା ତାଙ୍କର ଭକ୍ତିରେ ବୁଡ଼ି ରହିଛନ୍ତି ଓ ଶତ୍ରୁମାନଙ୍କୁ ହଟାଇବାପାଇଁ କୌଣସି ଚିନ୍ତା କରୁନାହାନ୍ତି, ସେତେବେଳେ ସେ ନିଜର ସୁଦର୍ଶନ ଚକ୍ରକୁ ଆଜ୍ଞା ଦେଲେ ଯେ ତୁମେ ଯାଇ ମହାରାଜଙ୍କୁ ସବୁପ୍ରକାର ରକ୍ଷା କରିବ । ସୁଦର୍ଶନଚକ୍ର ଭଗବାନଙ୍କ ଆଜ୍ଞାପାଇ ବିପଦ ପଡ଼ିଲେ ରାଜାଙ୍କୁ ରକ୍ଷାକରୁଥିଲେ । ରାଜାଙ୍କ ଉପରକୁ ଯେଉଁ ଆପତ୍ତି ବିପତ୍ତି ଆସୁଥିଲା, ସୁଦର୍ଶନ ସଙ୍ଗେ ସଙ୍ଗେ ତାହାକୁ ଭସ୍ମକରି ଦେଉଥିଲେ । ରାଜାଙ୍କର କେହି କିଛି କ୍ଷତି କରିପାରୁ ନଥିଲେ । ଭଗବାନଙ୍କର ଚକ୍ର ଯାହାଙ୍କୁ ରକ୍ଷାକରେ, ତାଙ୍କର କିଏ କଣ କରିପାରିବ ? ଏହି କାରଣରୁ ବୈଷ୍ଣବଗଣ ଶଙ୍ଖ, ଚକ୍ର ଆଦି ତିଳକ ନିଜେ ବାହୁରେ ଆଙ୍କି ଥାଆନ୍ତି । ଭଗବାନ ଏହି ପ୍ରିୟ ଆୟୁଧର ଚିହ୍ନକୁ ସେଥିପାଇଁ ସେମାନେ ନିଜନିଜର ବାହୁରେ ଆଙ୍କନ୍ତି । ସମ୍ପ୍ରଦାୟର ଗୁରୁଙ୍କ ପ୍ରଦତ୍ତ ଚିହ୍ନକୁ ଧାରଣ କରିବାଦ୍ୱାରା ହିଁ ଲୋକମାନେ ଜାଣିପାରନ୍ତି ଯେ ଏ ବୈଷ୍ଣବ ମୂର୍ତ୍ତି ଅମୁକ ମହାରାଜାଙ୍କର ଶିଷ୍ୟ, ଅମୁକ ସମ୍ପ୍ରଦାୟର ସ୍ୱାମୀଙ୍କର ଶରଣାଗତ । ମହାରାଜ ଅମ୍ବରୀଷ ଏହିପ୍ରକାର ନିଶ୍ଚିନ୍ତ ହୋଇ ଭଗବତ୍ ସ୍ମରଣ, ପୂଜନ କରୁଥିଲେ, କିନ୍ତୁ ଭଗବାନଙ୍କର ଚକ୍ର ସର୍ବଦା ସଚେଷ୍ଟ ହୋଇ ତାଙ୍କୁ ରକ୍ଷାକରିବାରେ ତତ୍ପର ରହିଥିଲେ ।

ସର୍ବଦା ନବଧା ଭକ୍ତିରେ ଲାଗିରହିବା ବୈଷ୍ଣବର ପ୍ରଧାନ କର୍ତ୍ତବ୍ୟ ଓ ଲକ୍ଷ୍ୟଣ ଏହା ବ୍ୟତୀତ ତିଳକ ମୁଦ୍ରା ଆଦି ବୈଷ୍ଣବୋଚିତ ଚିହ୍ନ ଧାରଣ କରିବା, ଭଗବାନଙ୍କ ପୂଜାକରି ନୈବେଦ୍ୟକୁ ପ୍ରସାଦରୂପେ ସେବନ କରିବା, ଶ୍ରୀହରିଙ୍କୁ ଅର୍ପଣ ନକରି କୌଣସି ବସ୍ତୁର ଉପଭୋଗ ନ କରିବା, ଦିବ୍ୟଦେଶ ଓ ଧାମକୁ ଯାତ୍ରାକରିବା, ବୈଷ୍ଣବ ଗୋରୁ, ତୁଳସୀ, ଗୁରୁଜନ, ବ୍ରାହ୍ମଣ ଓ ପ୍ରାଣୀଗଣଙ୍କୁ ଭଗବଦ୍‌ବୁଦ୍ଧିରେ ସେବା କରିବା ଓ ନିୟମ ପୂର୍ବକ ଏକାଦଶୀ ବ୍ରତପାଳନ କରିବା ବୈଷ୍ଣବମାନଙ୍କର ପ୍ରଧାନ କର୍ତ୍ତବ୍ୟ । ବର୍ଷକରେ ଯେଉଁ ୨୪ ଏକାଦଶୀ, ସବୁ ଏକାଦଶୀରେ ଉପବାସ ମଧ୍ୟ କରିବା କର୍ତ୍ତବ୍ୟ ମହାରାଜ ଅମ୍ବରୀଷ ମଧ୍ୟ ସମସ୍ତ ଏକାଦଶୀବ୍ରତ ପାଳନ କରୁଥିଲେ । ଥରେ ସେ ନିଜର ଭକ୍ତିମତୀ ରାଣୀଙ୍କ ସହିତ ଏକ ବର୍ଷର ସମସ୍ତ ଏକାଦଶୀ ବ୍ରତର ବିଶେଷ ଅନୁଷ୍ଠାନ କଲେ । ଯେତେବେଳେ ସେହି ଅନୁଷ୍ଠାନ ପୂର୍ଣ୍ଣ ହେଲା, ସେ ଯମୁନା ତଟକୁ ଆସି ସମ୍ବତ୍ସର ଶେଷ କାର୍ତ୍ତିକ ମାସରେ ବ୍ରତର ଉଦ୍‌ଯାପନ କରିବାକୁ ନିଶ୍ଚିତ କଲେ ।

ସୂତ କହିଲେ—"ମୁନିଗଣ ! ସାମର୍ଥ୍ୟବାନ ପୁରୁଷ ବ୍ରତର ଉଦ୍‌ଯାପନ କରିବା ଉଚିତ୍ । ଉଦ୍‌ଯାପନ କରିବା ଦ୍ୱାରା ବ୍ରତ ସାଙ୍ଗୋପାଙ୍ଗ ପୂର୍ଣ୍ଣ ହୋଇଥାଏ । ଯେଉଁମାନେ ଏକାଦଶୀ ବ୍ରତ କରନ୍ତି ନାହିଁ, ସେମାନଙ୍କ ଜୀବନ ନିରର୍ଥକ । ସମସ୍ତ ପୁରାଣପାଠ କଲେ

ଜଣାଯାଏ ଯେ ପ୍ରତ୍ୟେକରେ ୫ଟି କଥା ମିଳେ ଯଥା—ଭଗବାନଙ୍କ ଅବତାର କଥା, ତୁଳସୀ ମାହାତ୍ମ୍ୟ, ଗଙ୍ଗା ମାହାତ୍ମ୍ୟ, ଶାଳଗ୍ରାମ ମାହାତ୍ମ୍ୟ ଓ ଏକାଦଶୀବ୍ରତ ମାହାତ୍ମ୍ୟ, ପ୍ରତ୍ୟେକ ପୁରାଣରେ ଏକାଦଶୀ ବ୍ରତର ଭୂରି ଭୂରି ପ୍ରଶଂସା କରାଯାଇଛି । ମହାରାଜ ରୁକ୍ମାଙ୍ଗଦଙ୍କର ଏକାଦଶୀ ବ୍ରତରେ ଏତେ ନିଷ୍ଠା ଥିଲା ଯେ ସେ ନିଜ ପୁତ୍ର ବଧକୁ ସ୍ୱୀକାର କରିଥିଲେ କିନ୍ତୁ ଏକାଦଶୀ ବ୍ରତ ଛାଡ଼ି ନଥିଲେ ।"

ଏହାଶୁଣି ଶୌନକ କହିଲେ—"ସୂତଜୀ ! ଏହି ଏକାଦଶୀ କିଏ, ଏହାଙ୍କର ଉତ୍ପତ୍ତି କିପରି ହେଲା, ମହାରାଜ ରୁକ୍ମାଙ୍ଗଦ କିଏ ଓ ସେ ଏକାଦଶୀ ବ୍ରତ ପାଳନ କରିବାଯୋଗେ ନିଜ ପୁତ୍ରକୁ କାହିଁକି ବଧ କରିବାକୁ ଗଲେ, ଆପଣ ପ୍ରଥମେ ଆମକୁ ସେହି ଏକାଦଶୀ ବ୍ରତର ମାହାତ୍ମ୍ୟ ଶୁଣାନ୍ତୁ, ପରେ ଅମ୍ବରୀଷଙ୍କ ଚରିତ ଆଗକୁ ଯାହା ରହିଲା ଶୁଣାଇବେ ।

ଏଥିରେ ଅତ୍ୟନ୍ତ ଆନନ୍ଦିତ ହୋଇ ସୂତକହିଲେ—"ତାହାହେଲେ ମୁନିଗଣ ! ମୁଁ ଆପଣମାନଙ୍କୁ ପ୍ରଥମେ ଏକାଦଶୀ ମାହାତ୍ମ୍ୟ ବିଷୟରେ କହିବି ଓ ତାପରେ ପରମ ଭାଗବତ ରାଜର୍ଷି ଅମ୍ବରୀଷଙ୍କ ଚରିତ ସମ୍ବନ୍ଧରେ ଆଗକୁ ଯାହା ରହିଛି କହିବି । ଆପଣ ସେହି ପରମ ପୁଣ୍ୟପ୍ରଦ ଆଖ୍ୟାନକୁ ଭକ୍ତିଭାବର ସହିତ ଶ୍ରବଣ କରନ୍ତୁ ।"

## ଛପ୍ପୟ

କାମ କ୍ରୋଧକୁଁ ଜୀତି ଦୁଷ୍ଟ ମନକୁଁ ନୃପ ମାରୈଁ ।
ହରି ବାସର ଉପବାସ କରହିଁ ବୈଷ୍ଣବ ବ୍ରତ ଧାରୈଁ ॥
ପୁଛେ ଶୌନକ—ସୂତ କହେଁ ହରିବାସର ତାକୁଁ ।
କରୈଁ ମନୁଜ ଉପବାସ ଅନ୍ନଖାବୈଁ ନହିଁ କାକୁଁ ॥
ଏକାଦଶୀ ମହାନ ବ୍ରତ, ସୂତ କହେଁ ସବ ପାପହର ।
କରହିଁ ନିୟମ ତେଁ ବ୍ରତ ସଦା, ତେ ଜାବେ ବୈକୁଣ୍ଠ ନର ॥



